

ପ୍ରକୃତରେ ଘଟିଲା ଘଟଣାର କଥା ଅସିତ ତାର ପତ୍ନୀ ଅତସୀ ଆଗରେ ବର୍ଣ୍ଣନା କରେ ନା କେବଳ ନିଜର ପୁରୁଷପଣିଆର ବାହାଦୁରୀ ଦେଖାଇବାକୁ, ଆତ୍ମସଂଯମର ପରାକାଷ୍ଠା ଦେଖାଇବାକୁ ଛୋଟ ଛୋଟ ଘଟଣାରେ ରଙ୍ଗ ବୋଳି ବଢ଼େଇ ଚଢ଼େଇ କହେ ସେ କଥା. ଅତସୀ ଜାଣେ ନାହିଁ । ସେ ମନକର୍ଣ୍ଣ ଦେଇ ଶୁଣେ, ଉତ୍ତେଜିତ ହୁଏ । ଉତ୍ତେଜନା ଭଲ ଲାଗେ । ମନରେ କେବେ କେମିତି ଈର୍ଷ୍ୟା ସନ୍ଦେହ ଛଟପଟ ହୁଏ । ମୁଣ୍ଡ ଟେକେ । ସନ୍ଦେହ ଦୂର କରିବାକୁ କେତେ ପ୍ରଶ୍ନ ପଚାରିବାକୁ ଆଗ୍ରହ ବାହା ନେଇ ଆଗେଇ ଆସେ; କିନ୍ତୁ ଜିଭ ଆଗରେ ଅଟକିଯାଏ ।

କହନ୍ତୁ ଯେ, କହନ୍ତୁ । ବର୍ଣ୍ଣନା କଲାବେଳେ ଖୁସି ହେଉଛନ୍ତି । ଶୁଣିବାକୁ ଆନନ୍ଦ ଲାଗୁଛି । ପାଖାପାଖି ତିରିଶି ବର୍ଷର ଦାମ୍ପତ୍ୟ ଖେଳ-କଉତୁକ । ସେଥି ସଙ୍ଗେ ସଙ୍ଗେ ଦେହସୁଲୁସା, ମନଉଲୁସା, ସୁଆଦିଆ, ସୁଆଗିଆ, ରଗରସିଆ, ରଗଡ଼କଡ଼ା, ମନ୍ଦୁଦୋହଲା, ଧୁଡ଼ଚହଲା, ବେବେହେଲିଆ, ହଲହଲ କଥା ।

ଶୁଣ ମ ଅତସୀ, ତୁମେ ଅନ୍ୟମନା ହେଉଛ । ହୁଁ, ବୁଝିଲି ଯେ, ତୁମେ ଯେତେ ଲୁଚକପଟ କର, ତମ ଜୀବନର ମନଚହଲା କଥା ମନ ଖୋଲି ନ କହ ପଛେ, ମୁଁ ଅନୁମାନ କରିପାରୁଛି । ଏମିତି କେତେ ଘଟଣା ତମ ଜୀବନରେ ଅବଶ୍ୟ ଘଟିଛି । ଶୁଣୁ ଶୁଣୁ ମନେପଡ଼ିଯାଉଛି । ମନ ଟାଣିହୋଇଯାଉଛି ଘଟିଲା ଘଟଣାର ଘାଟ ଭେଟିବାକୁ । ତମର ଆଖିର ନମ୍ର ଭୀରୁ ଆଲୁଅ କହି ଦେଉଛି ସେ କଥା ।

ଅତସୀ ସାରା ଶରୀରରେ ଚହଲା ସଞ୍ଚରି ଯାଉଛି ଶୀତଳ ପ୍ରବାହ । ଜଳୁଛି ନକ୍ଷତ୍ର ଆଲୁଅ । ବଳ ବଳ କରି ଗୁହାରିକରୁଛି ଅସିତର ହାତହାତ ମୁହଁକୁ । ଅନୁଭବ

ନର ବଢ଼ୁଛି

କରୁଛି, ସେ ମୂହୂର୍ତ୍ତରେ ସନ୍ଦେହର ଲେଶ ମାତ୍ର କାଳିମା ନାହିଁ । ଆନନ୍ଦ ଉଦ୍ଭାସିତ ଉନ୍ମୋଚନା ଉଦ୍ଦୀପିତ ସେ । ଉଦାମ ପ୍ରେମର ଉଚ୍ଛ୍ୱାସରେ ସେ ମୂହୂର୍ତ୍ତଟିରେ କେଉଁ ଅଜଣା ଆଶାର ମନପ୍ରାଣଲେଖ୍ୟ ପରଶ ।

ବରପକ୍ଷର ବୋହୂ ସେ ।

ବାପ ମା, ଭାଇ-ଭଉଜ ଓ ସାନ ସାନ ଭାଇଭଉଣୀ, ଝିଅସଖି-ପୁରୁଷ; ସାଙ୍ଗସାଥୀ ଓ ଗାଁ ଝିଅ-ବୋହୂଙ୍କର ସ୍ନେହ ମମତାର ଡୋର ଛିଣ୍ଡାଇ ଦୂର ଦେଶାନ୍ତରୁ ବୋହୂ ହୋଇ ଆସିଲା ଶ୍ରେଷ୍ଠ ସହରକୁ । ଏବେ ବି ସମସ୍ତେ ମନେ ପଡ଼ୁଛନ୍ତି । କେବଳ ମଣିଷ ନୁହନ୍ତି, ଜୀବଜନ୍ତୁ; ବୃକ୍ଷଲତା; ବୁଢ଼ାବଡ଼ ଓ ନଈ-ପୋଖରୀ । କେଉଁରୁ ଯ ଭଲ ଦେଖି ସହରର ବାସ ଯାଏ ଶ୍ରେଷ୍ଠ ବଡ଼ ଘଟଣା ନୁହେଁ, ଯାହା ଉପରେ ତାଙ୍କର ଶ୍ରେଷ୍ଠ ଗ୍ରାମର କେବଳ ମଣିଷ ନୁହନ୍ତି; ଆଉ ସଭିଙ୍କର ମଧ୍ୟ ପ୍ରଭାବ ପଡ଼ିଥିଲା; ସେ ସବୁ ମନେପଡ଼େ । ଦୂର ପରବତ ସୁନ୍ଦର ଦିଶେ । ଦୂର ଗଗନର ମେଘମାଳ ତଳେ ତରୁମାଳ ଓ ଜହ୍ନଖେଳ ସୁନ୍ଦର ଦିଶେ । ମନେପଡ଼ିଲେ ଅତସୀ ତା'ର ନିଜ ଗ୍ରାମଟିକୁ ଫେରିଯିବ । ଝରଝର ଲୋତକ ଆପେ ଆପେ ନୟନରୁ ଝରେ ।

ଶାଶୁ, ଶଶୁର, ନଣନ୍ଦ, ଦିଅର ଏବଂ ଶାଶୂଘର ଗ୍ରାମର ଆଉମାନଙ୍କର ସ୍ନେହର ଡୋରରେ ମଧ୍ୟ ସେ ବାନ୍ଧିହୋଇଥିଲା । ସେମାନେ ଭୁବନମୋହିନୀ କନ୍ୟା ଉର୍ବଶୀ କି ମେନକା, ପାର୍ବତୀ କି ସୁଭଦ୍ରା, ବୁଝିନ ଥିଲେ । ସେମାନେ ବୁଝିଥିଲେ ଅତସୀ ସତ୍ୟ ବୋହୂଟିଏ । ଗାଉଁଆ ଘରର ସ୍ୱାସ୍ଥ୍ୟବତୀ, କର୍ମକୁଶଳା, ସର୍ବଗୁଣୀ ସୁନ୍ଦରୀ ଝିଅଟିଏ । ରଙ୍ଗ ଅଳପ ହେଲେ ବି ଅତସୀ ଦେଖାଦେଖିମା ପରି ଦିଶେ । ନିଳିମା ଦାନ୍ତି ଓ ଆଖିର ଶୁଭ୍ର ସରଳ ଚାହାଣି ମନ କିଣିନିଏ । ଥରେ ଥରେ କଥା, ମାଟିଲା ରଙ୍ଗିଲା ଓଠରେ ନ ଜାଣିଲା ପରି ହସ ଟିକିଏ ଶୋଭାକାର ଦିଶେ । ସେଇ କଥା ସ୍ନେହମୟୀ ଶାଶୁ କହନ୍ତି ଝିଅଶାଶୁଙ୍କୁ । ହଦେ ମିଶି କେତେ ରଙ୍ଗରେ ସଜାଇ ଦିଅନ୍ତି ଅତସୀକୁ ।

ଦାଣ୍ଡ ମାଇପେ, ଅଣ୍ଟା ମଣିଷ, ନାକରେ ଲୁଗା ଦେଇ ଛକେଇ କହନ୍ତି, ଆଗୋ!, ଯେତେ ମାଠିବାମାଠ, ମୁଁ ତ ସେଇ ଦରପୋଡ଼ା କାଠ । ସୁନାଖଡ଼ିକା

ମନ ଟେ'ଗ୍ର ଚଳଚଳ ଚୋ'ହ୍ଦ୍ଟିଏ ଆଣିଥିଲେ ଏତେ ମଳାମଳି ଲୋଡ଼ା ପଡ଼ନ୍ତା ନାହିଁ । ଚମ୍ପାବରଣୀ ବା ନୁହଁ ହେଉ କ ଚେପ୍‌ଟାନାକୀ ହେଉ, ଟାକୁଆଗାଲୀ ହେଉ କ ଚେଙ୍ଗା ଆଖି ଉଚ୍ଚକପାଳୀ ହେଉ, ବସିଥିଲେ କ ଗୁଳିଯାଉଥିଲେ ଆଖି ଓଟାର କଏ ।

ସେମିତିକା ବୋହୂ, ତମେ କର ଗୋ ଖୁଡ଼ୀ, ମୋ ଖାଲି ସମସ୍ତିଙ୍କର ଆଖି ଓଟାରୁ, ସେଇଠୁ ନ କ, କ ନ, ତୃଟି ଓଟାରୁ । ମୋ ବୋହୂ ସେ ମୋ ମନଓଟାର ଧରୁଛି । ତାହାର ପାତନଆ ଦୃଷ୍ଟି ନ ପଡ଼ୁ ବୋହୂ ଉପରେ ଗୋ ! ତା ବାହାର ଦେହରେ ଦଉଡ଼ ସୁନାସୁଟ ହେବନାହିଁ, ମନରେ ସୁନାସୁଟ ହେଉଛି । କଠଣ ଦେଖି କଏ ନ କହିବ ଯେ ମୋ ବୋହୂ ସୁନ୍ଦର, ମୋ ପୁଅ ଅସିତଠାରୁ ତ ସୁନ୍ଦର ।

ହଁ, କହିଲ ଯେ, ତମ କଥା ମୋ ମନକୁ ପାଉନାହିଁ । ତମ ବୋହୂ ସୁନ୍ଦରଟିଏ ବୋଲି ଆଉମାନେ ସିନା କହୁଛନ୍ତି, ମୋ ଆଖିକି ଦଶୁନାହିଁ । କାଠ ପିତୁଳାରେ ପୁଟଦେଇ ସଜାଇଦେଲେ ସେ ସୁନ୍ଦର ଦଶିବ । ମୋ ନାତି ଟୋକା ଅସିତ ବଣହାକମ ହୋଇଛି । ଅରଣା ମଇଁଷି ପରି କେତେ କାନନ-କାନ୍ତାର ଭିତରେ ବୁଲିବ । କେତେ ସୁନାବରଣୀ, ଗଜଗମନୀ, ଛଇଛଟକୀ, ଆଖିମିଟିକୀ, କେଉଁଠି ଭେଟିଲେ ଦୃଷ୍ଟି ଅଟକିଯିବ, ଯଦି···

ତମ ପିଅଣିଆ ଭଲପଣିଆ କଥା ସେତକ କହଥା ଅତଟୀ ଖୁଡ଼ୀ । ଅସିତ ସିନା ଲେଖାରେ ତମର ନାତି, ମୋ ବୋହୂ ଅତସୀ ନାତୁଣୀବୋହୂ, ମୁଁ ଓ ମୋ ସାନଭଉଣୀ ପରି କା ! ତମର ବୋହୂ ଲେଖା ! ଥଟ୍ଟା-ତାମସା କଥା ଆମ ଆଗରେ କହିବା ସାଜୁଛି ?

ବୁଢ଼ୀ ମଣିଷ, ଭୁଲିଯାଇଥିଲି ଗୋ ! ହେଉଛି ଦେଖ, ମୁଁ କାନ ମୋଡ଼ ହେଉଛି । ମୋ ନାତୁଣୀବୋହୂକୁ ଶିଖାଉଥିଲି, ଛତରା ଟୋକା ଅସିତ, ତାକୁ ଆଖିଏ ଆଖିଏ ରଖିଥିବ । କାନରେ ବାଘ ଗୋଡ଼ରେ ଛନ୍ଦିଥିବ । ଶୁଣିଛି, ଯେତେ ପୁଅ ଆଜ୍ଞୁ ସମ୍ବନ୍ଧ ଆସିଲା, ସେ ମୁଣ୍ଡ ହଲାଇ ଦେଉଥିଲା ।

କରେ କାହିଁକ ?

ଆଉ ମ, ସେଇଟା କାଳି ; ଆସିଲେ ଆଉ ସେଇଟା ଚୋର ପଣ ନୋସ୍ଥ ସେ ମୁହଁଟା ଘୋଡ଼ା ମୁହଁ ପରି । ଶୁଣ ମ ଆଉ, ସେ ଭଉଣୀ ସେ ନଜନଜ ପାଉନି । ତମେ କହିବ ବନ୍ଧୁକଗାର, ମୁଁ କହିବ ସୁନେଲି ଭାର ।

ହେଉ ରେ ନାଉ, ସେଇ ହେଉ । ନେଳରେ ହାର କଣ ଲମ୍ବୁଛନ୍ତି । ହାଟ ବାଟରେ, ନାଟ ଥାଟରେ, ବଡ ପାହାଡ଼, ଅଧଜଙ୍ଗଲରେ ତାହାଣ ଦେଖିଲେ ଅପସରିଯିବେ ।

କହିଲି, ଉହୁଁ, ପୁଞ୍ଜି ଦେଲେ ଅଗାଡ଼ି ଧାନ ପଣ ଉଡ଼ିଯିବ ମ' ସେଇଟା —

ଆଗୋ ଅଜଟୀ ଝିଅଟି, କାହା ଆଗରେ ଏସବୁ କହୁଛ ? ମୁହଁକୁ ତମର ଲାଜ-ସରମ ନାହିଁ ? ଆସେମ ସବୁ ତମ ବୋହୂ ! ମୋ ପୁଅକଥା ମତେ ଅଜଣା କି, ଭୁଲେଇ ହେଇ କହୁଛ ? ଅସିତ ମୋର ରେଳବଗର ସୁନା ସୁଧାର ପିଲା । ଖୁଞ୍ଜିଯାଉଥିଲେ ମୁହଁ ନ ଲଗୁ । ମାଛକ ମ କହିବ ନାହିଁ । ହଳଦି ପାଣିକ ହାତ ବଢ଼ାଇବ ନାହିଁ । ଝିଅବୋହୂଙ୍କ ମେଳକୁ ପିଲକୁ(?) ଯାଏ ନାହିଁ । କେତେଟାଏ ହେବାଯାକେ ମୋ ଲଙ୍ଗୁଡ଼ ପଣ କାନଧର ଘୁଲଥିଲ । ଅଳତ ଜନମ ହେଲାଯାଏ, ଅସିତକୁ ସାତବରଷ ହେବାଯାଏ, ସେ ମୋତେ ଝୁଣି ଝୁଣି ଶୋଷିଛୁ । କ୍ଷୁଧା ଲୁଚୁନା ଖାଇଲେ ବ ସେ ଛାଡ଼େ କ ? ମତେ ଜଦ ହେଇଗଲେ ଅଳତକୁ ମୋ କୋଳରୁ ଟାଣି ଅଲଗା କରବ, ପୁଣି କ୍ଷୀର ଶୋଷିବ । ଦାନ୍ତ ବାଙ୍କଲେ ମୋ ଜଦ କାଟେ, ଅଖି ଖୋଲଲେ ଟଳପର ଲୁଚି ପଳାଏ । ବଡ଼ ହେଲାରୁ ସବୁ ଲାଜ ତା ମୁଣ୍ଡରେ ଅଜ ହୋ'ଇ ପଡ଼ିଲା । ତମେ ଆଉ ବୋଲୁ ଅଣ୍ଟା ନକଲରେ ଏଣୁତେଣୁ କଣ କହୁ ଦେଉଥିବ ?

ହଁ ଗୋ ବୋହୂ, ନୂଁ କଣ ମନା କରୁଛି ? ହଇରେ ଜଲଜା ମୁଁ ତନେ କହିଲ, ସବୁ ଝିଅଙ୍କୁ ବାଛିଲୁ ପୁଣି ମୁଣ୍ଡ ହଲେଇଦେଲୁ ଆମ ଗାଁଜରେ ତୋ ମନନାଖୀ ଝିଅ ମିଳିବ ନ ହିଁ, ଅସି ଦରବୁଢ଼ା ହେଲୁ ।

କହିଲି, ଆଉ ମ, ଝିଅ ଫିଅ ଭଜମନ କଥା ମତେ ଅଜଣା । ବାପା କରଜରେ ବୁଡ଼ି ରହିଥିଲେ । ଧାନ ଖାଇ ଅଳତ ଏମ୍. ଏ. ପାସ୍ କରୁ । ସାନ ଭଉଣୀ ଇତର ବାହାଘର ଅଗରୁ । ସେଇଠୁ ଯାହାକୁ ମୋ ବୋଉ କହିବ ଏଇଟି,

ଭଲ, ସେଇଟି ଭଲ । ମୋର ଆଖି ନ ଥି କି କାନ ନାଇ । ଯିଏ ମା'ତ ଏଥି ଉ:ନ ଦେଖୁଛୁ ସେଇ ମୋର ଦୁଃଖପାସୋରା ବୋହୂର ଆଖି କାନ ସେ ମୋଓର ।

ଅତସୀର ଅଳପ ଫୁଙ୍ଗୁଳା ପିଠିରେ ଦ ବୁନ୍ଦା ତତଲ ଲୁହ ଟପ୍‌ଟପ୍ କରି ପଡ଼ିଲା । ଶାଶୁଙ୍କର ସ୍ନେହବାତ୍ସଲ୍ୟର ଆଜି ଉଚ୍ଛୁଳି ଉଠିଛି । ଅତସୀର ସାରା ଶରୀରରେ ପଞ୍ଚଶ ଉଷୁମ ଉଦକ ହୃଷ୍ଟ ଭକ୍ଷ୍ୟାଗର ଉର୍ମି ଖେଳାଇଛୁ । ଆପଣାକୁ ଭୁଲି ଆଜନ୍ମ ଆସିଛି ସ୍ନେହମୟୀଙ୍କର ଅମିୟ ବକ୍ଷକୁ । ହସ୍ତ କୋମଳ ମାତୃତ୍ୱର ଅମର ପରଶରେ ଆତ୍ମହରା ହୋଇ ଅଜାଣତରେ କେତେ କ'ଣ ଭାବୁଛି । ସେହି ବକ୍ଷସୁଧା ପାନ କରି ତାର ଜୀବନସର୍ବସ୍ୱ ବଢ଼ି ଉଠିଛନ୍ତି, ସେଇ ଦୁଇ ପଙ୍କଜର କନ୍ଦରେ ମୁହଁ ଲୁଚାଇ ସ୍ୱର୍ଗସୁଖର କାହାଣୀଏ ଶୁଣିବାକୁ ମନ ଉଠେଇ ହେଉଛି । ହେ ମାତା କଲ୍ୟାଣ ଜନନୀ ବନ୍ଦନ !

ଅତସୀର ଆଖି ହେଉଛି ଅଟୁଳ ।

ଅଶଲ ସ୍ୱରରେ ଶାଶୁ କହିଲେ, ଚିହ୍ନିଲୁଟି ମୋ ପୁଅକୁ ! ଖାଇକୁ ପାଠ ପଢ଼ାଇଲା । ଭଉଣୀଙ୍କୁ ବାହାକରାଇଲା । ଦେଖିଥିବ ତ ମୋ ଇଞ୍ଜିନିୟର କୋଠିକି, ଆଖି ପ୍ରତିଷ୍ଠା କରିଥିବ ! ବାପର କରଜ ଶୁଝିଲା । କେବେ ଭଲ ଜାମା ଖଣ୍ଡେ ପିନ୍ଧ ନାହିଁ । ବିଦେଶରେ ଥାଇ ଭଲକରି ମୁଠିଏ ଖାଇ ନ ଥିବ ।

ପଚ୍ଛଳି, ହଇରେ, ମୋ ଆଖି ଏମିତି ଫୁଟିକଣ ଥିବ, ବୋହୂ କରିବ ନାହିଁ ? ଏ କୋଳ ମୋର ଖାଲି ପଡ଼ିଥିବ ?

କହିଲା, ତୋ ନାମ ରୁ କରିବୁ, ମୋତେ ଚାହିଁକି ପଚ୍ଛୁଛୁ ?

ସତେ ଗୋ ବୋହୂ, ଅସିତ ପରି ପୁଅ ମୁଁ କେଉଁଠି ଦେଖି ନାହିଁ । ଅନ୍ଧାରେ କହିଲି, କରେ ନାହିଁ, ଭାଲିକୋଡସ ବୋହୂଟାଏ ତୋ ମା ଆଣୁଛି ରେ !

କହିଲା, ଭଲ ହେଲା, ଯା । ମୋ ବୋହୂର ହାତ ବାଜିଲେ ସେଇ ହେବ ପୁଣି ଲକ୍ଷ୍ମୀ-ପାବଙ୍ଗ ।

ଆରେ ହେ, ତୋ ନାଁଟା ପୁଣି ଅପନା, ତୁଣ୍ଡରେ ଧର ହୋଗ ଏ ନାଁ । କଅଁଣଟି,—ଅପଣା ?

ହସିଉଠିଲ ସେ ଅବୋଇଜ । କହୁଛ, ହେଲେ ହେଇଥାଉ, ମୋ ବୋଉଖୁଡ଼ୀଙ୍କର ଗୋଡ଼ଧୂଳ ତା ମୁଣ୍ଡରେ ବାଜିଲେ ସେଇ ହେବ ପୁଣି ସତ୍ତା-ସାଧ୍ୱୀ ।

କ ଶବଦ ତୁମେ ତୁଣ୍ଡରେ ଧରିଲ ଚୁ, ଅତଟୀ ଖୁଡ଼ୀ ! ତା ବାପ ମା ବାଛକର କ ସୁନ୍ଦର ନାଁଟିଏ ଦେଇଛନ୍ତି ମୋ ବୋହୂର । ମନେ ରଖ, ହୋଶି ହେଉଥା ଅ-ତ-ସୀ ।

ହେନ୍ନହମୟୀ ଶାଶୁ, କୋଳକୁ ଅଉଜାଇ ନେଲେ । ନଅଁଳ ବକ୍ଷ ଉପରକୁ ମୁଗ୍‌ଧ ବଧୂର ମୃଦୁ ତ ମଞ୍ଜୁଳ ମୁକ୍ଳ ମୁଁହଟିକୁ ଧୀରେ ଧୀରେ ଅଉଜାଇ ନେଇ କପାଳରେ ଚୁମ୍ବନ କର କହିଲେ, ଖୁଡ଼ୀ, ଭଲକର ଦେଖି ନ ଥିଲ କି ମୋ ବୋହୂର ମୁହଁଟି ? ଏବେ ଦେଖ । ଉଜ୍ଜ୍ୱଳ ଅତସୀଫୁଲ ପରି ଦଶୁନାହିଁ ତମ ଆଖିକୁ ?

ହାଶଲ ଗୋ ବୋହୂମାନେ ! ସତେ, ଚନ୍ଦ୍ରଉଦଆ ମୁହଁ ଖଣ୍ଡେ ପାଇଛ ମୋ ନାରୁଣୀବୋହୂ । ଠାକୁରେ କାତବକର କରନ୍ତୁ । ଧନ, ଧାନ୍ୟ, ଗୋପ, ଲକ୍ଷ୍ମୀରେ ଘରସଂସାର ଭରପୂର ହେଉ । ପୁଅ ଝିଅ, ନାତନାତୁଣୀମାନଙ୍କ କୋଳରେ, କାଖରେ ପିଠିରେ ଲଦ ହେଉ । ମେଓଶ ପଣକା ପାକଲ ମୁଣ୍ଡରେ ବାଳଅରୁଣ ପରି ସିନ୍ଦୂର ନାଇ ହସିହସିକା ବେଳ କଟାଉ । ଏଣିକି ଆଉ କେବେ ଭୁଲିବ ନାହିଁ ତା'ର ନାଁଟି, ଅ-ତ-ସୀ !

ଅତସୀ—

ପ୍ରେମାକୁଳ ବହ୍ୱଳ ଓଠରେ ଧୈର୍ଯ୍ୟ ଦୋହଲ ହସ । ଏ ଦେହର ରକ୍ତ ମାଂସ ଚର୍ମ ସ୍ୱାସ୍ଥ୍ୟ ଓ ଯୌବନ ସେମିତ ଅଛୁ । ଭିତରର କଅଣ କେଜାଣି ଦୋହଲି ଉଠିଛୁ । ଏ ଦେହଟାକୁ ଭିଡ଼ାଓଟର କର ଶୋଷି ନେବାଇ ଖାଇଦେବାକୁ, ନିଜ ଭିତରେ ଲୀନ କରାଇଦେବାକୁ ତାଙ୍କର ପାଗଳା ପ୍ରକୃତ ବାରମ୍ବାର ଅନ୍ଧ ହୋଇଛୁ,

ଉନ୍ମାଦ ହୋଇଛି । ସେ ପର୍ବତ ପରି କଠିଣ ହୋଇଛନ୍ତି, ବରଫ ପରି ଶୀତଳ ହୋଇ ନିଜର ଉତ୍ତାପରେ ବିଗଳିତ ହୋଇ ତଟିନୀ ପରି ଝରି ଆସୁଛନ୍ତି । ବନାନୀର ଅଙ୍ଗୁଳ ଦେହର ଲକ୍ଷ ମୁଖରେ ନିଜକୁ ଢାଳି ଦେଉଛନ୍ତି । ସେ ଶତ ପାଦପଟଳୀ ତୋଫାନ ହୋଇ ବହୁଛନ୍ତି । ଏଇ ଶରୀରକୁ ନିଜ ମହିମା ଉଡ଼ାଇ ନେଇ ସାଇତି ରଖିବାକୁ ଚେଷ୍ଟା କରୁଛନ୍ତି । ତୋଫାନର ଉଗ୍ରତା କମିଛି । ସେ ହୋଇଛନ୍ତି ମନ୍ଦମନ୍ଥର ମଳୟ । ଏଇ ଦେହ ଧରଣୀର ଅଗଣିତ କୋମଳ ଲତାରେ ଫୁଲକର ଶିହରଣ ଆଣିଛନ୍ତି । ଶାନ୍ତଶୀତଳ ସୁବାସିତ ସୁମନସଙ୍କ ଚନ୍ଦ୍ରିକାରେ ନିଷ୍ପଳ ନିନ୍ଦିତ ହେଲାପରି ସେ ମଧ୍ୟ ନିନ୍ଦିତ ହୋଇଛନ୍ତି ।

କହ ମ ଅତସୀ, ତୁମେ ଆମ ଘରକୁ ବୋହୂ ହୋଇ ଆସିବା ଆଗରୁ ତମ ଜୀବନରେ କ'ଣ ଘଟଣା ଘଟିଥିଲା ? ମନଖୋଲି ନିଶ୍ଚିନ୍ତରେ ଆନନ୍ଦରେ କହ । ବାହାରକୁ ଚାହଁ । ଆଜି ପର୍ବ ସ୍ନାନ ପୂର୍ଣ୍ଣିମା, ତଥାପି କେଡ଼େ ଅନ୍ଧାର ଦିଶୁଛି ବାହାରେ । ଆକାଶରେ ବହଳ ବାଦଲ କଳାଧୂମର । ବରଷା ଝୁଟୁଛି । ପବନ ଛୁଟିଛି । ଲୁଚିଛି ଅରଣ୍ୟ ପାହାଡ଼ । କୁଳୁକୁଳୁଆ ସ୍ରୋତ ବଡ଼ନାଳରେ ଅସ୍ଥିର ଆବିଳ ସଲିଳ । ଉପଲମାଳ ଢେଉଁଢେଉଁକା ତଳକୁ ତଳକୁ ଗଡ଼ିଯାଉଛି । ଡର ମାଡ଼ୁଛି କି ଘୁଞ୍ଚିଆସ ପାଖକୁ । ହରିକେନ ଆଲୁଅଟା କମାଇ ଦେଉଛ ଲାଜଗଲା ଯେ ! ଲାଜ । ଅନ୍ଧାର ଆହୁରି ଉଜ୍ଜ୍ୱଳ । ଆଖିକୁ ଦିଶେ ନାହିଁ, ମନକୁ ଦିଶେ । ସଙ୍କୋଚ ଛାଡ଼ େ। ଝରକା ବାଟେ ଶୀତୁଆ ପବନ ପଶିଆସୁଛି । ମୋ ଦେହ ଥରୁଛି । ମତେ ତୁମେ ଆଁକୁଡ଼ି କର । ହଁ, ଅତି ସୁଧାର ବୁଢ଼ାର ବୋଲର ନୋଲବସର ଟିକଫଳନ୍ତି ତମେ । ହେଲ ନାହିଁ, ଆହୁରି ଆହୁରି ଘୁଞ୍ଚିଆସ ।

ଆରେ, ତମ ଦେହରେ ପଣିପାଣବ ନାହିଁ ତ ! ତୁମେ ତ ବଡ଼ ଅଫିସର, ଆଜି କାହିଁକି ଜର ପାଳିଛ, ବାଇଁଲା ହୋଇଛ ? ଉଦନସାଗ୍ ବଡପାହାଡ଼ ଚଢ଼ି ଓହ୍ଲାଇ ମେଘୁଆ ମେଘୁଆ ପାଗରେ କ୍ଲାନ୍ତ ହୋଇ ଘରରେ ଫେରିଲ । ରାତି କେତେ ହେଲାଣି ଭୁଲିଯାଉଛ ? ଶୁଭୁନାହିଁ, ଝିଙ୍କା କେମିତି ଡାକୁଛି ? ବେଙ୍ଗପଲ ଅଲପ ପାଣିରେ, ତମର ଏଇ ବ୍ରତକାଷ୍ଠା ଦଦବ ବିଶ୍ରାମ ଘରର ହୁଣ ପାଖ ସ୍ରୋତ ବଡ଼ ଖାଲରେ ବଜଟାଳ ଗଡ଼ଗୁଡ଼ଉଛନ୍ତି । ଶରଳୁ ଲାଗୁଛି । କେତେ କଥା ଗପିଲଣି । ପାଟି ପୋଛିଲ ହେଉ ନାହିଁ ? ଶୁଣିବାକୁ ମତେ ଖୁବ ଭଲ ଲାଗୁଛି

ଯେ ଅଖି ମାଡ଼ି ମାଡ଼ି ପଡ଼ୁଛି । ଶୁଣିଲି କଥା ମନେ ରହୁନାହିଁ । ସୁନା ପିଲାଟି ପରି ଶୋଇ ପଡ଼ିବଟି ।

କହିବ ନାହିଁ ?

କି କଥା ଶୁଣିବାକୁ ଚାହୁଁଛ ?

ତୁମ ଜୀବନର ଗୁପ୍ତ ଦୋହଲା ମନଚହଲା କଥା ।

ମନରୁ ଫାନ୍ଦ କହିବ ? କଉ ଦିନେ କହିଥିଲା ଅଧା ରଖିଦେଲ । ନିଜ ଜୀବନ କଥା ଅଣ କହିବାର । ନା ଆଜି ନୁହେଁ, ଆଉ ଦିନେ । ଆଖିବୁଜି ଶୋଇପଡ଼ିବ ଟି, ମୁଁ ପଛେ ଧୂଅରେ ବାଇଆ ଧୂଅ କରୁଛି ।

ସତେ, ସେ ଛୁଟ୍ କରି ଶୋଇପଡ଼ିଲେ । ଅସୀତର ଲମ୍ବ କେଶଗୁଚ୍ଛ ମସ୍ତକରେ କୋମଳ ହାତରେ ଅତସୀ ଧୀରେ ଧୀରେ ଚାପଡ଼ ମାରୁଥିଲ । ତାର ଲମ୍ବ ଲମ୍ବ ଆଙ୍ଗୁଠି କେଶ ଭିତରେ ଚଳାଇ ଘୁଲୁ ଘୁଲୁ କରୁଥିଲ । ଅବଶ ହାତ ନିଶ୍ଚଳ ହେଲ ।

ମ୍ଳାନପୂର୍ଣ୍ଣିମା ରାତି । ବାହାରେ ଝଡ଼ତୋଫାନ ଓ ବରଷାର ଶବଦ । ଭେକଙ୍କର ମକ ମକ ଧ୍ୱନି । ଆଖିପତା ବୁଜିଥିଲେ ମଧ୍ୟ ଝାଉଁଳା ମନ ପୁଣି ଚେଇଁ ଉଠିଲ । ନିଦ ହେଲ ନାହିଁ । ହେଉଛି ସେ ଘୁଙ୍ଗୁଡ଼ି ମାରିଲେଣି । କେଡ଼େ ନିଶ୍ଚିନ୍ତ ନିଦ ମ ! ସତ ମିଛ କରି ଗପୁଥିଲେ ଗପୁଥିବେ । ଆଖି ବୁଜିଲେ, ଶୁଇ ହେଲେ, ସଙ୍ଗେ ସଙ୍ଗେ ଘୋଟିଯାଏ ନିଦ ।

ଧୀରେ ଧୀରେ ଅତସୀ ଅସିତର ବଳିଷ୍ଠ ନିଦ୍ରିତ ହାତଟିକୁ ପିଠି ତଳୁ କାଢ଼ି ବକ୍ଷଉପରେ ରଖିଲ । ଅସିତ ଦୀର୍ଘଶ୍ୱାସ ଛାଡ଼ି ଚିତ୍ ହୋଇ ଶୋଇଲ । ଗୋଡ଼ ଲମ୍ବାଇ ଅତସୀକୁ ଦୂରକୁ ଠେଲିଦେଲ । ଅତସୀ ଘୁଞ୍ଚିଆସିଲ । ଧୋବ ଫରଫର ଚାଦରଟିକୁ ସ୍ୱାମୀଙ୍କର ଦେହ ଉପରକୁ ଟାଣିଆଣିଲ । ଝରକା ବାଟେ ଶୀତଳ ପବନ ଘରେ ପଶୁଛି । ଦେହ ଶୀତେଇଛି । ଶୋଇ ପଡ଼ିଲେଣି ସେ ନିଘୋଡ଼ ନିଦରେ । ଦିନସାରା ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ନିଘଞ୍ଚ ଅରଣ୍ୟ ମଝିରେ ପଶିଛନ୍ତି । ନାଳ, ଝୋଲା, ଢିପ, ଖଣ୍ଡୀ, ପାହାଡ଼, ପର୍ବତ ଡେଇଁ ଡେଇଁକା କ୍ଳାନ୍ତ ହୋଇ ଫେରିଥିଲେ ।

ମୁହଁଭିତରେ କହୁଲେ ନ ସରେ, ପାଖରେ ତ ନଳିଆ ବନ୍ଧୁକ ଅଛି ଅତସୀ, ସଙ୍ଗରେ ଚୌକିଦାର ଅଛନ୍ତି, ବାଘଭାଲୁଙ୍କ ଡର ନାହିଁ । ଆମକୁ ଦେଖିଲେ ସେମାନେ ଅତର୍କି ହୋଇ ପଳାଇଯାଆନ୍ତି ।

ଅତସୀ ଘୁଞ୍ଚିଆସିଲା । ଝରକା ଦୁଇଟା ବନ୍ଦ କରିଦେଲେ ହୁଅନ୍ତା । ଶୀତୁଆ ପବନ ଓ ବାହାରର ବାରସ୍ୱହଳିଆ ମିଶାମିଶି ଶବଦ ପାଚିଲି ମଶାରିର ବାଡ଼ ବାରଣ ମାନୁ ନାହିଁ । ତକିଆ କଡ଼ରୁ ଛୋଟ ଟର୍ଚ୍ଚଟି ଅଣ୍ଡାଳି ଧରିଲା । ତଳକୁ ମୁହଁ କରି ଆଲୁଅ ଟିପି ପଦାକୁ ଆସିଲା । ଗୋଟିଏ ଝରକା ବନ୍ଦ କରି ଆର ଝରକାରେ ହାତ ଦେଲା ! ନିଦ୍ରିତ ଅସିତ ସତେ କି କହୁଛନ୍ତି, ଥାଉ, ଥାଉ, କାଳରେ ମୁକ୍ତବାୟୁ ପଶିବାକୁ ଦିଅ, ଡରୁଛ କି ? ବାଘ ଭାଲୁ ରେଲିଂ ଭାଙ୍ଗି ଘରେ ପଶିପାରିବେ ନାହିଁ । ଦୁର୍ଗମ ଗଡ଼ରେ ଚୋର-ଡକାୟତ ଆସିବେ ନାହିଁ ।

ଅତସୀ ଫେରି ଚାହିଁଲା ଆଲୁଅ ମାରିଲା । ସେ ଶୋଇଛନ୍ତି । ଘୁଙ୍ଘୁଡ଼ି ମାରୁଛନ୍ତି । ସତେ କି ଘରର ମଥାନ ଉଡ଼ିଯିବ । ସେ ହସିଲା । ଝରକା ବନ୍ଦ କଲା ନାହିଁ, ଆଉଜେଇ ଆଣିଲା । ଫାଙ୍କ ବାଟେ ପଦାକୁ ଚାହିଁଲା ।

କି ଭୟଙ୍କର ଏ ଭଲ ଓ ଶୁଭଦିନର ସ୍ମୃତି ! ଘୁମୁସୁର ଉଦୟଗିରିର ବଙ୍ଗଳା । ମୋତାକୁ ଲାଗି ଡାକ୍ତରଖାନା, ସ୍କୁଲଘର । ଡାକ୍ତରଙ୍କ ରହଣୀ ଘରଭିତରୁ କ୍ଷୀଣ ଆଲୁଅର ରେଖା ଆସୁଛି । ଚାରୋଟି ପିଲାର ମା ତାଙ୍କ ଘରଣୀ । ଅତି ଭଲ ଲୋକ ସେ, ତାଙ୍କର ଡର କେବଳ ଭୂତପ୍ରେତଙ୍କୁ । ଦି ପହରେ ସେଇଆ ସେ ଗପୁଥିଲେ ।

ଭଉଣୀ ଲୋ, ଏଇ ଯେଉଁ ଘରଟି ଦିଶୁଛି ସେପାଖେ ସେଇଠି, ଏଇ ଡାକ୍ତର ମଲାମଣିଷ କାଟନ୍ତି । କି ଭୟଙ୍କର ! ସେଇମାନଙ୍କର ପ୍ରେତଗୁଡ଼ାକ ଅନ୍ଧାର ରାତରେ ଏଇଠି ଆତଯାତ ହୁଅନ୍ତି । ଛାଇ ପରିକା ଦିଶନ୍ତି । କେତେଥର ମୁଁ ଦୂରରୁ ଦେଖିଛି । ବାଘ ଭାଲୁଙ୍କୁ ସିନା ଠେଣ୍ଡା, ବର୍ଚ୍ଛା, ଧନୁ କି ବନ୍ଧୁକରେ ଜଗାଇବ କି ମାରିବ; ଏଇ ପ୍ରେତାତ୍ମାଗୁଡ଼ାକୁ କଅଣ କରିବ ? ବଳପାଏ ନାହିଁ । ଆସୁଥିବେ, ଯାଉଥିବେ । ହସିବେ, କାନ୍ଦିବେ । କଡ଼ମଡ଼ କରି ଦାନ୍ତ ଦେଖାଇବେ । ଡରିଲେ

ମଲି । ନ ଡରିଲେ ପାଖରେ ପଶିବେ ନାହିଁ । କିନ୍ତୁ, କହ ତ ଭଉଣୀ, ଡର କେମିତି ନ ମାଡ଼ିବ ?

ଡାକ୍ତରବାବୁ ଦେଖିଛନ୍ତି ?

କେତେ ଥର ଲୋ ଭଉଣୀ ! ସେ ତ ନାସ୍ତିକ ମଣିଷ । ନିଜ ହାତରେ ମଲାମଣିଷ ଛିନଭିନ କରି କାଟନ୍ତି, ଯେମିତି କଂସେଇ ଛେଳିମେଣ୍ଢା କାଟେ ।

ଡାକ୍ତର କହନ୍ତି, ଭୂତପ୍ରେତ ତାଙ୍କର ପ୍ରଜା, ଚୋଲକର । ଆସୁଥିବେ ଯାଉଥିବେ । ନିଜ ନିଜର କଥା କହୁଥିବେ, ତୁମେ ତ ମୋ ବାହାର ଭିତର ସବୁ ଦେଖିଲ ହେ ଡାକ୍ତର, ଲୋକଙ୍କ ମୁହଁରୁ ଶୁଣିଲ ମୋ ମରଣ କାରଣ, ହେଲେ, ସତ କଥାଟା ମୋ ପାଟିରୁ ଶୁଣ, କାଗଜରେ କଅଣ ମିଛସତ ଲେଖୁଛ ?

—ସତେ, ଡାକ୍ତରବାବୁ ସେମାନଙ୍କର କଥା ବୁଝନ୍ତି ? ସେମାନଙ୍କର କଥା ମାନନ୍ତି ?

—କହନ୍ତି ତ ବୁଝନ୍ତି ବୋଲି, କିନ୍ତୁ ସେମାନଙ୍କ କଥା ମାନନ୍ତି ନାହିଁ । ତାଙ୍କ କଥାଗୁଡ଼ା କୁଆଡ଼େ ତୁଣ୍ଡରେ ହୁଏ ନାହିଁ । ମନେ ମନେ ହୁଏ ।

ଡାକ୍ତର ପୁଣି କହନ୍ତି—ଆଗୋ ଶୁଣ, ଆମେ କାଟିକୁଟି କରି ଯାହା ବାହାରେ ଓ ଭିତରେ ଦେଖୁ, ବହିରେ ଯାହା ପଢ଼ିଛୁ, ତା ସଙ୍ଗେ ମିଳାଇ କାଗଜରେ ଲେଖିଦେଉ । ପୁଲିସ ନିଏ । ବିଚାରକଙ୍କ ପାଖେ ଦେଖାଯାଏ । ସବୁ ଶୁଣି, ବୁଝି, ବିଚାରକ ମତ ଦେଇ ଯାହା ଆଦେଶ ଦେବାର ଦିଅନ୍ତି । ମଲା ମଣିଷ-ଗୁଡ଼ାଙ୍କର ପ୍ରେତସବୁ ବିଚାରକମାନଙ୍କ ଆଗରୁ ନିଶ୍ଚୟ ଯାଉଥିବେ; ତାଙ୍କ କଥା କହୁଥିବେ । କିନ୍ତୁ, ସେମାନେ ତ କୌଣସି ଲେଖାରେ ଦସ୍ତଖତ କରିପାରିବେ ନାହିଁ କି ଟିପଚିହ୍ନ ଦେଇପାରିବେ ନାହିଁ; ତେଣୁ ତାଙ୍କର ନୀରବ କଥା ଲେଖା ହୁଏ ନାହିଁ । ବିଚାରକ ଆଖିରେ ଯାହା ଦେଖନ୍ତି, କାନରେ ଯାହା ଶୁଣନ୍ତି, ତାରି ଉପରେ ମତାମତ ଦିଅନ୍ତି । ତୁମେ ଶୁଣ, ପ୍ରେତଙ୍କୁ ତମର ଖୁବ ଡର । ଆଲୁଅ ଦେଖିଲେ ସେମାନେ ପାଖରେ ରହନ୍ତି ନାହିଁ ।

ସେଇଥିପାଇଁ ସେ ଆଲୁଅ ଜାଳିଛନ୍ତି ।

ଅଡଗାଁର ଗୁଡ ଥର ଥର ହେ ଇ କମ୍ପି ଲା । ଭୂତପ୍ରେତ ଅଛନ୍ତି କି ନାହିଁ, ଥିଲେ ସେମାନେ ଆସି କିଅନ୍ତା ମଣିଷଙ୍କୁ ଡରାନ୍ତି କି ନାହିଁ, ସେ ସମ୍ବନ୍ଧରେ ତା ମନରେ ଦୃଢ଼ ଧାରଣା ଅଦ୍ୟାପି ଆସି ନାହିଁ । ପିଲାଦିନୁ ଆଜଯାଏ କେତେ ଲୋକଙ୍କ ମୁହଁରୁ ସେ କେତେ କଥା ଶୁଣିଛି । ସେମାନେ ଦେଖିଲା ପରି କହନ୍ତି । ବନେଇ ଚୂନେଇ, ଆଖି ତରାଟି, ତରଙ୍ଗ ତରଙ୍ଗ ହୋଇ, ସତେ କି ଭୂତପ୍ରେତ ପାଖକୁ ଅସିଗଲେ—ଏଇ ଯଙ୍ଗରେ କହନ୍ତି । ଗୁଡ ଡାଉଁ ଡ ଉଁ ହୁଏ ।

ସେ ହେଲେ କେବେ ଦେଖି ନାହିଁ । ତେବେ, କେତେ ଥର ଅନୁଭବ କରେ ଭୂତଆ—ପରଛିତ, ପ୍ରେତଆ-ପ ଗ, ଏମିତି ଅଜବ ଗୁଡ !

—କହ ମ, ତମେ କେବେ ଦେଖିଛ ? ମୋ ରାଣ, ସତ କହିବ ।

—ପ ଖକୁ ଘୁଞ୍ଚିଆସ । ହେଲା ନାହିଁ, ଆହୁରି ପାଖକୁ । କେ'ଉଠିଲେ ଡରିବ ଟି ! ହଁ, ଏଥର ହେଲା । ହାତରେ ମୋତେ ଗୁଡ଼ାଇଧର, ବାନ୍ଧପକାଅ । ଦେଖୁଛ କପରି ଅନ୍ଧାର ଗୁଡ; ଭଆଁ ପ ହେବ ପରି ! ନିଶା ଗର୍ଜୁଛି । ଫୁଲବାଣୀ ଏ, କନ୍ଧରାଇଜ । ଯେତେ ନାଲ ଝୋଲା, କମୁନ୍ତ ପଥର ପାହାଡ଼, ବଡ଼ ବଡ଼ ଗଛ, ସବୁଥିରେ ସେମାନେ ଅଣ୍ଡା ନେଇଛନ୍ତି । ଦେବତାମାନେ ବି ସେଇଠି ।

ଦେଖିବ ତ ଅଡଗାଁ, ଲୋକେ କୁକୁଡ଼ା, ପାରା, ଛେଳି, ମେଣ୍ଢା ବୋଦା ପଦାନ୍ତି । ପୂର୍ବେ ବୋଦା ବି ପଡ଼େ । ବହୁ ପୂର୍ବକାଳରେ ଏମାନେ ମଣିଷ ମେଣ୍ଟ କରି ଭୂତପ୍ରେତ, ଦେବଦେବୀଙ୍କୁ ରକ୍ତ ଦେଉଥିଲେ । ମାରଥିବା ମଣିଷର ହାଡ଼ମାଉଁସ ଟିକି ଟିକି କରି ହଳଦୀ କିଆରୀରେ ପୋତୁଥିଲେ । ହଳଦୀ ବେଶି ଫଳିବ, ପୁଣି ଗାଢ଼ ରଙ୍ଗ ହେବ ।

ଭୂତପ୍ରେତ ନାହାନ୍ତି ତ ଏତେଗୁଡ଼ାଏ ଲୋକ ଏପରି କରନ୍ତି କାହିଁକି ? ପୁଣି, ଦେଖିଛ ତ ଅଡଗାଁ, ବାଲିଗୁଡ଼ା ମାଳ ଭିତରର କନ୍ଧ ଗାଁ ମାନଙ୍କରେ ଗୋରା ତକତକ, ଗୋଲଗାଲିଆ, ସ୍ୱାସ୍ଥ୍ୟବନ୍ତ, ସୁନ୍ଦରୀଆ କନ୍ଧୁଣୀମାନଙ୍କୁ ? ସୁନ୍ଦର ମୁହଁଗୁଡ଼ିକରେ ଚିତା କୁଟି କେଡ଼େ ବୀଭତ୍ସ କରିଛନ୍ତି । ଦେବଦେବୀ ଓ ଭୂତପ୍ରେତ କାଳେ ସୁନ୍ଦର ଦେଖି ଖାଇଦେବେ, ସେଇଥିପାଇଁ ।

ଗୋରୀ ଢକଢକ ଗୋଲଗାଲିଆ ସ୍ୱାସ୍ଥ୍ୟବତୀ ସୁନ୍ଦରୀ କନ୍ୟାଟିଏ ! ଅତସୀ କେତେ ଥର ଦେଖିଛି । ଆଉ ଦେଖିଛି, କପାଳ ଅସ୍ୱିତର ଲୋଭନୀୟ ବର୍ତ୍ତୁଳ ଚଙ୍ଗଚଙ୍ଗ ସୁନ୍ଦରୀ ସେମାନଙ୍କର ବରନଣ୍ଡଳା ଦେହର ତାରୁଣ୍ୟ ଚଳପାପାଏ କଅଣ ନ ଦେଖିଲା ଭଳି ଉଣ୍ଡି ଯାଏ । ରଙ୍ଗ ରଙ୍ଗ ହୋଇ କନ୍ଧଗ୍ରୀବାରେ ସେ କଅଣ ପଚ୍ଚାରନ୍ତି ଓ କନ୍ଧଗରର ଝିଅଟିମାନେ ତାଙ୍କ କଥାର ଉତ୍ତର ଦେଇ ବଡ଼ ପାଟି କରି ହସିଉଠନ୍ତି । ଦୋହଲି ଦୋହଲି ଧାଇଁ ଧାଇଁ ଦୂରେଇ ଯାଆନ୍ତି ଗଛ ଉହାଡ଼କୁ । ତାଙ୍କର ଦୃଷ୍ଟି ବଙ୍କେଇ ବଙ୍କେଇ ଗୋଡ଼ାଇଯାଏ ସେମାନଙ୍କ ଭରା ଯୌବନର ଚଳନ୍ତି ଢେଉ ପଛରେ ।

ଅତସୀର ଗ୍ରାମରେ ଛନକା ପଡ଼େ । ଗୋରୀ ଢକଢକ ଗୋଲଗାଲିଆ ସୁନ୍ଦରୀ ଦରଲଙ୍ଗୁଳି ତରୁଣୀମାନେ । ତାଙ୍କର ଗ୍ରାମଜନାନଙ୍କରେ ସ୍ନେହ ପାଆନ୍ତି । ହସଖୁସିରେ କଥାବାର୍ତ୍ତା ହୁଅନ୍ତି । ସେଇ କଥା ସେ ବାହାଦୁରୀ କରି ଗପନ୍ତି ସେ କେତେ ସତ କେତେ ମିଛ ତାଙ୍କୁ ହିଁ ଜଣା । ଅତସୀ ନିଜକୁ ସେମାନଙ୍କ ସଙ୍ଗେ ତୁଳନା କରେ । ସେ ଗୋରୀ ଢକଢକ ନୁହେଁ । ସେ ଗୋଲଗାଲିଆ ନୁହେଁ କି, ଅଧଲଙ୍ଗୁଳି ନୁହେଁ । ତାର ସ୍ୱାସ୍ଥ୍ୟ ଅଛି । ମା ଖୁଡ଼େଇ, ଶାଶୁ-ନଣନ୍ଦ ଓ ଆଉ ଲୋକେ ତାକୁ କହନ୍ତି ସୁନ୍ଦରୀ । ଆଉ ଲୋକଙ୍କ ଆଖିରେ ବି ସେ ସୁନ୍ଦରୀ । ସ୍ୱାମୀଙ୍କର ସହକର୍ମୀ, ବନ୍ଧୁମାନେ—ଛିଃ !

ଅତସୀ ମୁହଁ ଶୁଖାଏ । ପଚ୍ଚାରିବ କୁ ମନେହୁଏ, କଅଣ ତୁମେ ପଚ୍ଚାରିଲ ଆଉ ସେମାନେ କଅଣ କହି ହସିହସିକା ପଳାଇଲେ ମ ? ତୁଣ୍ଡ ଖୋଲି ପଚ୍ଚାରିବାକୁ ସାହସ ହୁଏ ନାହିଁ ।

ଶାଶୂଘର ଗାଆଁରେ ଗୋଟିଏ ବର୍ଷ ବୋହୂପଣ କରି କଟାଇଲା । ସମସ୍ତଙ୍କର ସ୍ନେହର ବନ୍ଧନରେ ବାନ୍ଧି ହୋଇଥିଲା । ସେଇ ଗୋଟିଏ ବର୍ଷ ଭିତରେ ସ୍ୱାମୀ ଗୁରି ଥର ଗ୍ରାମକୁ ଯାଇଥିଲେ । କେଉଁଥର ଚାରି ଦିନରୁ ଅଧିକ ରହି ନ ଥିଲେ । ଗୋଟାଏ ଅଗ୍ରଦେଖାଇ ସେ ଯାଆନ୍ତି । ଅତସୀ ପାଇଁ ଯେ ସେ ଯାଆନ୍ତି, ଏକଥା କହିବାକୁ ଲାଜ ଲାଗେ । ଗୁରି ବର୍ଷ ଗ୍ରାକିରି କାଳ ମଧ୍ୟରେ ବର୍ଷକୁ ଥରେ

ସେଇ ଦଶରା ଛୁଟିରେ ତ ଆସୁଥିଲେ; ବାହା ହେଲା ପରେ ଗୋଟିଏ ବର୍ଷ ନ ପୂରୁଣୁ ଶ୍ୱଶୁର ଘର ଧାଇଁଲେଣି ଗୋ, ପୁଣି ଦଶରା ତ ଢେର ଅଛୁ ।

—କରେ ନାହ, କହୁନ ?

—ଶୁଣ ମ ଅଜଣୀ, ଆଇବୁଢ଼ୀ ଅଡ଼ା କରିଛନ୍ତି । ସେଇଥିପାଇଁ ବନବେଳେ ମୁଁ ଖଞ୍ଜାରେ ପଶେ ନାହିଁ । ତୁମେ ବ ବୋଉ ଖୁଡ଼ୀ ହେଉକାଙ୍କ ପାଖରେ ଗପୁଛ ଗତ ପନ୍ଦରେ ଯାକେ । ସେଇଥିପାଇଁ ଗାଁରେ ବୁଲେ, ଠାକୁର ମନ୍ଦିରରେ ଜୁଏ । ପୋଖରୀରେ ବନଫୀ ପକାଏ, ସଞ୍ଜବେଳେ ଆମ ଗାଁ କୋଠଘରେ ତାଆସ ଖେଳେ । ରାତ ପନ୍ଦରେ ହେଲେ ଲୁଚ ଲୁଚ ଅସେ ।

ଆମ ଗାଁରେ ପୁରୁଣା ରୀତିର ଚଳଣ ଅଛୁ । ତମ ପାଖକୁ ଆସିବାକୁ ମନ ଉଦ୍ଦଳ ବକଳ ହେଉଥିଲେ କଅଣ ହେବ, ଗାଆଁର ଚଳନକୁ ତ ମାନ ଚଳବାକୁ ହେବ ! ଆଇକୁ କଣ ଉତ୍ତର ଦେଇଥାନ୍ତି ଯେ ମୋ ଅଜଣୀ ମତେ ବାରମ୍ବାର ଟାଣିଆଣୁଛ ? ଆଉ ସ୍ତ୍ରୀ ବ କଅଣ କହନ୍ତି ଯେ ଦୂରକୁ ଚାଲିଗଲେ ବ ସେ ମୋତେ ବନରାତ ସବୁବେଳେ ଓଟାରୁଥାଏ ? ଉତ୍ତର ନ ଦେଇ ମୁଁ ଚାଲିଆସେ ଅଜଣୀ, ମୋ ହୃଦୟକୁ ଆଇ ତାର ଉତ୍ତର ପାଏ । ଏଥର ଦଶରାକୁ ମୁଁ ଆସିବ ନାହିଁ ।

—ସତେ ଆସିବ ନାହିଁ ? ଖାଲି ଲମ୍ବ ଲମ୍ବ ମନରଖା ଛଟପଟିଆ ଚିଠି ଲେଖୁଥିବ ? ମୋ ବଦ୍ୟା ଏଗାର କ୍ଳାସଯାଏ । ମୋ ଅକ୍ଷର ସୁନ୍ଦର ନୁହେଁ । ମତେ ଚିଠି ଲେଖିଆସେ ନାହିଁ । ଲେଖିବାକୁ ବେଳ ମିଳେ ଯେ ବାଗ ମିଳେ ନାହିଁ । କାଳେ କଏ ଆସିଯିବ ! ମନ ଚଙ୍ଗ୍ ଚଙ୍ଗ ହୁଏ । ତୁମେ ପୁଣି ଅଭିମାନ କର ଲେଖ । ମୋ ରାଣ, ଦଶରାକୁ ନଶ୍ଚେ ଆସିବ ।

— ହେଲା ଯା, ଆସିବ ।

ତାଙ୍କୁ ଦଶରାକୁ ଗ୍ରାମକୁ ଯିବାକୁ ପଡ଼ିଲା ନାହିଁ । ମିଛରେ ଲେଖିଲେ, ଦେହ ଭଲ ନାଇ, ବେଶି ଭିଡ଼ କାମ ପଡ଼ିଛୁ, ଛିଆପିଆକୁ ବେଳ ନାହିଁ; ସେ ଗାଁକୁ ଯାଇପାରିବେ ନାହିଁ ।

ଝୁଲଝୁଲ କାଣ୍ଡ ତେଣେ ଗାଁରେ । ଭୁଝ୍‌ଭୁଝ୍ ହେଲେ, ପୁଅ ବୋହୂକୁ ଭଲପାଉ ନାହିଁ । ଅତସୀ ଆଖିରେ ଲୁହ । କହିଥିଲେ ଆସିବେ ବୋଲି, ନ ଆସିଲେ କାହିଁକି ? ମାସେ ହେବ ଚିଠି ଦେଇନାହାନ୍ତି । ଆସିବେ ନାହିଁ ବୋଲି ବୋଉଙ୍କୁ ଲେଖିଲେ, ତାକୁ କିଛି ଲେଖିଲେ ନାହିଁ । ସତେ, ସେ ରାଗିଛନ୍ତି ? ସତେ ସେ ଭଲପାଉ ନାହାନ୍ତି ?

ତା'ର ଶୁଖିଲା ମୁହଁରେ କାନ୍ଦିଲା ଆଖିର ଲୁହ ସ୍ନେହମୟୀ ଶାଶୁଙ୍କର ସତର୍କ ଆଖି ଏଡ଼ାଇପାରିଲା ନାହିଁ । ଲୁହ ପୋଛି କହିଲେ ତୁନି ତୁନି, ବାଇଆଣୀ କ ଲୋ, ମୋ ପୁଅର ପେଟ କଥା, ମୋ ପୁଅର ମନକଥା ମୁଁ ବୁଝେ ! ଅସିତ ମତେ ଯାହା ଲେଖିଛି ମୁଁ ଜାଣେ । ସେ ମୋତେ ଡାକୁଛି । ଅଶ୍ରୁମାନ କରି ଲେଖିଛି, ମୁ ଯିବି ନାହିଁ, ତୁ ଆ, ବୋଉ !

ଦଶରା ଆଗରୁ ଶାଶୁ ଓ ଦଅର ଅକ୍ଷୟ ଅତସୀକୁ ସଙ୍ଗରେ ନେଇ ଫୁଲବାଣୀରେ ପହଞ୍ଚିଲେ । ଅସିତ୍ର ମୁହଁକୁ ଚାହିଁ ଅତସୀ ବୁଝିଲା, ସେ ସୁସ୍ଥସବଳ ଅଛନ୍ତି । କାମ ଭିଡ଼ କାହାକୁ କହନ୍ତି, ତାଙ୍କୁ ଅଜଣା, ପୁଝାରୀ ସ୍ବଭାବ ଅଛନ୍ତି । ଯିଆସିଆର ଅସୁବିଧା ହେଉ ନ ଥିବ । ଗାଁକୁ ଯିବାକୁ ମନାକରି ଲେଖିଥିଲେ କାହିଁକି ଏବେ ଜଣାପଡ଼ିଲା । ଗାଁ-ମାଇପିଙ୍କ ଭୁଝ୍‌ଭାଝ୍ କଥା ସତ । ସେ ମୋତେ ଭଲପାଉ ନାହାନ୍ତି ।

ଫୁଲବାଣୀ ଘରକରେ ପଲ ପଲ ଡାଆଣୀ ଲୋ, ଶୁଣିବା କଥା ତ ! ଲୋକେ ଶୋଇ ନଥିନ୍ତି । କୋଉ ଡାଆଣୀ ମନ୍ତ୍ର କରିଛି । ଅସିତ ପରି ପୁଅକୁ ବାନ୍ଧିରଖିଛି ।

—କାନ୍ଦୁଛ କାହିଁକି ଅତସୀ ?

—ତୁମେ ମୋତେ ଭଲପାଅ ନାହିଁ । ଗାଁକୁ ଯିବାକୁ ମନାକରି ଲେଖିଥିଲ । ସେମାନେ ବାରକଥା କହିଲେ ।

—ଆରେ, ତୁମେ ବଡ଼ ନବୋଧ । ତୁମକୁ ଆଣି ମୋ ପାଖରେ ଛାଡ଼ିଦେଇ ଯିବାକୁ ମୋ ବୋଉକୁ ଲେଖିଥିଲି । ମୋ ଚିଠିର ଅର୍ଥ ସେଇଥିପା । ମୁଁ ଜାଣେ, ମୋ ବୋଉ ବୁଝିବ । ମୋ ମନକଥା ହେଲା କ ନାହିଁ, କହ ।

—ମୋ ପାଖକୁ ମାତ୍ର ଦୁଇ ଚିଠି ନ ଦେଲ କାହିଁକି ?

—ତୁମଠୁ ବଳି ଅବୋଧ ଆଉ କେହି ନାହିଁ । ଚିଠି ଦେଇ ନ ଥିଲି ବୋଲି ମୋ ମନକଥା ମୋ ବୋଉ ମୋ ଚିଠିରୁ ବୁଝିଲା । ନୋହିଲେ ମୁଁ ଯାହା ଲେଖିଥିଲି, ସେକଥା ବୁଝିଥାଆନ୍ତା, ତୁମେ ମୋ ପାଖକୁ ଆସି ନ ଥାନ୍ତା ବ ଧରେଇ କଥଣ ଗୋଟାଏ ଆଳ ଦେଖାଇ ହଠାତ୍ ଯାଇଁ ପହଞ୍ଚିଆନ୍ତ ଦଶରା ଦିନ ।

—ସତେ ?

—ଏବେ କହ, ତୁମକୁ ମୁଁ ଭଲପାଏ କି ନାହିଁ ?

ଅତସୀ ଲାଜ ଲାଜ ହୋଇ ହସିଲା । ତାର ହସ ଦେଖିବାକୁ ଅସିତ ଅପେକ୍ଷା କଲା ନାହିଁ । ଆଲୁଅ ଲିଭେଇ ଅତସୀର ହାତଧରି ପାଖକୁ ଘୁଞ୍ଚାଇନେଲା ।

ସାତଦିନ ରହି ଅଜିତ୍ ବୋଉଙ୍କୁ ସଙ୍ଗରେ ନେଇ ଗାମକୁ ଫେରିଲା ।

ଫୁଲବାଣୀରେ ଆଠମାସ କଟିଲାଣି । କେଉଁ ଡାଆଣୀ ତାଙ୍କୁ ବାନ୍ଧିରଖିଥିଲା ବୋଲି ଲୋକେ ନିନ୍ଦା କରୁଥିଲେ, ସେ କାହିଁ ? ନିଜେ ଅତସୀ ହୋଇଛି ଡାଆଣୀ । ଇଏ ନା, ସେ ହୋଇଛନ୍ତି ଡାଆଣୀ । ତାଙ୍କୁ ଶୋଷି ଖାଇଛନ୍ତି । କାମୁଡ଼ି ଚୋବାଇ ଚୋବେଇ ଗିଳିଦେବାକୁ ସେ ଚାହାନ୍ତି । ତାଙ୍କର ଭଲପାଇବା ଯେ ସେଇଆ । ସେତିକି ନ କଲେ ଅତସୀ ଭାବିବ, ସେ ଭଲପାଉ ନାହାନ୍ତି । ସେମାନେ କହିବେ, ଝିଅ ବୋହୂକୁ ଦେଖିପାରୁ ନାହିଁ । ନିନ୍ଦା ରଟିବ । କହିବେ, ଛି, ଅସିତ୍ ଭଲ ନୁହେଁ, ଆଉ କଏ ଆଖିରେ ପଡ଼ିବନି । କହିବେ ଛି, ଛି, ଅତସୀ ବୋହୂଟା ଭଲ ନୁହେଁ, ନିଶ୍ଚୟ କଥଣ ଦୁର୍ଗୁଣ ଅଛି ।

ଲାଜ ସମ୍ମାନ ହାତ ଧରାଧରି, ଗଡ଼େ ଦିନ ।

କନ୍ଧମାଳରେ ଆଠମାସ କଟିଲା ।

ସତେ, ସ୍ନେହରେ ସେ ଗୁଡ଼େଇ ତୁଡ଼େଇ ବାନ୍ଧିରଖିଛନ୍ତି । ଦେହ, ମନ, ଧନ, ଧ୍ୟାନ ଓ ବଚନ ସମର୍ପି ଦେଇଛନ୍ତି । ତାଙ୍କର ସମର୍ପିତ ଧନରୁ କେଉଁ ଭାଗ

ପାଇଁ ଲୋଡ଼ା ପଡ଼ିଲେ ନେବାକୁ ସେ ଅନୁରୋଧ କରନ୍ତି । ଅତସୀ ସଙ୍ଗେ ସଙ୍ଗେ ତ କାଢ଼ିଦିଏ, ମନରେ ଗରବ ମଧ୍ୟ ଟିକେ, ସେ ମୋର, ସେ ସର୍ବତୋଭାବରେ ମୋର ।

ତାଙ୍କର ଆଚରଣରେ କେବେ କମ୍ପା-କମ୍ପୁର ଆଭାସ ସେ ପାଇନାହିଁ । ଗସ୍ତରେ ବାହାରିଲେ ସଙ୍ଗରେ ନେବାକୁ ଅଳି କରନ୍ତି । 'ଗ୍ରାମ ଯିବା, ବାଲିଗୁଡ଼ା ଦେଖି ଆସିବ, ପ୍ରକୃତିର ଶୋଭାସମ୍ଭାର ସେଇଠି ଅଜାଡ଼ି ହୋଇପଡ଼ିଛି । ସେଇ ଶୋଭାରାଇଜର ଅନ୍ଧକନ୍ଧରେ ଛୋଟ ଗ୍ରାମମାନଙ୍କରେ ବାସ କରୁଥିବା ସରଳ ତରଳ ଲୋକଙ୍କୁ ଦେଖିଆସିବ ।'

ଯାଇଛି, ଦେଖିଛି । ଅନୁଭବ କରିଛି, ତାର ସ୍ୱାମୀ ତାକୁ ସ୍ନେହ କଲେ ମଧ୍ୟ ତାଙ୍କର ସ୍ନେହ ସୀମାବଦ୍ଧ ନୁହେଁ । ଫୁଲବାଣୀ ଫେରିଲା ପରେ ମନସରସୀ ମୁହୂର୍ତ୍ତିରେ ସେ କଥା ଜଗି ପଡୁଛି ।

ଉତ୍ତର ପାଇଛି, ଶୁଣ ମ ଅତସୀ, ତୁମ ଦେହରେ ଓଭରକୋଟ ଦେଖି ସେ ସ୍ତ୍ରୀଅମାନେ ସନ୍ଦେହରେ ପଡ଼ିଥିଲେ, ତୁମେ ନାରୀ କି ପୁରୁଷ । ମୁହଁଟି ଦେଖିଲେ ନାରୀ ବୋଲି ମନେହେଉଛି । ଆବୃତ ଦେହକୁ ଚାହିଁଲେ ନର ବୋଲି ଭ୍ରମ ହେଉଛି । ସେମାନଙ୍କ କଥା ମୁଁ ବୁଝିପାରିବି ବୋଲି ସେମାନେ ଅନୁମାନ କରି ନ ଥିଲେ । ମୁଁ କହିଲି, ତୁମେ ଯାହା ଠଉରେଇଛ ସତ । ଏହାଙ୍କ ମୁହଁଟା ନାରୀ ଓ ଦେହଟା ନର ।

ସେମାନେ ବିଶ୍ୱାସ କଲେ ।

ପୁଣି କହିଲି, ସେ ଆସିଛି ତମ ଗାଁକୁ । ତାକୁ କନିଆ ମିଳିନି ନାହିଁ ସେ ତମମାନଙ୍କ ଭିତରୁ ଜଣକୁ ସେ ଚିହ୍ନି ନେବ, ଧାଙ୍ଗଡ଼ୀ କରିବ । କାହାକୁ ନେବ, ସେଇଆ ସେ ଭାବୁଛି । ଏତିକି ଶୁଣି ହସିହସିକା ଚଲି ପରି ଉଡ଼ି ପଳାଇଲେ । ସେମାନେ ସରଳ ବିଶ୍ୱାସୀ, ଅତି ଡରୁଆ ।

ଅତସୀ ହସିଲା । ପୁଣି ଭାବିଲା, ତାଙ୍କର ପରିକା ମୁଁ ବି ସରଳବିଶ୍ୱାସୀ । ସେମାନଙ୍କର ଭାଷା ଜାଣେ ନାହିଁ । ତୁମେ ଯାହା କହିଲ, ମୋତେ ବିଶ୍ୱାସ

କରିବା'କୁ ପଡ଼ିବ । ତୁମର ଦୃଷ୍ଟିରେ ମୁଁ ଉହ୍ରଉହ୍ର ଲାଳସା ଦେଖିଥିଲି; ଦେଖିଥିଲି ତୁମ ଓଠରେ ଡାଆଁଣିଆ ହସ । ତୁମକୁ ମୁଁ ସର୍ବସ୍ୱ ସମର୍ପିଦେଇଛି । ତଥାପି ତୁମ ମନର କେଉଁ ଅଜଣା କୋଣରେ ଗୋଲଗାଲିଆ, ଗୋରାତକତକ ଦରଲଙ୍ଗୁଳା, ସ୍ୱାସ୍ଥ୍ୟବତୀ, ସୁନ୍ଦରୀ ନାରୀ ପାଇଁ ଟିକିଏ ଡହଳବିକଳପଣ ଲୁଚିରହିଛି ।

—ତୁମକୁ ପଚାରିଲେ ତୁମେ ମନା କରିବ, ହୁଏତ ରାଗିବ, ଅଭିମାନ କରିବ । ଯେଉଁ ଦେହଟାକୁ ଭଲପଣରେ ଆଲିଙ୍ଗି ଧରିଛ, ତାକୁ ଆଡ଼େଇ ଦେବ । ଯାହା ତୁମେ କହୁଛ, ମୁଁ ସହ୍ୟ କରୁଛି । ସବୁ ସତ, ପ୍ରଶ୍ନ ପଚାରିବାକୁ ମୋର ସାହସ ନାହିଁ ।

ସେମାନଙ୍କଠାରୁ ମୁଁ ଅଧିକ ଡରୁଆ । ମୋର ସ୍ୱାଧୀନତା ନାହିଁ । ତୁମରି ବେଢ଼ରେ ମୁଁ ଆଜୀବନ ବନ୍ଦୀ । ସେମାନଙ୍କର ସ୍ୱାଧୀନତା ଅଛି । ମନ ହେଲେ ଜଣକୁ ଛାଡ଼ି ଅନ୍ୟ ଜଣକୁ ବେଢ଼ାରେ ନୁହେଁ, ଗୋଡ଼ରେ ବାନ୍ଧିବେ । ଅପନ୍ତ ଲାଗିଲେ ଗୋଡ଼ ଛିଞ୍ଚାଡ଼ି ଅନ୍ୟ ଆଡ଼କୁ ଦଉଡ଼ିଯିବେ ।—

ଛି, ଛି ଅବାଟିଆ କଥା ମୋ ମନକୁ ଆସିଲା ! ମୋତେ ମରଣ ହେଉ । ପୁରୁଷପିଲା, ଭଅଁର ଜାତି, ଆଖି ଟିକେ କେଣେ ଧାଇଁଗଲା ବୋଲି ମନକୁ ମୁଁ ଅଯଥା ଭାବନା ଆଣୁଛି ଅଲାଜୁକୀଟା । ମନର ଭାବନା ଯଦି ସେ ଦେଖିପାରୁ ଥାଆନ୍ତେ ! କେହି କାହାର ମରମ କଥା ଜାଣେ ନାହିଁ ।

ବାହାଘର ଆଗ ଜୀବନର କଥା ସେ ଗପନ୍ତି, ମନ ଖୋଲି । ଘେନାଘେନା ମନ ଟଣାଟଣି କାହାଣୀ । ସତ ମିଛ ତାଙ୍କୁ ଜଣା । ସବୁଠିଁ ସେ ଜିତିଛନ୍ତି, ପାଦ ନ ଖସାଇ ହସିହସିକା ପଛେଇ ଆସିଛନ୍ତି ।

—ବୁଝିଲ ଅତସୀ, ତୁମ ନାରୀଜାତିଟା ଦୁର୍ବଳମନା । ତୁମେ ଟାଣିପାର ନେ ଆଗେଇ ଆସିପାର ନାହିଁ । ଆମେ ଆଗେଇ ଯାଉ । ହସିହସିକା ପଛେଇ ଆସିପାରୁ । ଆମର ଦାୟିତ୍ୱଜ୍ଞାନ ଅଛି । ଏ ସମାଜ ଏ କୃଷ୍ଟି ଆମେ ଗଢ଼ିଛୁ । ଆମକୁ ହିଁ ରକ୍ଷା କରିବାକୁ ହେବ । ଆମର ଦୁର୍ବଳତା ପାଇଁ ସାମାଜିକ ଗଠନସ୍ତମ୍ଭ ଭାଙ୍ଗିବ । ଆମେ ହେବା ବଣର ପଶୁ ପରି । ସେଇଥିପାଇଁ ଆମେ ପଛେଇଆସୁ ।

—ଆଗେଇଯାଅ ତେବେ କାହିଁକି ?—ଅତସୀ ପଚାରିଲା ।

—ତୁମେମାନେ ଆମକୁ ଡାକ । ଆସ ଅସ ବୋଲି କେହି ରଡ଼ି ଛାଡ଼େ ନାହିଁ । ତମର ଛଇଛଟକାପଣ, ଛଳଛଳ ବୋଲା ଆଖିର କଣୁଆ ଚାହାଣି…

—ଥାଉ ଥାଉ, ସେତିକି କହଥା । ତୁମେଗୁଡ଼ାକ ଖୁବ ଭଲ । କେତେ ପ୍ରକାର ପ୍ରଲୋଭନ ଦେଖାଇ କହିଲ ଗାଁ ଆଗେଇଯାଅ । ମନେ ମନେ କାଣୀ ପିଠା ଖାଅ ପରା ! ଥ ଥୁ ଦେଖି, ମାନମହତକୁ ଜଗି, ସୁଧାର ପିଲା ପରି ମୁହଁ ଫେରାଇ ନେଉଛ । ପଛକୁ ଚାହୁଁ ନାହିଁ । ମନ କୁତ୍‌କୁତ୍, କିଏ ପଛରୁ ଆସି ଦେଲା କି ବା' ଠେଙ୍ଗା ?

ଅତସୀ କହିବାକୁ ଲାଗିଲା, ସମାଜ ଆଉ କୃଷ୍ଟି ତୁମେ ଗଢ଼ିଥାଇପାର ତାକୁ ପବିତ୍ର ନିର୍ମଳ କରି ରଖିଛୁ ଆମେ, ତୁମର ମା ଭଉଣୀ ଓ ଝିଅମାନେ ।

ଅସିତ ମୁଗ୍ଧ ଆଖିରେ ତାର ପ୍ରେୟସୀକୁ ଚାହିଁଲା ।

ଅତସୀ ବିରକ୍ତ ହୋଇନାହିଁ, ଅଭିମାନ କରିନାହିଁ । ସେ ଉତ୍ତେଜିତ ହୋଇ ନାହିଁ । ସରଳ, ନିଷ୍କପଟ, ମନଭୁଲା ମୁହଁରେ ହସ ଲାଗିରହିଛି । ସେ ହସରେ ବିଦ୍ରୂପର ପରଶ ନାହିଁ । ବିକଶିତ ଅନ୍ତରର ସ୍ୱାଭାବିକ ହସ ।

ଅତସୀ ଅଳ୍ପ ପାଠପଢ଼ିଛି, ବୟସରେ ଦଶବର୍ଷ ସାନ । ଏ ଭାବ, ଏ ଭାଷା, ପାଇଲା କାହୁଁ ? କାହାଠୁଁ ଶୁଣି, କି କେଉଁ ବହିରୁ ପଢ଼ି ମନେରଖିଛି ? ନିଜର ଅଭିଜ୍ଞତା ଅଛି କି ? ତେବେ ତ…

ଛଡ଼ କଅଣ ? ସେ କାହିଁକି ମନକୁ ନୀଚ, ଅନୁବାଦର ଭାବ ଆଣିବ ? ତା'ର ପତ୍ନୀ ତା'ର ହେଲେ ଯଥେଷ୍ଟ । ଜୀବନ ସୁଖମୟ ହେବ । ଦୁହେଁ ଦୁହିଁଙ୍କୁ ପ୍ରଗାଢ଼ ପ୍ରେମର ବନ୍ଧନରେ ବାନ୍ଧିଛନ୍ତି । ଉଭୟଙ୍କର ପିତାମାତା, ଜ୍ଞାତିକୁଟୁମ୍ବ, ବନ୍ଧୁବାନ୍ଧବଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା ଦୁହିଁଙ୍କର ପ୍ରେମକୁ ପବିତ୍ର ଅଭେଦ୍ୟ କରିଛି । ସେହି ପ୍ରେମର ନିବିଡ଼ ବନ୍ଧନ ଛିଣ୍ଡିବା ତ ଦୂରର କଥା, ଶିଥିଳ ବି ହେବ ନାହିଁ । ନା, କଦାପି ନୁହେଁ ।

—ତୁମେ ଏମିତି ତବ ତବ କରି ମୋ ମୁହଁକୁ ଚାହିଁରହିଛ କାହିଁକି ? ତୁଣ୍ଡରୁ କଅଣ ବାହାରିଗଲା, ସେଥିପାଇଁ ରାଗିଲ କି ? ମୋ କଥା ମୁଁ ଫେରାଇ ନେଉଛି ପଛେ, ତୁମେ ସେମିତି ଅନାଅ ନାହିଁ, କି ରାଗ ନାହିଁ ।

ଅତସୀ ଉତ୍ସବହୀନ ହେଲା । ଓଠରୁ ହସ ଲିଭିଲା । ବିଷାଦର କଳାଚହଲ ମାର୍କିଲା ତାର ମୁହଁକୁ । ସେ ଚଉକିରୁ ଉଠି ପଲଙ୍କ ପାଖକୁ ଗଲା । ଅସିତ ବଡ଼ ତକିଆରେ ଭରଦେଇ ଅନେଇ ଶୋଇଥିଲା । ତେଙ୍ଗା ଟେବୁଲ ଉପରେ କାନ୍ଥ କୋଣରେ ହରିକାନ୍ ଲାଇଟ୍ ଜଳୁଥିଲା । ମଧୁର ଆଲୁଅ, କବାଟ ଝରକା ଖୋଲା ।

ବାହାରେ ସପ୍ତମୀ ଜହ୍ନର ମହ୍ଲନ ଆଲୁଅ, ଗ୍ରୁଡି ଗ୍ରୁଡିକା, ଗଛ ସନ୍ଧରେ ଗ୍ରୁପିଗ୍ରୁପିକା । ଫୁଲବାଡ଼ୀର ଶୀତୁଆ ସ୍ୱର । ଝିଆପିଆ ହୋଇନାହିଁ । ପୁହାଣ୍ଡର ବ୍ରେଖେଇ ସରିନାହିଁ । ସେ କେ କେହ୍ନ ଗ୍ରୁଜର ଆସି ଡାକିବାର ସମ୍ଭାବନା ଅଛି । ତଥାପି, ଅତସୀ ନଇଁପଡ଼ିଲା । ଦୁଇ ହାତରେ ଅସିତର ମୁହଁ ଟିକୁ ଧରି ତାର ଗାଲରେ ଚୋକ ଦେଲା । କହିଲା, ରାଗିଲ ସତେ ?

ତା'ର ବେକଟିକୁ ଚିଡ଼ାଇ ଧରି ଅସିତ ଖେଳ କରି କହିଲା, ରାଗିବ ତୁମ ଉପରେ ? ରାଗିପାରିବ ? ବାହାଲ ହୋଇ ମୁଁ ମୋ ଅତସୀକୁ ଅନାଇଁ ରହିଥିଲି, ଚାହୁଁଥିଲି । ତୁମେ ଏତେକଥା ଜାଣ ? ତୁମେ ରାଗିପାର; ପୁଣି ଏତେ ସୁନ୍ଦର କହିପାର ? ଆଉ କହ, ଆଉ କହ ସେ ମୁଁ ମିଛ କହୁଛି । ସବୁ ଝିଅବୋହୂ ସତୀ ଓ ସାଧ୍ୱୀ । କେହି କେବେ ଅବାଟକୁ ଗୋଡ଼ ବଢ଼ାଇ ନାହାନ୍ତି କି ବଢ଼ାଇବେ ନାହିଁ ।

— ଛାଡ଼, ଝରକା କବାଟ ମୁକୁଳା ଅଛି, ପୁହଁ ଘା ଆସି ଡାକିବେ ।

ଅତସୀ ପଲଙ୍କ ପାଖରୁ ଘୁଞ୍ଚିଆସିଲା । ଅସିତର ମୁହଁକୁ ଅନାଇଁ ହସିହସି କହିଲା, ସତେ ମ ସତେ, ସବୁ ଝିଅବୋହୂ ଆମ ସମାଜରେ ସତୀ ଓ ସାଧ୍ୱୀ । ଯେଉଁମାନେ କେଉଁ ଲୋଭରେପଡ଼ି କେବେ ଅବାଟକୁ ଗୋଡ଼ ବଢ଼ାଇଥିବେ କି ଭବିଷ୍ୟତରେ ବଢ଼ାଇବେ, ସେମାନଙ୍କର ସେଥିପାଇଁ ଦୋଷ ଅଳପ । ତୁମେ ପୁରୁଷ ଯେଲ, ରମଣୀଗଞ୍ଜଣା । କେଉଁ ଝିଅ, ବୋହୂ, କି ମାଆମାନଙ୍କର ଜଣା ଅଜଣା କେଉଁ ଅସୁବିଧାର ସୁଯୋଗ ନେଇ ତୁମେ ତାଙ୍କୁ ଅବାଟକୁ ଟାଣ, ଅଲାଜକ ଦେଲ ।

ଅତସୀ ହସିଦେଇ ବେଷଘରକୁ ଚାଲିଗଲେ ଅସିତ ତା'ର ଧୀର ଚୋହଲ ଚାଲିକୁ ଚାହିଁରହିଲା । ପାତଳ ଇଷତ୍ ଗୋଲାପୀ ଶାଢ଼ିପିନ୍ଧି ସେ ସୁନ୍ଦର ଲୋଭନୀୟ ଦିଶୁଛି । ଗଣ୍ଠିରେ ଗୁଡ଼ା ହୋଇଥିବା ବଉଳଫୁଲର ମାଳରୁ ବାସଚହଟୁଛି । କାମନା ଗୋଡ଼ାଇଯାଉଛି ପଛରେ । ହାତଧରି ପାଖକୁ ଆଣିବାକୁ ମନ ଓ ଦେହର ପ୍ରତି ଅଣୁ ପରମାଣୁ ବ୍ୟଗ୍ର, ଚଞ୍ଚଳ, ଛଟପଟ ହେଉଛି ।

ଅତସୀ ତାର ପତ୍ନୀ । ସେ ଫେରିଆସିବ ଶୀଘ୍ର । କେତେ ଗଳ୍ପରେ ଖୋଲିବ ଯେଉଁବ । ବନ୍ଧଣା ପାଶ ଶୁଆଇଦେବ । ମଶାରୀ ପକାଇବ । ନିଜେ ଯାଇ କେଉଁ ଛଟକରେ ମୁଠିଏ ଖାଇଦେଇ ଆସିବ । କବାଟ କଲ ଆଲୁଅ କମାଇବ; ଧୀରେ ଧୀରେ ମଶାରୀ ଟେକି ପଲଙ୍କ ଉପରକୁ ଆସିବ । ନିଦ ବାଣିବ । କପରି ସେ ଜାଣିବ ସେ ଅସିତ ଛଟାଗାଳ ଶୋଇଛୁ ? ଅତସୀ ଧୀରେ ଧୀରେ ପାଖରେ ଶୋଇବ । ଆଖି ବୁଜିବ, ହାତଟି ଲମ୍ବାଇ ଅସିତର ଦେହଟିକୁ ଗୁଡ଼ାଇ ଧରିବ ।

—ଆରେ, ମୋ ଘୁମନିଦ ଭାଙ୍ଗିଦେଲ, ଅତସୀ ?

—ତୁମେ ଛଟାଗାଳ ଶୋଇଥିଲ, ମୁଁ ଜାଣେ ସେ !

—ଭୂତ ପ୍ରେତ, ଡାହାଣୀ-ଚିରଗୁଣୀଙ୍କର ଡେରେ ସ୍ୱତନ୍ତ୍ର ରାଜ୍ୟ ନାହିଁ ? ସେମାନେ ଗଛ, ପଥର, ମଶାଣି, ଡାକ୍ତରଖାନା, କେଉଁ ପୁରୁଣା ଏକୁଟିଆ ଘର କି ବଙ୍ଗଳା, ଏଇଠି ସବୁ ରହନ୍ତି ଏଇ ଦେଶରେ ?

—ତମର ମାଟି ଶୁଖୁଛି ଅତସୀ, ତୁନି ତୁନି କଣ କଥା କହୁ । ସେମାନେ ସବୁଠାରେ ଅଛନ୍ତି । ସେମାନଙ୍କ କଥା ପଡ଼ିଲେ, ସେମାନଙ୍କର କାନରେ ବାଜିଲେ ପାଖକୁ ଆସନ୍ତି । ଏକୁଟିଆ ମଣିଷ ଦେଖିଲେ ଡରାନ୍ତି । ଆଉ କିଛି ଅନିଷ୍ଟ କରନ୍ତି ନାହିଁ । ଆମର ଏଇ କୋଠିରେ, ସେ ତ ଅତି ପୁରୁଣା, କେତେ ପ୍ରେତ କେଉଁଠି ଲୁଚି ରହିଥିବେ କିଏ କହିବ ? ଶୁଣିବ ?

—ଥରିଲ ସ୍ୱରରେ ଅତସୀ ପଚାରିଲ, କହ ।

—ଡରିବ ନାହିଁ ତ ?

—ନା । ତମେ ପାଖରେ ଥିଲେ ମୋର ଡରଭୟ କିଛି ନ ଥାଏ ।

--ଏଁ, ତମର ଛାତି ବେଶି ଧଡ଼ଧଡ଼ ହେଉଛି !

—ମୋର ନୁହେଁ, ତମର ।

ଅତସୀ ଅସିତ ଉପରୁ ଗୁଡ଼ରଟି ଟାଣି ଆଣି ନିଜକୁ ସମ୍ପୂର୍ଣ୍ଣ ରୂପେ ଘୋଡ଼ାଇଲା । ହାତ ବଢ଼ାଇ ଅସିତର କଡ଼ରେ ହୃଦୟର ଅତିପାଖେ ଗୁଞ୍ଜିଦେଇ

କହିଲା, ଆଉ କି ଡର ? କବାଟ ବନ୍ଦ ଅଛି, ମଶାରି ପଡ଼ିଛି ! ଚଦର ଆମେ ଘୋଡ଼ି ହୋଇଛୁ । ଆଲୁଅ ମିଞ୍ଜି ମିଞ୍ଜି ଜଳୁଛି । ହେଇ ତ, ଟର୍ଚ୍ଚଲାଇଟ୍ ତକିଆ ପାଖରେ ଥୁଆହୋଇଛି । କାନ୍ଥକୁ ଡେରି ହୋଇ ରଖା ହୋଇଛି ତୁମର ଦ' ନଳିଆ ବନ୍ଧୁକ । ଆଉ ମୋର ଡର ନାହିଁ । ହଉ ଅନ୍ଧାର ରାତି, ଉଆଁସ ରାତି, ନିଶା ମନଇଚ୍ଛା ଗର୍ଜୁଥାଉ, କହ ଏଥର ।

—ତେବେ ଶୁଣ, ଲୋକେ କହନ୍ତି, ଫୁଲବାଣୀର ଏଯେଉଁ କୋଠିରେ ଆମେ ରହୁଛୁ, ଏଠି ଜଣେ ଗୋରା ଅଫିସର ବହୁବର୍ଷ ତଳେ ଥିଲେ । ତାଙ୍କର ଦୁଇ ପୁଅ ବିଲାତରେ ଥାଇ ପାଠପଢ଼ନ୍ତି । ମେମ୍ ସାହେବ ବି ଏଇଠି ରହନ୍ତି । ସେ କୁଆଡ଼େ ସୁନ୍ଦରୀ ଥିଲେ ଓ ଭଲ ଲୋକ ଥିଲେ । ଲୋକଙ୍କୁ ସ୍ନେହ କରୁଥିଲେ । ଗରିବଙ୍କ ଦୁଃଖ ସହିପାରୁ ନ ଥିଲେ । ଭିକାରିବାଳକ ଓ ଦୁଃଖୀ ଦରିଦ୍ରଙ୍କର ଦୁଃଖ ଶୁଣିଲେ ହାତ ଖୋଲି ଦାନ କରୁଥିଲେ । ଆଉ ସାହେବ ସେ ମଦୁଆ । ଚବିଶ ଘଣ୍ଟା ମଦ ଖାଇ ଆଖି ରଙ୍ଗ କରିଥାଏ । ସେ କୁଆଡ଼େ ଦୁଷ୍ଟଲୋକ । ରାସ୍ତାରେ ଗଲେ ମେମ୍ ସେତେ ଜିଗର କଲେ ବି ସଙ୍ଗରେ ନିଏ ନାହିଁ । ଡରାଇ କହେ, ଝୋଲା, ପର୍ବତ, ଅରଣ୍ୟ ଭିତରେ ମଣିଷଖିଆ ପଲପଲ ବାଘ ଅଛନ୍ତି । କାଠଗଡ଼ ପରି ଅଜଗରସବୁ ଅଛନ୍ତି ସେ ଜୀବଜନ୍ତୁ ଗିଳିପକାନ୍ତି । ତୁମେ ମାଇପିଲୋକ, ତମକୁ ସଙ୍ଗରେ ନେଲେ ନିରାପଦ ନୁହେଁ ।

ଅତସୀର ଗୁଡ ଥର ଥର କମ୍ପିଲା । ତାକୁ କାନ୍ଦ ମାଡ଼ିଲା । ସାହେବ ତ ସତ କଥା କହେ । କେତେଥର ସେ ଦେଖିଲାଣି କନ୍ଧମାନେ ଓଡ଼ିଆ ନଳୀ କି ଧନୁଶର, ଟେଣ୍ଟା, ବର୍ଚ୍ଛାରେ କେଉଁ ଅଚିନାଗିନ୍ ଅରଣ୍ୟ ଭିତରୁ ମହାବଳ ବାଘ, ଚିତାବାଘ ଅଜଗର, ଅହିରାଜ ମାରି ଇନାମ୍ ନେବାକୁ ମାଲିକଙ୍କୁ ଆଣନ୍ତି । ସେମାନଙ୍କର ବୀରତ୍ୱର କାହାଣୀ ବର୍ଣ୍ଣନା କରନ୍ତି ।

ଏଇ ବାଘଟା ବଣରୁ ଆସି ଲୁଚି ଲୁଚି ଗାଆଁ ତଳ ଗ୍ରେଟ ବଣରେ ପଶେ । ସଞ୍ଜହେଲେ ସମସ୍ତେ ଖାଇପିଇ ଶୋଇଲେ ସେ କେଉଁ ଛିଟକରେ ଆସି ଗୁହାଳରେ ପଶି ଗୁଡ଼, ବଳଦ, ଛେଳି, ମେଣ୍ଢା ଯାହା ହାତୁଡ଼ିଲା, ମାରି ଘୋଷାରିନିଏ । ସେ ରଟାଏ ତ ! ଜଗିଲେ, ଫାଶ ବସାଇଲେ କି ହେବ ? ଅତି ଚାଲାକ ସେ ! ଆଜି ଏ ଗ୍ରାମରୁ ନେଲା ତ ଘରିବନ ପରେ ପାଞ୍ଚକୋଶ ଦୂରରେ ଆଉ କେଉଁ ଗ୍ରାମରୁ ନେଲା । ଏମିତି ସେ କରେ, ମଣିଷ ଛୁଏଁ ନାହିଁ ।

କେଜାଣି ପର୍ଯ୍ୟନ୍ତ କି ଖାଡ଼ିବ ଜଳୁ ନେଇଥିବ । ଅକସ୍ମାତ୍ ଆମର ଗ୍ରାମରେ ଢୁକିଲା । ପଶିଗଲା ଗୁହାଳ ଭିତରେ । ଜାଣିଥିଲା କି ମୋ ବୁଢ଼ୀ-ମା'କୁ ଜର ବୋଲି ! ସେ ଘର ଭିତରେ ଅନିଦ୍ରା ହୋଇ ଚେଇଁଛି ? ବାହାର ବୋବାଳି ଶୁଣି ବୁଢ଼ୀ ଉଠିଲା, ଗନ୍ଧ ବାରିଲା । ସାହସ କରି ଗୁହାଳର କବାଟ ଟାଣି ବାହାରୁ ଶିକୁଳି ଦେଲା, ଡାକ ଛାଡ଼ିଲା ।

'କି ଭୟଙ୍କର ' ଚମଡ଼ା ନଷ୍ଟ କରିଦେଇଛନ୍ତି । ଡେଣ୍ଟା ବର୍ଚ୍ଛା ମାଡ଼ରେ ଦେହଯାକ ଜଣା ମୁଣ୍ଡରେ ଟାଙ୍ଗିଆ ଚୋଟ । ଚମଡ଼ାଟା କାମରେ ଲାଗିବ ନାହିଁ । ଛଡ଼ିଗଲାଣି, କି ଦୁର୍ଗନ୍ଧ ! ନେଇଯା, ନେଇଯା ଲାସଟାକୁ ।

ଅତସୀ ନାକରେ ଲୁଗାଦେଇ ଘର ଭିତରକୁ ପଳାଇଲା । ଗନ୍ଧରେ ପେଟରୁ ଖାଇ ବାହାରିପଡ଼ିବ ।

—ଦେଖ ମା, ଏଇ ବାଘୁଣୀ ଚାରିଟା ମଣିଷ ଖାଇଛି । ଆହା, ବଡ଼ ସୁନ୍ଦମାଂସ ! ସାହସ କମ୍ ନୁହେଁ । ପାହାଡ଼କଡ଼ ବାଟ ପାଖରେ ନାଳକୂଳରେ ଲୁଚି ବସିଥାଏ, ପଛରୁ ଟାଣିନିଏ । ନେଲା ନେଲା ନହେଲାବେଳକୁ ସେ ମଣିଷକୁ କାଖରେ ଜାକି ଝପଟି ବଣରେ ପଶେ । ଅନ୍ତ କଷ୍ଟରେ ମଡ଼ ଠାବ କଲି । ଗଛ ମଝିରେ ମଞ୍ଚାଣ ବାନ୍ଧିଲି । ସଞ୍ଜ ଆଗରୁ ଲୁଚି ବସିଲି ମଞ୍ଚାଣ ଉପରେ । ପାଖରେ ଆଉ ଜଣେ ବାଘୁଆ ଅବଶ୍ୟ ଥାଏ, ଟର୍ଚ୍ଚ ନ ଥାଏ ।

ଜହ୍ନ ଆଲୁଅ ଗ୍ରୁପିଗ୍ରୁପିକା, ଝିଁଗରଣାକୂଳ । ସଞ୍ଜ ଯେମିତି ହେଲା, ପତର ଖସ ଖସ କରି ଅସିଲିତ ' ସାଙ୍ଗରେ ଦୁଇଟା ଛୁଆ । ଗୋଟାଏ ଚୋଟ ଗୁଳିମାଡ଼ରେ ପଟ୍‌ଟପଟଟା ଗର୍ଜିକ ଛୁଡ଼ି ଟଳିପଡ଼ିଲା । ହେଲେ, ଆମର ପ୍ରାଣେ ଡର । ସାରାରାତି ସେଇ ମଞ୍ଚା ଉପରେ କଟାଇଲୁ ମା, କିଏ ଜାଣେ କାଳେ ସେ ଘାଇଲା ହୋଇ ପଡ଼ିଥିବ ' କାଳେ ବାଘଟା କେଉଁଠି ଲୁଚିବସିଥିବ । ତଳକୁ ଓହ୍ଲାଇଲେ ଯାଉଁକରି ମାଡ଼ିବସିବ । ସକାଳ ହେଲା, ତଥାପି ମନରେ ଡର ଥାଏ । ଖରା ପଡ଼ିଲାରୁ ସାହସ ହେଲା, ଓହ୍ଲାଇଲୁ । ଦେଖିଲୁ, ବାଘୁଣୀର ମୁଣ୍ଡର ଏପାଖରେ ଗୁଳିପଶି ସେପାଖେ ବାହାରିଯାଇଛି । ସୁନ୍ଦର ଚମଡ଼ା ହେଲେ ଟ୍ୟାନିଂ କରେଇ ରଖିବାକୁ ଭଲ ହେବ ।

—କରେ, ଦେଖୁ ନା ?

—ଅଉ ଗୋଟାଏ ମାରିଲେ ଦେବ, ଆଜ୍ଞା ! ଏଇ ଚମଡ଼ାଟା ପୋଲିସ ସାହେବ ନେବାକୁ କହୁଛନ୍ତି, ମୁଁ ତାଙ୍କୁ ହଁ କହିଦେଇଛି ।

—ଆଚ୍ଛା, ହଉ, ଯା ।

—ତୁମ ମନରେ ଦୁଃଖ ହେଲା କି ଅତସୀ ? ଚିନ୍ତା ନାହିଁ । ମୁଁ କାଲେ ଗୋଟାଏ ବଡ଼ ବାଘ ମାରିବି । ତାଆରି ଚମଡ଼ାକୁ ଟ୍ୟାନିଂ କରି ତୁମକୁ ଦେବି ।

ନାହିଁ ଗୋ ନାହିଁ, ଆମର ଲୋଡ଼ା ନାହିଁ ! ଶୀତରେ ଅରଣ୍ୟ ମଝିରେ ମଞ୍ଚା ଉପରେ ବସି ଏପରି ଜୀବନମୂର୍ଚ୍ଛା କାମ କରିବାକୁ ମୁଁ ତୁମକୁ ଛାଡ଼ିଦେଇପାରିବି ନାହିଁ ।

—କି ଗୋ ଅତସୀ, କଅଣ ହେଲା ଦେଖ, ମାରିଲି, କି ନାହିଁ ! କାମ ବାହାନାରେ ଏଇ ତିନି ସପ୍ତାହ ଭିତରେ ତିନିଥର ତୁମକୁ ଠକିଦେଇ ଚାଲିଯାଇଛି । କି ଶିକାର କେବେ ତୁମକୁ କହିନାହିଁ । ସଙ୍ଗରେ ମୋର ଲୋକବାକ ଥାଆନ୍ତି । ତମର ସେଇ ପାଞ୍ଚସେଲିଆ ଲମ୍ବ ଟର୍ଚ୍ଚଲାଇଟ୍ ପାଖରେ ଥାଏ । ଏଇ ଦୁ' ନଳିଆ ବନ୍ଧୁକ । ଅନ୍ୟମାନେ ବି ବନ୍ଧୁକ ସଙ୍ଗରେ ନେଇଥାଆନ୍ତି ।

ଦୁଇଥର ମୁଁ ଫେଲ ହୋଇଛି । ଗତ ରାତିରେ ପାସ୍ କଲି । ଚମଡ଼ାଟାକୁ ଟ୍ୟାନିଂ କରିବାକୁ ମାନ୍ଦ୍ରାଜ ପଠାଇଦେବା । କମ୍ପାନୀ ନେଉ ପଛେ ଦୁଇଶହ ଟଙ୍କା । ଟ୍ୟାନିଂ ହୋଇ ଆସିଲେ ଦେଖିବ କେମିତି ତୁଳା ପରି ନରମ ଓ ମଖମଲ ପରି ମୋଲାଏମ ହୋଇଥିବ । ଶୀତଦିନେ ଘୋଡ଼ିହେଲେ ମାଲୁଆ ଶୀତ ପାଖେ ପଶିବ ନାହିଁ । ଦେଖୁଛ ତ, ଏଡ଼େ ମୋଟା ରେଜେଇଟା କିପରି ହେମାଳ ହୋଇଯାଉଛି ! ଶୀତରେ ତମେ ଥରୁଛ । ଘୁଞ୍ଚିଆସ ପାଖକୁ । ଆରେ, ଦୂରେଇଯାଉଛ କାହିଁକି ?

—ନା, ମୁଁ ତୁମକୁ କଥା କହିବି ନାହିଁ । ଶୀତରେ ହେଉ କି ଉଷ୍ମରେ ହେଉ, ମୁଁ ଥରିଲି ତ ତମର କି ଯାଏ ? ତମେ କପଟୀ, ତମେ ମିଛୁଆ । ଅଜଯାଏ ମୋତେ ଲୁଚେଇଛ ଯେ ସେଇ ଜୀବନମୂର୍ଚ୍ଛା କାମ କରିବାକୁ ମୋତେ ଘରେ ଏକା ଛାଡ଼ି ତୁମେ ଜଙ୍ଗଲରେ ରାତି କଟାଉଛ । ସତ କଥା କହିଥିଲେ ହୋଇ ନ ଥାନ୍ତା ? ମୁଁ ତୁମକୁ କଥା କହିବି ନାହିଁ । ହେଇଟି, ଆଖି ବୁଜିଛି ।

—ଅନ୍ଧାରରେ ମୋତେ ତୁମେ ଦିଶୁନାହୁଁ, କି ତୁମର ଆଖି ଦିଶୁନାହିଁ । ନରମ ପାଦର ହେମାଳିଆ ପରଶ କେବଳ ଅନୁଭବ କରୁଛୁ । ଝାଳି ନଥିଲା, ନରମ ହେଉ । ଘୁଞ୍ଚି ଆସ ମ, ଶୀତରେ ଥରୁଛ କାହିଁକି ? କଥା ନ କହୁ ପଛେ, ମୁଁ ଯାହା କହୁଛୁ ଶୁଣ ।

ଆମେ ମାଇପିଜାତି, ଡରୁଆ ଅଧିକ୍ଷଣିଆ ଜାତି । ସବୁବେଳେ ତୁମମାନଙ୍କ ଆଗରେ ସବୁକଥା ଆଗରୁ କହିଲେ କାମ ଭଣ୍ଡୁର ହେବ । କାମ ହୋଇସାରିଲେ ତେଣିକି ଯାହା କହିଲେ ଚିନ୍ତା ନାହିଁ । ମିଛ କହିବା ମହାପାପ; କିନ୍ତୁ ଆବଶ୍ୟକସ୍ଥଳେ ତୁମମାନଙ୍କ ଆଗରେ ଅଳ୍ପ ମିଛ କହିବା କି ସତକୁ ଟିକିଏ ମୋଡ଼ାମୋଡ଼ି କରି କହିବା ମୋଟେ ପାପ ନୁହେଁ । ମୋ ରାଣ, ମୁଁ ଯାହା କହୁଛି ଶୁଣ । ମୁଁ ସତ କହୁଛି ଯେ ଯାହା କହିବି ସତ କହିବି, କେବେ ମିଛ କହିବି ନାହିଁ, କିଛି ଲୁଚାଇବି ନାହିଁ ।

—ରାଣ କାହିଁକି ପକାଉଛମ ? ମୁଁ ସିନା ଶୁଣିବି ନାହିଁ ବୋଲି କହୁଛୁ, ମୋ ଦି'କାନ କ'ଣ ବନ୍ଦ କରିଛୁ ? ତୁମ ପ୍ରଭୁଙ୍କ ପାଣିରେ ଗାଧ । ମୋ ଦେହଛୁଇଁ କହ, ଯାହା କହିବ ସତ କହିବ । ମୁଁ ନ ଶୁଣେ ପଛେ, ମୋ କାନରେ ମିଛ ପଶିବ ନାହିଁ ।

—କେମିତି ଦେହ ଛୁଇଁବି ? ତୁମେ ଘୁଞ୍ଚି ଆସୁନା ପାଖକୁ ।

—ହେଲା । କଅଣ କହିବଟି !

—ହଁ, ମନେପଡ଼ିଲା, ଶିକାର କଥା । ପ୍ରଥମ ଥର ମଞ୍ଚା ଉପରେ ସଞ୍ଜରୁ ସକାଳ ଯାଏ ବସି ବସି କଟିଲା । ମୋ ବାଆଁପାଖରେ ଚକ୍ରଧର ବାବୁଆ ବସିଥାଆନ୍ତି । ବୁଢ଼ା ତାଙ୍କ ଜୀବନକାଳରେ ସତସ୍ତରିଟି ବାଘ ଲଛିଲେଣି । ଥରକରୁ ଦୁଇ ଥର ଫାୟାର୍ କରିବା ତାଙ୍କର ଲୋଡ଼ା ହୁଏ ନାହିଁ । ଆଉ ପୁଣି କଅଣ ? ସେ ଗଡ଼ରେ ଶିକାର କରନ୍ତି ନାହିଁ । ଏବେ ବି ମଞ୍ଚା ଉପରେ ଚଢ଼ନ୍ତି ନାହିଁ । ଦିନବେଳା, ଚାଲେ, ମୁହାଁମୁହିଁ ଶିକାର କରିବାକୁ ସେ ପସନ୍ଦ କରନ୍ତି । ପଚାରିଲେ କହନ୍ତି, ବାଘ ଛନ୍ଦି ହୁପିଲା, ମୁଁ ବି ଛନ୍ଦି ହୁ ପିଲା । ଲୁଚି ଲୁଚି ତା'ର ପ୍ରାଣ ନେବି । ଧର୍ମ ନୁହେଁ । ସାମନାସାମନି, ସିଏ ମରୁ ନୋହିଲେ ମୁଁ ମରେ ।

—ଏମିତ କଅଣ କହୁଛ ? ବାଘ ସଙ୍ଗେ ସାମନାସାମନି ଲଢ଼ିବ ? ଏଥର ଆଉ ଗୁରୁଦେବ ଯେ ସେପରି ଦୁଃସାହସିକ କାର୍ଯ୍ୟ କରିବାକୁ ଯିବ ! ଦେଖିବ ରହ ।

—ମୁଁ କ'ଣ ସାଥିଅଧରେ କହୁଣା ଗୁରୁ ବାଘ ଶିକାର କରିବାକୁ ବୁଲଯାଉଛ କି ? ଏପରି ଅଦ୍ଭୁତ ଭାବରେ ବାନ୍ଧ ପକାଉଛ ଯେ ? ଭଲ, ଶୀଘ୍ର ଗୁଣ୍ଡ ପଳାଇବ । ହାତ କୋହଲାଇଲ କାହିଁକି ? ମୁଁ ଚକ୍ରଧରଙ୍କ କଥା କହୁଥିଲି । ସେ ସିନା ଷର୍ଣ୍ଣିସୁପିଲ; ମୁଁ ତ ଷର୍ଣ୍ଣିସୁପିଲ ନୁହେଁ । ଆଉ ସେ କେମିତକା ଷର୍ଣ୍ଣିସୁପିଲ, ଜାଣ ? ତାଙ୍କର ହାତ ହେଲା ତାଙ୍କ ସ୍ତ୍ରୀ, ବାହା ନ ହେଲା ତାଙ୍କ ପ୍ରେୟସୀ ଓ ରକ୍ଷିତାପ୍ରେମୀ କେତେ କେଜାଣି ।

—ହୁ, ଚକ୍ରପଣ ! ବାଘମାମୁଁ ଷର୍ଣ୍ଣିସୁପିଲ । ସେ ପୁଣି ବଣ ପାହାଡ଼ର ରଜା । ତାର ଯେମିତ ଅନେକ ରାଣୀ, ଅନେକ ଘରଣୀ ଥିବେ ତ, ଯେମିତ ଗୋଟିଏ କଳାମୁହାଁ ଯୋଧ ମାଙ୍କଡ଼ର କୋଡ଼ିଏ କି ତିରିଶି ସ୍ତ୍ରୀ ଥାଅନ୍ତି ।

—ନାହିଁ ନାହିଁ, ଆମ ବାଘମାମୁଁର ଗୋଟିଏ ଘରଣୀ । ସେ ଏକପତ୍ନୀବ୍ରତ ପାଳନ କରେ । ମାଈଁ ଆମର ସତୀ-ସାଧ୍ଵୀ । ତା'ର ସୃଷ୍ଟି କରିବାକୁ ମନହେଲେ, ମିଳନର ଋତୁ ଆସିଲେ, ସେ ବୋବାଳି ଛାଡ଼େ । ଅରଣ୍ୟରେ ଧାଏଁ । ପୁରୁଷ ବାଘମାନେ ଆସନ୍ତି । ସବୁଠାରୁ ଯେ ବଳୁଆ ପୁରୁଷ ମାଈଁ ତାକୁ ପସନ୍ଦ କରନ୍ତି । ବାଘରେ ବାଘରେ ଲଢ଼ାଲଢ଼ି । ଜଏ ହାରେ, ସେ ପଳାଏ । ରହିଯାଏ ମହାବଳୁଆ ବାଘୁଣୀ ମାଈଁ ଜାଣ ତାହାର ବେକରେ ସେଇ ବର୍ଷ ପାଇଁ ବରଣମାଳା ଦଏ ।

ଯୋଧ-ମାଙ୍କଡ଼ ସ୍ଵାର୍ଥପର । ସେ ସଜ୍ଜନ ନୁହେଁ, କିନ୍ତୁ ଏକପତ୍ନୀବ୍ରତ ପାଳନ କରେ ନାହିଁ । ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ପାଖେ ପାଖେ ବାର ବରଷ ରହିଲା, ତେବେ ବି ତାର ଶିକ୍ଷା ହେଲା ନାହିଁ । ଚକ୍ରଧର ଆମର ମାଙ୍କଡ଼-ବ୍ରତ ପାଳନ କରନ୍ତି । ଗ୍ରେଟିଆ ମଣିଷ । ବଡ଼ ବଡ଼ ଜଙ୍ଘ । ଦେହରେ ଶକ୍ତି ଖୁବ ହୋଇଛି । ଅତି ସାହସ । ସେ ବସିଲେ ମୋ ବାଆଁ ପାଖରେ । ମଞ୍ଚା ସେତେ ବଡ଼ ନୁହେଁ । ଭଲ ଭାବରେ ବନ୍ଧାହୋଇ ନ ଥିବାରୁ ଟିକିଏ ହଲୁଥାଏ । ଚକ୍ରଧରଙ୍କ ହାତରେ ଲେଟେଡ଼ିଡ଼୍ ବନ୍ଧୁକ, ମୁଁ ଦୁଃଟିଲେ ସେ ଲଢ଼ିବେ ।

କେଜାଣି ପଚାଶ କି ଷାଠିଏ ଜନ୍ମ ନେଇଥିବ । ଅକସ୍ମାତ୍ ଆମର ଗ୍ରାମରେ ଢୁକିଲା । ପଶିଗଲା ଗୁହାଳ ଭିତରେ । ଜାଣିଥିଲା କି ମୋ ବୁଢ଼ୀ-ମା'ଙ୍କୁ ଜଗ ବୋଲି ! ସେ ଘର ଭିତରେ ଅନିଦ୍ରା ହୋଇ ଚେଇଁଛି ? ତାଙ୍କର ବୋବାଳି ଶୁଣି ବୁଢ଼ୀ ଉଠିଲା, ଗନ୍ଧ ବାରିଲା । ସାହସ କରି ଗୁହାଳର କବାଟ ଟାଣି ବାହାରୁ ଶିକୁଳି ଦେଲା, ଡାକ ଛାଡ଼ିଲା ।

'କି ଭୟଙ୍କର ' ଚମଡ଼ା ନଷ୍ଟ କରିଦେଇଛନ୍ତି । ଟେଣ୍ଟା ବର୍ଚ୍ଛାମାଡ଼ରେ ଦେହଯାକ କଣା ମୁଣ୍ଡରେ ଟାଙ୍ଗିଆ ଚୋଟ । ଚମଡ଼ାଟା କାମରେ ଲାଗିବ ନାହିଁ । ସଢ଼ିଗଲାଣି, କି ଦୁର୍ଗନ୍ଧ ! ନେଇଯା, ନେଇଯା ଲାଶଟାକୁ ।

ଅତସୀ ନାକରେ ଲୁଗାଦେଇ ଘର ଭିତରକୁ ପଳାଇଲା । ଗନ୍ଧରେ ପେଟରୁ ଖାଇ ବାହାରିପଡ଼ିବ ।

—ଦେଖ ମା, ଏଇ ବାଘୁଣୀ ଗୁରିଟା ମଣିଷ ଖାଇଛି । ଆହା, ବଡ଼ ସୁକୁମାରୀ ! ସାହସ କମ୍ ନୁହେଁ । ପାହାଡ଼କଡ଼ ବାଟ ପାଖରେ ନାଳକୂଳରେ ଲୁଚି ବସିଥାଏ, ପଛରୁ ଟାଣିନିଏ । ନେଲା ନେଲା କହିଲାବେଳକୁ ସେ ମଣିଷକୁ ଦାନ୍ତରେ ଜାକି ଜଙ୍ଗଲ ବଣରେ ପଶେ । ଅତି କଷ୍ଟରେ ମଡ଼ ଠାବ କଲୁ । ନାଳ ମଝିରେ ମଞ୍ଚାଣ ବାନ୍ଧିଲୁ । ସଞ୍ଜ ଆଗରୁ ଲୁଚି ବସିଲୁ ମଞ୍ଚାଣ ଉପରେ । ପାଖରେ ଆଉ ଜଣେ ବାଣୁଆ ଅବଶ୍ୟ ଥାଏ, ଟର୍ଚ୍ଚ ନ ଥାଏ ।

ଜହ୍ନ ଆଲୁଅ ଝୁପିଝୁପିକା, ଝରଣାକୂଳ । ସଞ୍ଜ ଯେମିତି ହେଲା, ପତ୍ର ଖସ ଖସ କରି ଆସିଲା ତ ' ସାଙ୍ଗରେ ଦୁଇଟା ଛୁଆ । ଗୋଟାଏ ଚୋଟ ଗୁଳିମାଡ଼ରେ ପଟଫଟଟା ଗର୍ଜ୍ଜନ ଛାଡ଼ି ଟଳିପଡ଼ିଲା । ହେଲେ, ଆମର ପ୍ରାଣେ ଡର । ରାତିସାରା ସେଇ ମଞ୍ଚା ଉପରେ କଟାଇଲୁ ମା, କିଏ ଜାଣେ କାଳେ ସେ ଘାଇଲା ହୋଇ ପଡ଼ିଥିବ ' କାଳେ ବାଘଟା କେଉଁଠି ଲୁଚିବସିଥିବ । ତଳକୁ ଓହ୍ଲାଇଲେ ଘାଉଁକରି ମାଡ଼ିବସିବ । ସକାଳ ହେଲା, ତଥାପି ମନରେ ଡର ଥାଏ । ଖରା ପଡ଼ିଲାରୁ ସାହସ ହେଲା, ଓହ୍ଲାଇଲୁ । ଦେଖିଲୁ, ବାଘୁଣୀର ମୁଣ୍ଡର ଏପାଖରେ ଗୁଳିପଶି ସେପାଖେ ବାହାରିଯାଇଛି । ପୂରା ଚମଡ଼ା ହେଲେ ଟ୍ୟାନିଂ କରେଇ ରଖିବାକୁ ଭଲ ହେବ ।

—କରେ, ଦେବୁ ନା ?

—ଅଜ ଗୋଟାଏ ମାରିଲେ ଦେବ, ଅଜା ! ଏଇ ଚମଡ଼ାଟା ପୋଲିସ ସାହେବ ନେବାକୁ କହୁଛନ୍ତି, ମୁଁ ତାଙ୍କୁ ହଁ କହିଦେଇଛି ।

—ଆଚ୍ଛା, ହଉ, ଯା ।

—ତୁମ ମନରେ ଦୁଃଖ ହେଲା କି ଅତସୀ ? ଚିନ୍ତା ନାହିଁ । ମୁଁ ନିଜେ ଗୋଟାଏ ବଡ଼ ବାଘ ମାରିବି । ତା'ଆର ଚମଡ଼ାକୁ ଟ୍ୟାନିଂ କରି ତୁମକୁ ଦେବି ।

ନାହିଁ ଗୋ ନାହିଁ, ଆମର ଲୋଡ଼ା ନାହିଁ । ରାତିରେ ଅରଣ୍ୟ ମଝିରେ ମଞ୍ଚା ଉପରେ ବସି ଏପରି ଜୀବନମୂର୍ଚ୍ଛା କାମ କରିବାକୁ ମୁଁ ତୁମକୁ ଛାଡ଼ିଦେଇପାରିବି ନାହିଁ ।

—କି ଗୋ ଅତସୀ, କଅଣ ହେଲା ଦେଖ, ମାରିଲି, କି ନାହିଁ ! କାମ ବାହାନାରେ ଏଇ ତିନି ସପ୍ତାହ ଭିତରେ କେତେଥର ତୁମକୁ ଠକିଦେଇ ଗୁଳିଯାଇଛି । କି ଶିକାର କେବେ ତୁମକୁ କହିନାହିଁ । ସଙ୍ଗରେ ମୋର ଲୋକବାକ ଥାଆନ୍ତି । ତମର ସେଇ ପାଞ୍ଚସେଲିଆ ଲମ୍ବ ଟର୍ଚ୍ଚଲାଇଟ୍ ପାଖରେ ଥାଏ । ଏଇ ଦୁ'ନଳିଆ ବନ୍ଧୁକ । ଅନ୍ୟମାନେ ବି ବନ୍ଧୁକ ସଙ୍ଗରେ ନେଇଥାଆନ୍ତି ।

ଦୁଇଥର ମୁଁ ଫେଲ ହୋଇଛି । ଗତ ରାତିରେ ପାସ୍ କଲି । ଚମଡ଼ାଟାକୁ ଟ୍ୟାନିଂ କରିବାକୁ ମାଡ୍ରାସ ପଠାଇଦେବା । କମ୍ପାନୀ ନେବ ପଛେ ଦୁଇଶହ ଟଙ୍କା । ଟ୍ୟାନିଂ ହୋଇ ଆସିଲେ ଦେଖିବ କେମିତି ତୁଳା ପରି ନରମ ଓ ମଖମଲ ପରି ମୁଲାଏମ ହୋଇଥିବ । ଶୀତଦିନେ ଘୋଡ଼ିହେଲେ ମାଳୁଆ ଶୀତ ପାଖେ ପଶିବ ନାହିଁ । ଦେଖୁଛ ତ, ଏଡ଼େ ମୋଟା ରେଜେଇଟା କିପରି ହେମାଳ ହୋଇଯାଉଛି ! ଶୀତରେ ତମେ ଥରୁଛ । ଘୁଞ୍ଚିଆସ ପାଖକୁ । ଆରେ, ଦୂରେଇଯାଉଛ କାହିଁକି ?

—ନା, ମୁଁ ତୁମକୁ କଥା କହିବି ନାହିଁ । ଶୀତରେ ହେଉ କି ଭୟରେ ହେଉ, ମୁଁ ଥରିଲି ତ ତମର କି ଯାଏ ? ତମେ କପଟୀ, ତମେ ମିଛୁଆ । ଅଜାଯାଏ ମୋତେ ଲୁଚେଇଛ ଯେ ସେଇ ଜୀବନମୂର୍ଚ୍ଛା କାମ କରିବାକୁ ମୋତେ ଘରେ ଏକା ଛାଡ଼ି ତୁମେ ଜଙ୍ଗଲରେ ରାତି କଟାଉଚ । ସତ କଥା କହିଥିଲେ ହୋଇ ନ ଥାନ୍ତା ? ମୁଁ ତୁମକୁ କଥା କହିବି ନାହିଁ । ହେଇଟି, ଆଖି ବୁଜିଛି ।

—ଅନ୍ଧାରରେ ମୋତେ ତୁମେ ଦେଖୁନାହଁ, କି ତୁମର ଆଖି ଦେଖୁନାହିଁ । ତମ ପାଦର ଦେମାଳିଆ ପଗଣ କେବଳ ଅନୁଭବ କରୁଛ । ଜାଣି ନଥିନା, ଗରମ ହେଉଛ । ଘୁଞ୍ଚି ଆସ ମ, ଶୀତରେ ଥରୁଛ କାହିଁକି ? କଥା ନ କହ ପଛେ, ମୁଁ ଯାହା କହୁଛି ଶୁଣ ।

ତମେ ମାଇପିଜାତି, ଡରୁଆ ଅଇଁଠୁଣିଆ ଜାତି । ସବୁବେଳେ ତୁମମାନଙ୍କ ଆଗରେ ସବୁକଥା ଆଗରୁ କହିଲେ କାମ ଭଣ୍ଡୁର ହେବ । କାମ ହୋଇସାରିଲେ ତେଣିକି ଯାହା କହିଲେ ଚିନ୍ତା ନାହିଁ । ମିଛ କହିବା ମହାପାପ; କିନ୍ତୁ ଆବଶ୍ୟକସ୍ଥଳେ ତୁମମାନଙ୍କ ଆଗରେ ଅଳ୍ପ ମିଛ କହିବା କି ସତକୁ ଟିକିଏ ମୋଡ଼ାମୋଡ଼ି କରି କହିବା ମୋଟେ ପାପ ନୁହେଁ । ମୋ ରାଣ, ମୁଁ ଯାହା କହୁଛି ଶୁଣ । ମୁଁ ସତ କହୁଛି ଯେ ଯାହା କହିବି ସତ କହିବି, କେବେ ମିଛ କହିବି ନାହିଁ, କିଛି ଛପାଇବି ନାହିଁ ।

—ରାଣ କାହିଁକି ପକାଉଛମ ? ମୁଁ ପରା ଶୁଣିବି ନାହିଁ ବୋଲି କହୁଛି, ମୋ ଦି' କାନ କ'ଣ ବନ୍ଦ କରିଛି ? ତୁମ ପ୍ରତିଜ୍ଞା ପାଣିରେ ଗାର । ମୋ ଦେହକୁ ଛୁଇଁ କହ, ଯାହା କହିବ ସତ କହିବ । ମୁଁ ନ ଶୁଣେ ପଛେ, ମୋ କାନରେ ମିଛ ପଶିବ ନାହିଁ ।

—କେମିତି ସତ ଛୁଇଁବି ? ତୁମେ ଘୁଞ୍ଚି ଆସୁନା ପାଖକୁ ।

—ହେଲା । କଅଣ କହିବଟି !

—ହଁ, ମନେପଡ଼ିଲା, ଶିକାର କଥା । ପ୍ରଥମ ଥର ମଞ୍ଚା ଉପରେ ସଞ୍ଜରୁ ସକାଳ ଯାଏ ବସି ବସି କଟିଲି । ମୋ ବାଆଁ ପାଖରେ ଚକ୍ରଧର ବାଣୁଆ ବସିଥାଆନ୍ତି । ବୁଢ଼ା ତାଙ୍କ ଜୀବନକାଳରେ ସତସ୍ତରିଟି ବାଘ ମାରିଲେଣି । ଥରକରୁ ଦୁଇ ଥର ଫାୟାର୍ କରିବା ତାଙ୍କର ଲୋଡ଼ା ହୁଏ ନାହିଁ । ଆଉ ପୁଣି କଅଣ ? ସେ ରାତିରେ ଶିକାର କରନ୍ତି ନାହିଁ । ଏବେ ବି ମଞ୍ଚା ଉପରେ ଚଢ଼ନ୍ତି ନାହିଁ । ଦିନବେଳା, ତଳେ, ମୁହାଁମୁହିଁ ଶିକାର କରିବାକୁ ସେ ପସନ୍ଦ କରନ୍ତି । ପଚାରିଲେ କହନ୍ତି, ବାଘ ସର୍ତ୍ତ ଦେଇଥିଲା, ମୁଁ ବି ସର୍ତ୍ତ ଦେଇଥିଲି । ଲୁଚି ଲୁଚି ତା'ର ପ୍ରାଣ ନେବି । ଧର୍ମ ନୁହେଁ । ସାମନାସାମନି, ସିଏ ମରୁ ନୋହିଲେ ମୁଁ ମରେ ।

—ଏମିତି କଥା କହୁଛ ? ବାଘ ସଙ୍ଗେ ସାମନାସାମନି ଲଢ଼ିବ ? ଏଥର ଆଉ ଗୁରୁଦେବ ସେ ସେପରି ଦୁଃସାହସିକ କାର୍ଯ୍ୟ କରିବାକୁ ଯିବ ! ଦେଖିବ ରହ ।

—ମୁଁ କ'ଣ ଗଡ଼ଅଧରେ ନିଛଣା ଗୁଣ୍ଡ ବାଘ ଶିକାର କରିବାକୁ ସ୍ଥଳଯାଉଛି କି ? ଏପରି ନିର୍ବୋଧ ଭାବରେ ବାନ୍ଧି ପକାଉଛ ଯେ ? ଭଲ, ଶୀଘ୍ର ଗୁଣ୍ଡ ପଳାଇବ । ହାତ ଜୋଡ଼ିଲାଇଲ କାହିଁକି ? ମୁଁ ଗଦାଧରଙ୍କ କଥା କହୁଥିଲି । ସେ ଯିବା ଷର୍ଣ୍ଣି ସ୍ପୃପିଲ; ମୁଁ ତ ଷର୍ଣ୍ଣି ସ୍ପୃପିଲି ନାହିଁ । ଆଜ ସେ କେମିତିକା ଷର୍ଣ୍ଣି ସ୍ପୃପିଲ, ଜାଣ ? ତାଙ୍କର ହାହା ହେଲେ ତିନି ସ୍ତ୍ରୀ, ହାହା ନ ହେଲେ ତିନି ସ୍ତ୍ରୀସ୍ତ୍ରୀ ଓ ରକ୍ଷିତାହେଲେ କେତେ କେଜାଣି ।

—ହଁ, ଚନ୍ଦ୍ରପଣା ! ବାଘମାମୁଁ ଷର୍ଣ୍ଣି ସ୍ପୃପିଲ । ସେ ପୃଥ୍ୱୀ ବଣ ପାହାଡ଼ର ରଜା । ତାର ଯେମିତି ଅନେକ ଗୁଣୀ, ଅନେକ ଘରଣୀ ଥିବେ ତ, ଯେମିତି ଗୋଟିଏ କଳାମୁହାଁ ଗେଧ ମାଙ୍କଡ଼ର କୋଡ଼ିଏ କ ଢରଣି ସ୍ତ୍ରୀ ଥାଆନ୍ତି ।

—ନାହିଁ ନାହିଁ, ଆମ ବାଘମାମୁଁର ଗୋଟିଏ ଘରଣୀ । ସେ ଏକପତ୍ନୀବ୍ରତ ପାଳନ କରେ । ମାଈ ଆମର ସତୀ-ସାଧ୍ୱୀ । ତା'ର ସୃଷ୍ଟି କରିବାକୁ ମନହେଲେ, ମିଳନର ଋତୁ ଆସିଲେ, ସେ ନୋବାଳ ଛାଡ଼େ । ଅରଣ୍ୟରେ ଧାଏଁ । ପୁରୁଷ ବାଘମାନେ ଆସନ୍ତି । ସବୁଠାରୁ ଯେ ବଳୁଆ ପୁରୁଷ ମାଈ ତାକୁ ପସନ୍ଦ କରନ୍ତି । ବାଘରେ ବାଘରେ ଲଢ଼ାଲଢ଼ି । ଜିଏ ହାରେ, ସେ ପଳାଏ । ରହିଯାଏ ମହାବଳୁଆ ବାଘୁଣୀ ମାଈ ଜାଣ ତାହାର ବେକରେ ସେଇ ବର୍ଷ ପାଇଁ ବରଣମାଳା ଦିଏ ।

ଗେଧ-ମାଙ୍କଡ଼ ସ୍ୱାର୍ଥପର । ସେ ସଜାତି ସ୍ପୃହେଁ, କିନ୍ତୁ ଏକପତ୍ନୀବ୍ରତ ପାଳନ କରେ ନାହିଁ । ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ପାଖେ ପାଖେ ତାର ବରଷ ରହିଲା, ତେବେ ବି ତାର ଶିକ୍ଷା ହେଲା ନାହିଁ । ଗଦାଧର ଆମର ମାଙ୍କଡ଼-ବ୍ରତ ପାଳନ କରନ୍ତି । ଲେଙ୍ଗିଟିଆ ମଣିଷ । ବଡ଼ ବଡ଼ ନାଗ । ଦେହରେ ଶକ୍ତି ଖୁବ ହୋଇଛି । ଅତି ସାହସ । ସେ ବସିଲେ ମୋ ବାଆଁ ପାଖରେ । ମଝା ସେତେ ବଡ଼ ନୁହେଁ । ଭଲ ଭାବରେ ବନ୍ଧାହୋଇ ନ ଥିବାରୁ ଟିକିଏ ହଲୁଥାଏ । ଗଦାଧରଙ୍କ ହାତରେ ଲେଫେଡ଼ ବନ୍ଧୁକ, ମୁଁ ହଟିଲେ ସେ ଲଢ଼ିବେ ।

—ମଞ୍ଚା ଉପରେ କେବଳ ତୁମେ ବସୁଁ ଥିଲ ?

—ନା, ମୋ ସହିତରେ ଫରେଷ୍ଟର ଦଶରଥ ବସିଥିଲେ । ସେ ଧରିଥିଲେ ଗୋଟାଏ ବଡ଼ ଟାର୍ଚ୍ଚି ଆ ।

—ଟାର୍ଚ୍ଚି ଆ କଅଣ ହେବ ?

—ବାଘ ଦେହରେ ଗୁଳି ଲାଗିଲେ ଯଦି ସେ ନ ମରି କେବଳ ଆହତ ହୁଏ, ତେବେ ସେ ମଞ୍ଚା ପାଖକୁ ଧାଏଁ । ଉପରକୁ ଉଠୁକି ଆସି ଶିକାରୀଙ୍କୁ ଧରିବାକୁ ଚେଷ୍ଟା କରେ । ସେତିକବେଳେ ଫରେଷ୍ଟର ତା ମୁଣ୍ଡରେ ଗୁଳି ମାରିବେ ବୋଲି ଟାର୍ଚ୍ଚି ଆ ନେଇଥିଲେ । ତାଙ୍କ ମୁଣ୍ଡରୁ ସେ ବୁଦ୍ଧି କାଢ଼ିଥିଲେ । ଉଜନ [illegible] ଯାଇଥିଲୁ ବୋଲି କ ଜଅଣ ସେ ଥର ହତାଶ ହୋଇ ଫେରିଲୁ । ବାଘ ଆମର ସୁରାକ ପାଇଲା । ଅଚ ଚଳଖ ସେ, କେଉଁଠି ପଥ ଟିକଏ ଖୁଡ଼୍ କାଳ ହେଲେ କାଣ ଜ ମଶାହୁରୁଡ଼ା ଲୁପଡ଼ାର ଶବ୍ଦ କାନରେ ପଡ଼ିଲେ, ନଜେ ମାରି ପକାଇଥିବା ମଡ଼ା ପାଖକୁ ନ ଆସେ ତ । ଜଙ୍ଗଲ ଭିତରେ ଏପାଖ ସେପାଖ ହେଉଥାଏ ।

ଯେତେ ମନା କଲେ ବି ଫରେଷ୍ଟର ହାଇ ମାରିଲେ, କାଶିଲେ । ମଶା ହୁରୁଡ଼େଇବାକୁ ଚାପୁଡ଼ା ମାରିଲେ । ସରିଗଲା କଥା, ବାଘ ମଡ଼ା ପାଖକୁ ଆସିଲା ନାହିଁ । ଘୋର ଅନ୍ଧାର ରାତିରେ ମଶାବଣ ଭିତରେ ବସି ବସି ରାତିପାହିଲା । ମଶ କାମୁଡ଼ା, ଅଣ୍ଟାବିନ୍ଧା, ଜାଗିକରି ତ ରାତି ଅନିଦ୍ରା, ଶୀତୁଆ ରାତିର କାକର···

—ଏବେ ବୁଝିଲ, ସେଇଥିପାଇଁ ସେଥର ତୁମକୁ ଶର୍ଦ୍ଦିଜର ହେଲା । ତ' ଦିନ ବିଛଣାରେ ପଡ଼ିଲ । ମୋତେ ବି' ରାତି ଅନିଦ୍ରା ରଖେଇଲ । ବହୁ ଟିକଏ ଇପ୍ କରି ହେଲେ ପିଲାଙ୍କ ପରି ହୁଅ । ମାଆଙ୍କ ପାଖରୁ ଦୂରରେ ରହି ପାଠ କେମିତି ପଢ଼ୁଥିଲ ? ସ୍କୁଲକୁ କରି ଏକା କେମିତି ଏତେ ବର୍ଷ କଟେଇଲ ? ଖାଲ ନରମ ଦେହକୁ କୋଳେଇ ଶୋଇ ଛାତିରେ ମୁହଁଗୁଞ୍ଜି ଶୋଇବାକୁ ଚାହଁ ତ, ନିଜ ଦେହର ତାତିକୁ ମୋ ଦେହକୁ ଠେଲିଦେବାକୁ ଚାହଁ ! ପାଖରୁ ଘୁଞ୍ଚିଗଲେ ନିଦ ଲାଗେ, ଛଟପଟ ହୁଅ । ହାତ ଅଣ୍ଡାଳ, ପାଟିକରି, ବୋଉ ଲୋ, ବୋଉ ଲୋ ! ଛୁଡ଼ା ପୁଅକୁ କୋଳରେ ଜାକି ଧୂଆ ବାଇସ୍ଥା ଧୂଆ କରିବାକୁ ରାତିଅଧରେ ଶହେ କୋଶ ଦୂରରୁ ତମ ବୋଉ ଧାଇଁଆସୁଥିଲେ କି ?

—ତମେ ବିଶ୍ବାସ କର ଅତସୀ, ସତେ ମୋ ବୋଉ ଯେତେ ଦୂରରେ ଥିଲେ ବି, ଯେତେ ଦୁର୍ଗମ ପଥ, ଦୁଃସାଧ୍ୟ ପଥ ହେଲେ ବି ସେ ଧାଇଁଆସୁଥିଲେ । ରୋଗ-ବଇରାଗରେ ଛଟପଟ ହୋଇ ଏକୁଟିଆ ଜୀବନରେ ଯେତେବେଳେ ମୁଁ ମୋ ବୋଉକୁ ଡାକ ଛାଡ଼େ, ସେ ସଙ୍ଗେ ସଙ୍ଗେ ଆସେ । ମୁଁ ସାତବର୍ଷର ପିଲା ହୋଇଯାଏ । ଝୁଟ୍‌କରି ତା କୋଳରେ ଶୋଇପଡ଼େ । ତା ଥନ ମୋ ପାଟିରେ ଥାଏ । ମୁଁ ଚୁରୁମୁରୁ ଓ ଅମୃତ ଶୋଷେ । ରାତି ପାହିଲେ, ନିଦ ଭାଙ୍ଗିଲେ ଦେଖେ, ସେ ଫେରିଗଲାଣି ଘରକୁ । ଅଜାଡ଼ି ଦେଇଛି ବୋଉ'ର ସ୍ନେହ ।

ଅତସୀ ଶୁଣି ରହିଲା । ଭାବିଲା, କେଉଁ ମା କେଉଁ ପ୍ରକାର । ସବୁ ମାଆଙ୍କର ନିଜ ପିଲାଙ୍କଠେଇଁ ସ୍ନେହଶ୍ରଦ୍ଧା ଥାଏ, ତେବେ କିଏ କେମିତି ଚଳାଏ । ଅତସୀ ମୁହଁ ଖୋଲିଲା, ମୋ ବୋଉର ବାହାର ଦେଖାଣ ସ୍ନେହ ନାହିଁ । କାହା ଦେହ ବେମାର ହେଲେ ତା ପାଇଁ ସେ ଅଲଗା ବିଛଣା କରେ । ରୋଗୀକୁ କେହି ଛୁଇଁଲେ, କେବଳ ଉଲେ, ସେ ନାଲିଆଖି ଦେଖାଏ । କହେ, ତାକୁ ଶାନ୍ତିରେ ଶୋଇବାକୁ ଦେ । ବୋଉ ମୋର ରୋଗୀ ପାଖରେ ରାତିରେ ଜଗି ବସିଥାଏ । ଆଖି ଖୋଲିଲେ ଦେଖେ ତା ହସହସ ମୁହଁ । ବ୍ୟସ୍ତ ହେଲେ କି କାନ୍ଦିଲେ ମୁହଁ ଆଉଁସି କହେ, କଅଣ ହୋଇଛି କି କାନ୍ଦୁଛୁ ? ସମସ୍ତଙ୍କର ଦେହ ଏମିତି ଖରାପ ହୁଏ, ପୁଣି ଭଲ ହୋଇଯାଏ । ଶୋଇପଡ଼, ପୁନା ହୋଇଛି !

—ବୁଝିଲି, ସେଇଥିପାଇଁ ତମ ତାଛଲ୍ୟ କରୁଥିଲା ଦେହରେ ହାତ ଦେଲେ ତମେ ବିରକ୍ତ ହୁଅ ସବୁ !

—ଖାଲି ହାତ ଦିଅ, ନା ? ଗ୍ରେପସବୁ । କହ ମ ତମର ଶିକାର ଗପ, ସାହସପଣ । ହାତଟା ତକିଆ ଉପରେ ରଖୁ ନ, ଝଳଚଳ କରୁଛ କାହିଁକି ?

— ଗପ ନୁହେଁ ଗୋ, ସତ କଥା ।

ଅନ୍ୟ ଜୀବନର ଅଙ୍ଗେ ନିଭାଇଲା ଘଟଣା ଆଉ କେହି ଶୁଣିଲେ ତାକୁ ଗଳ୍ପ ଉପନ୍ୟାସ, କାବ୍ୟ-କବିତା ପରି ଲାଗେ । ମନ ହେଲେ ସେ ସତରେ ଶୁଣେ, ନ ହେଲେ କାନଟି ବଢ଼ାଇଦେଇ ନିଜ ଜୀବନରେ କେଉଁ ଘଟିଲା ଘଟଣାର କଥା

ଘଟୁଥାଏ । ଏଣେ ତୁଣ୍ଡରେ କହୁଥାଏ ହୁଁ, ହୁଁ ଚୁପି ପଳାଇବାକୁ ବାଗ ଉଣ୍ଡୁଥାଏ । ଉଠିବାକୁ ବାଧ୍ୟ ହେଲେ ଓଠରେ ନଳଠା ହସ ଦେଖାଏ । ମନରେ ଅନ୍ୟ ଭାବନା, ଦେହ ଉଠେ ନାହିଁ, ପଳାଇବାର ଆଗ୍ରହ ଖାଲି ଉଠ୍‌ବସ୍ କରୁଥାଏ । ଉଃ, କେବେ ସରିବ ସ୍ୱାଙ୍କର କଥା, ନିସ୍ତାର ମିଳିବ । ଆରେ, ସେ ତ କଥା ଲମ୍ବାଇଲେଣି !

—ତୁମେ ରଗିଲ କି ?

—ନାହିଁ ମ, ମୁଁ ମନ କାନଦେଇ ଶୁଣୁଛି. ଅନୁଭବ କରୁଛି, ଯେତେ କି ମୁଁ ମଧ୍ୟ ସେଇ ମଞ୍ଚା ଉପରେ ବସି ରାତ କଟାଇଦେଲି । ଅନୁମାନ କରୁଛି, ସେଇ ଅରଣ୍ୟ ମଝିରେ, ଅନ୍ଧାର ବଳବଳ ଶୀତୁଆ ରାତିରେ, ଏକ ଅବସ୍ଥାରେ ବସି କପଣ୍ଡ ଛଟପଟ ହେଉଥିଲା । ମନ ଉଚ୍ଚାଟ । ଆଖି କାନ ସଚେତ । ଏଣେ ମଶା ଗୁଡ଼ା ଭଉଁଭଉଁ ହୋଇ ମୁହଁରେ ହାତରେ ଜଗିଯାଉଛନ୍ତି !

—ଠିକ ପନ୍ଦର ଦିନ ପରେ, ବଡ଼ଦ ରାସ୍ତାରେ, ରାଣୀପଥର ଘାଟି ସେଇଠୁ ଆରମ୍ଭ ହେଲା. ତୁମେ ଦେଖିଛ ନା, ତା’ଅଣ ପାଖରୁ ଖଣ୍ଡେ ଦୂର ପାହାଡ଼ ଗଡ଼ ଶି ତଳେ ଆଉ ଗୋଟାଏ ମଣିଷଖିଆ ବାଘ ମଚ୍ଚା ପକାଇଲୁ । ପୁଡ଼ାଟାଏ ଟାଣି ନେଇଥିଲା । ମଞ୍ଚା ଉପରେ ମୁଁ ଓ ଚନ୍ଦଧର । ସେତେ ଅନ୍ଧାରୁଆ ହୋଇ ନ ଥାଏ । ବାଦଲ ଥିଲେ ବି ଆକାଶ ଗ୍ରାଉଡରେ ଜନପା ଜହ୍ନ ବାଦଲ ତଳୁ ମହ୍ଲ ଦିଶୁଥାଏ । ରାତିଅଧକୁ ସେ ଆସିଲା । ଏକାଥରେ କର୍ଣ୍ଣିକ । ମଚ୍ଚା ପାଖରେ ବସି ଏଣିକି ତେଣିକି ହେଲା । ପଟେଟ ଫଟା ଘଡ଼ଘଡ଼ି ପରି ଗୁଡ଼ିଲା ଗୋଟାଏ ରଡ଼ି । ଦେହ ଫୁଲାଇ କି ଭୟଙ୍କର ଦିଶୁଥାଏ !

—ଦେଖିଛୁ, ଦେଖିଛୁ ··

—କେଉଁଠି ଦେଖିଛ ? ଶୁଣୁ ଶୁଣୁ ତ ଭୟରେ ତୁମେ ପାଣି ହୋଇଗଲଣି । ଗୋଟାଛୁଏଁ ଥରୁଛ, ହାତ ହୁଗୁଳା ଆସୁଛି । ପୁଷ୍ଟିଆ ପାଖକୁ, ଉରଛାଡ଼ିଯିବ । କହ ।

—ଦେଖିଛୁ ଯେ, ବାଘ ନୁହେଁ, ତା ମାଉସୀ, ଆମ ଛଉକ ବଳେଇ । ଆମ ଗାଆଁରେ । ଧଳା ଦେହରେ ତାର ପଟି ପଟିକା କଳା ଦାଗ । ଠିକ ଛୁଅଟିଏ ହୋଇଥିଲା; ମୁଁ ତା’କୁ ଆମ ପଡ଼ୋଶୀ ଘରୁ ବେଢ଼ିବଇ ଆଣିଥିଲି । ଛଅ ମ ସ ହେଲାରୁ

କେଡ଼େ ବଡ଼ଟାଏ ହୋଇଗଲା । ଅତି ଶାନ୍ତ । କୋଳରେ ପଶି ଘୁଡ଼ୁଘୁଡ଼ୁ ହୁଏ । କାନ ମୋଡ଼, ଲାଙ୍ଗୁଡ଼ା ମାର, କିଛି କହେ ନାହିଁ । ତା ପାଟିରେ ଆଙ୍ଗୁଠି ଦେଲେ ଛୁଆଟେ ତା ଦାନ୍ତରେ ଧୀରେ ଧୀରେ କାମୁଡ଼େ ।

ଛୁଆଟାଏ ତ, ସେତେବେଳେ ମୂଷାଟାଏ ହାବୁଡ଼ିଯାଏ, ବିଜୁଳି ବେଗରେ ଛୁଟିଯାଇ ଧରେ । ଦେଖ ତାର ନାଟ ! ଦେହ ଫୁଲାଇ ଅତି ଭୟଙ୍କର ଦିଶେ । ଦରମରା ମୂଷାକୁ ହାତରେ ଖେଳାଏ । ଏଣେତେଣେ ପକାଏ । ଦୂରକୁ ଆସି ଟିକାଏ ଲୁଚିଗଲେ । ପୁଣି ଧାଇଁଯାଇ ପାଟିରେ ଧରେ । କୁଣ୍ଡି ଦିଏ, ଝୁଣ୍ଟାଡ଼ି ଦିଏ । ଦୁଇ ହାତରେ ଧରି ପଛଗୋଡ଼ରେ ଠିଆ ହୋଇ ନଚେ । ପୁଣି ମଲା ମୂଷାକୁ ଫୋପାଡ଼େ । କୋଣରେ ବସି ଲୁଚିରହେ । ଧାଇଁଯାଇ ମାଡ଼ିବସେ । କି ଭୟଙ୍କର !

ଅସିତ ହସିଲା । ଅତସୀର ପିଠି ଆଉଁସି ଗେହ୍ଲେଇ କହିଲା, ବିଲେଇର ମୂଷା ଶିକାର ଦେଖି ତୁମେ କାନ୍ଦୁଛ, ବାଘର ସେତେବେଳର ରୂପ ଓ ଢଙ୍ଗ ଦେଖିଲେ ମାଞ୍ଚା ଉପରେ ମୂର୍ଚ୍ଛା ହୋଇପଡ଼ନ୍ତ । ହାର୍ଟଫେଲ କରିବା ଅସମ୍ଭବ ନୁହେଁ । କେତେ ମୂର୍ଚ୍ଛା ହୋଇ ପଡ଼ନ୍ତି । କେତେ ହଗି ମୁତି ପକାନ୍ତି । ସେଇ ଦ୍ୱିତୀୟ ଅଭିଯାନରେ ମୋର ବି ସେପରି ହୋଇଆସୁଥିଲା ।

— ଏଁ, ମୂର୍ଚ୍ଛା ?

— ଠିକ୍ ମୂର୍ଚ୍ଛା ନୁହେଁ, ସେଇପରିକା, ଅତସୀ ! ସେତେବେଳର ଅନୁଭୂତି ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । ଦେହହାତ ଥରଉଠିଲା । ପ୍ରାଣ ଛାଡ଼ିଗଲା ପରି ଲାଗିଲା । ବନ୍ଧୁକ ଉପରେ ହାତଟା ଅଚଳ ହୋଇ ଜୀବନ ନ ଥିଲା ପରି ରହିଥାଏ । ଚକ୍ରଧର କିଛି ସମୟ ଅପେକ୍ଷା କଲେ । ବାଘ ସେ ମଡ଼ାଟାକୁ ଏପାଖ ସେପାଖ ଟଣାଓଟରା କରୁଛି, ପୁଳାଏ ପୁଳାଏ ଖାଉଛି । ବନ୍ଧୁକ ଟେକି ଲକ୍ଷ୍ୟ କରି ଥରେ ଫାୟାର କଲେ ଟଳିପଡ଼ିବ ।

ଚକ୍ରଧର ଅପେକ୍ଷା କଲେ । ଭାବିଲେ, ମୁଁ ସେଇଆ କରିବି । ମୋର ତ ହାତଚଳୁ ନାହିଁ, ମୁଁ କଅଣ କରିବି ? ସେ ଆଉ ଅପେକ୍ଷା କଲେ ନାହିଁ । ମୋର ଅବସ୍ଥା ସେ ଅନୁମାନ କଲେ । ବାଘକୁ ଲକ୍ଷ୍ୟ କରି ଘୋଡ଼ା ଟିପିଲେ । ଢୁ-ଉ । ବାଘ ଓଲଟି ପଡ଼ିଲା । ଦ୍ୱିତୀୟ ଗୁଳି ଫୁଟାଇବା ଆବଶ୍ୟକ ପଡ଼ିନାହିଁ । ଗୁଳି ବାଘର ତାଳୁକଣା କରି ଆର ପାଖେ ବାହାରିଯାଇଛି ।

—ଚନ୍ଦ୍ରଧର ପଚାରିଲେ, ଆପଣ ଡରିଲେ ନାହିଁକି ?

—ମୁଁ ଉତ୍ତର ଦେଲି, ଡରନାହିଁ ଯେ ହାତ ଚଳିଲା ନାହିଁ ।

—କେଡ଼େ ବୀର ତୁମେ ? ଡରୁଆ ଲୋକ, ଏପରି ଦୁଃସାହସିକ କାର୍ଯ୍ୟ କରିବାକୁ ମନ କର କାହିଁକି ? ଚନ୍ଦ୍ରଧରବାବୁଙ୍କ ପାଖରୁ ଆଣିଥିବା ଚମଡ଼ାଟା ବହୁଦଗଡ଼ରେ ଟ୍ୟାନିଂ କରାଇଲି, ସେତେ ଭଲ ହେଲା ନାହିଁ । ହେଲେ କଅଣ ର୍ୟାକ୍‌ରେ ଝୁଲାଇ ଦେଇଛୁ । ଯାହା ହେଉ, ଆଉ ଦିନେ ରାତିଅଧରେ ବାଘ ଶିକାର କରିବାକୁ ବଣରେ ପଶିବ ନାହିଁ ।

ପଶିଲି ପୁଣି ତୃତୀୟ ଥର । ଡର ଭାଙ୍ଗି ଯାଇଥିଲା । ଉଦୟଗିରି ରାସ୍ତାରୁ ବାଁ ଆଡ଼କୁ ଯେଉଁ ବନମାର୍ଗ ଯାଇଛି, ତିନି ମାଇଲ ଗଲେ ସେଇ ରାସ୍ତାରେ । ଚନ୍ଦ୍ରଧର ବି ଥିଲେ ମୋ ସାଙ୍ଗରେ । ବାଘ ଆସି ମଠ ଉପରେ ବସି ଚାରିଆଡ଼କୁ ଚାହୁଁଥିଲା । ବନ୍ଧୁକ ଉଠାଇ ଫାୟାର କଲି । ସେ ଟଳିପଡ଼ିଲା । ତାହାରି ଚମଡ଼ାକୁ ତୁଳା ପରି ନରମ କରାଇ ଟ୍ୟାନିଂ କରାହୋଇଛି । କେତେ ଯତ୍ନରେ ସାଇତି ରଖିଛୁ ଟ୍ରଙ୍କ ଭିତରେ ।

—ଦେହରେ ପକାଇବାକୁ ମୋତେ ଭଲ ଲାଗେ ।

—ସେଇଥିପାଇଁ ଲୁଚାଇ ରଖିଛ ? ତେବେ ର୍ୟାକ୍ ଉପରେ ତ ଗୋଟାଏ ପଡ଼ିଛି, ଭୂତପ୍ରେତ ପାଖରେ ପଶିବେ ନାହିଁ । ବାଘଚମକୁ ସେମାନଙ୍କର ଡର । ସେଇଥିପାଇଁ ଆମେ ଏ ଘରେ ରହିଲା ଦିନରୁ ସାହେବାଣୀର ପ୍ରେତ ଓ ତାଙ୍କ ଖାନସମାର ଭୂତ ଏଇ କୋଠି ଭିତରକୁ ପଶିପାରନ୍ତି ନାହିଁ । ଆମ ହତାକୁ ଲାଗି ଯେଉଁ ଷ୍ଟୋରଘର, ସେଇଠି ଗଛ ଗହଳି ଭିତରେ, ଏପାଖୁ ସେପାଖ ସେପାଖୁ ଏପାଖ ହେଉଥାଆନ୍ତି । ଅନ୍ଧାର ଭିତରେ, ରାତିଅଧରେ ସେଇ ଗଛ ଗହଳି ମଝିରେ, ଧୋବ ଫରଫର୍ ଜାମା ପିନ୍ଧି, ମୁଣ୍ଡରେ କଳା ଟୋପି ଲଗାଇ, ଗୋଡ଼ରେ ହାଇହିଲ୍ ଜୋତା ମଡ଼ାଇ, ମେମ୍ ସାହେବ ଟହଲ ମାରେ । ଡ୍ରେସ୍ ପିନ୍ଧି, ମୁଣ୍ଡରେ ଧଳା ଟୋପି ବନ୍ଧେଇ କରି ନାଇ ଦାଢ଼ିଆ ଖାନ୍‌ସାମା, ଟୋକାଟାଏ ସେ ଅତଯା, ଗୋରା ତକତକ ଆଙ୍ଗ୍ଲୋଇଣ୍ଡିଆନ ପରି ଦିଶେ, ଚଳନ ବଳନ ଦେହହାତ, ବଳୁଆ ସାହାସିଆ ଟୋକା, ମେମ୍ ସାହେବଙ୍କୁ ଖାଲି ସଲାମ୍ କରୁଥାଏ । ମେମ କେବେ ଯାଚିକରି ହସେ, କେବେ ପୁଣି କାନ୍ଦେ ।

—ମୋତେ ଡର ମାଡ଼ୁଛି । ଆଲୁଅଟା ଜଳାଇଦିଅ ।

—ପାଖରେ ବାଘ ଚମଡ଼ା ଅଛି, କାନ୍ଥକୁ ଲୁହାବନ୍ଧୁକ ଡେରା ହୋଇଛି, ସେମାନେ ଏଠିକି ଆସିବେ ନାହିଁ ।

—ତଥାପି ଡର ମାଡ଼ୁଛି ଗୋ !

—ମୋ ପାଖରେ ଥିଲେ କି ଡର ? ବଣର ଜୀବଜନ୍ତୁଙ୍କ ପରି ଏଇ ଭୂତପ୍ରେତ ଡାଆଣୀ-ଚିରଗୁଣୀମାନେ ମୋ ପାଖକୁ ଆସିବାକୁ ପ୍ରାଣେ ଡରନ୍ତି । ଆରେ, ମୋ ଦେହ ଭିତରେ ପଶିପାରିବ କି ? ଅଧିକ ଡର ମାଡ଼ୁଛି ଯଦି ଉପରକୁ ଆସ । ପିଲାବେଳେ ତମ ବାପାଙ୍କ ଗୃହ ଉପରେ ଯେମିତି ଶୋଇପଡ଼ ବୋଲି କହୁଥିଲ, ତମ ମାଆ ସିନା ପାଖରେ ସୁଅନ୍ତି ନାହିଁ, ମୁଁ ଧୂର୍ତ୍ତ ବାଇଆ କରିବ । ଭୂତପ୍ରେତ କଥା କହୁଥ । ଡରଭୟ ପାଖରେ ପଶିବେ ନାହିଁ, ଆସ ।

—ଆରେ ଆରେ, ମୁଁ କଣ ପାଞ୍ଚ ଛଅ ବର୍ଷର ପିଲା ହୋଇଛି । ମନରେ ଓଜନ ହେବା କି କଅଣ ! ହେଲା ଯା, ମତେ ଆଉ ଡର ନ ମାଡ଼େ, କିନ୍ତୁ କହିଲ ନାହିଁ ସେ ମେମ୍ କାହିଁକି ପ୍ରେତଣୀ ହେଲା ? ତାର ଖାନସାମା କାହିଁକି ଭୂତ ହେଲା ?

—କହୁଛି ଶୁଣ ।

ସାହେବ ବେଶି ମଦ ପିଏ । ବିଲାତି ମଦ ସରିଗଲେ ଦେଶୀ ମଦ ପେଟେ ପିଏ । ମହୁଲି ମଦ, ଗୁହଳି ମଦ, ସଲପ ରସ, ଖଜୁରି ରସ, କିଛି ସେ ଛାଡ଼େ ନାହିଁ । ଏସବୁ ଯୋଗାଡ଼ କରି ପିଇବାକୁ ତା'ର ପଇସା ଖରଚ ହୁଏ ନାହିଁ । ବଣ ପାହାଡ଼ ଅନ୍ଧକନ୍ଦର ଗ୍ରାମମାନଙ୍କରେ ସେ ବୁଲେ । ଓଡ଼ିଆ ଭାଷା କହି ଲେଖି ଜାଣେ । କନ୍ଧଭାଷା କହିଲେ କନ୍ଧଆ ଲୋକେ ଜାଣିପାରନ୍ତି ନାହିଁ ଯେ ସେ କନ୍ଧଘରର ପିଲା ନୁହେଁ । କେବଳ ରଙ୍ଗଟା ଅଲଗା । ସେମାନଙ୍କ ସଙ୍ଗେ ମିଶି ଶିକାର କରେ । ସେମାନେ ଯାହା ଖାଆନ୍ତି, ସାହେବ ସେଇଆ ଖାଏ । ଗୃହ ଅନନ୍ତ୍ରା ହୋଇ କନ୍ଧକନ୍ଧୁଣୀଙ୍କ ସଙ୍ଗେ ମିଶି ନାଚ କରେ । କନ୍ଧ ବାଇଦମାନ ବଜାଏ । ଏଣେ, ମେମ୍ ବସ୍ତ୍ରଯ ଏକୁଟିଆ ପଡ଼ିଥାଏ ଫୁଲବାଡ଼ିରେ, ଏଇ କୋଠିରେ ।

—ଅହ୍ୱା ବିଚ୍ଛିଆ !

—ସାହେବ ଫେରିଲେ ସ୍ୱାମୀ ସ୍ତ୍ରୀଙ୍କର ଝଗଡ଼ାଝଗଡ଼ି ଲାଗିଆ ଲାଗେ । ମଦ ନିଶାରେ ମେମ୍‌କୁ ମାରିଦେବାକୁ ସେ ବନ୍ଧୁକ ଉଠାଏ । ସାହସ କରି ଆଉ କେହି ପାଖରେ ପଶନ୍ତି ନାହିଁ । ଅହ୍ୱା, ବିଚରା ଖାନ୍‌ସମା ଟୋକା ନିଜ ଜୀବନକୁ ନ ଡ଼ରି ଧାଇଁଯାଏ, ସାହେବ ହାତରୁ ବନ୍ଧୁକ ଟାଣିନିଏ, ଗୁଳି କାଢ଼ିଦିଏ ।

ତାଆରି ଉପରେ ସାହେବର କ୍ରୋଧ ବଢ଼ିଲା । ମଦନିଶା ଛାଡ଼ିଗଲେ, ସାହେବ ପ୍ରକୃତିସ୍ଥ ହେଲେ, ପୁଣି ସେ ପୁନାପୁଅ ହୋଇଯାଏ । ମେମ୍ ପାଖରେ କ୍ଷମାପ୍ରାର୍ଥନା କରେ । ଦିନାକେତେ ଭଲରେ ଚଳନ୍ତି । ପୁଣି କେବେ ଆକଣ୍ଠ ପାନ କଲେ ସେଇ କଥାକୁ ସେଇ କଥା ।

ଦିନେ ରାତିରେ ସତକୁ ସତ ସେ ମେମ୍‌କୁ ଗୁଳି କରି ମାରିଦେଲା । ନିଜକୁ ଗୁଳିକରି ମାରିଦେବାକୁ ବସିଥିଲା । ଖାନ୍‌ସାମା ଜୀବନର ଲୋଭ ଛାଡ଼ି ଧାଇଁଗଲା ପାଖକୁ । ବନ୍ଧୁକଟା ସାହେବ ହାତରୁ ଛଡ଼ାଇ ନେବାକୁ ଚେଷ୍ଟା କଲାବେଳେ ବନ୍ଧୁକ ଫୁଟିଲା, ଖାନ୍‌ସାମାର ମୁଣ୍ଡ କଣା ହେଲା । ସେ ଟଳିପଡ଼ିଲା ।

—ଆ ହା-ହା !

ଅନସୂୟା ଆରପାଖକୁ ଡିକି କଡ଼େଇଁ ଶୋଇଲା । ଦେହହାତ ଥରିବାକୁ ଲାଗିଲା । ପୁଣି କହିଲା, ମଦନିଶାରେ କି ଦୁର୍ବୁଦ୍ଧି ଘୋଟିଲା ସାହେବକୁ ! ସେ ଫାଶୀ ପାଇଥିବ ତ ?

—ସେକଥା କେହି କହନ୍ତି ନାହିଁ, ଅନସୂୟା ! ଷ୍ଟୋରଘରର କବାଟ ଖୋଲା ହୋଇଥିଲା । ସେଇ କବାଟ ଭିତରେ ମେମ୍‌କୁ ଓ ଖାନ୍‌ସାମାକୁ ପୋତିଦେଲେ । ତାଆରି ଉପରେ ପଥର ପକାଇ ଘର ତୋଳିଲେ । ସାହେବ କୁଆଡ଼େ ଗଲା, ତାର କଅଣ ହେଲା, କେହି ଏଠି ଜାଣନ୍ତି ନାହିଁ । କିନ୍ତୁ, ଶହେ ବର୍ଷ ହେବ ମେମ୍‌ର ପ୍ରେତ ଓ ଖାନ୍‌ସାମାର ଭୂତ ଏଇଠି ଅଛନ୍ତି । ଆତଯାତ ହେଉଛନ୍ତି ବୋଲି ଲୋକେ କହନ୍ତି । ଅମୁକ ଲୋକ ଦେଖିଛି ବୋଲି ମଧ୍ୟ ପ୍ରଚାର କରନ୍ତି ।

—ତୁମେ କେବେ ଦେଖିଛ ?

—ଦେଖିବାକୁ ମୁଁ ଚେଷ୍ଟା କରିନାହିଁ । ଅନ୍ୟ କେତେ ଜାଗାରେ ଚେଷ୍ଟା ନ କରି ମଧ୍ୟ ମୁଁ ସେମାନଙ୍କୁ ଦେଖିଛୁ, ପଢ଼ୁଛୁ ଓ ଡରୁଛୁ ।

ତୁମେ ମନ୍ତ୍ର ଜାଣ ? ଆମ ଗ୍ରାମରେ ଯାହା ଘରେ ଭୂତ ପଶେ, ଗୁଣିଆ ଆସି ପୂଜା କରେ । ମନ୍ତ୍ରପଢ଼ି ତାକୁ ଘଉଡ଼ାଦିଏ । କାଳେ ଆଉ ଥରେ ପଶିଆସିବ, ସେଥିପାଇଁ ଦ୍ୱାରବନ୍ଧରେ ଲୁହାକଣ୍ଟା ପିଟେ ।

ତୁମର ଡର ଛୁଟିଗଲାଣି ! ସେକେଇ ଭିତରେ ବେଶ୍ ଦୂରେଇ ହୋଇ ଶୋଇଛ । ଭଲ କଥା, ବାଘଚମ ଅଛୁ । ବାଘର ପ୍ରେତ ତା ଚମକୁ କଷ୍ଟେ ଲାଗିରହିଥିବ । ମଣିଷ ପ୍ରେତ ଆସିଲେ ତାକୁ କାମୁଡ଼ି ବିଦାରି ଛିଣାଛିଣି କରି ଖାଇବ । କିନ୍ତୁ, ଯାହା କହୁ ଅଚସୀ, ତମ ଗାଁ ଗୁଣିଆ ଅଧ ଅନ୍ୟାୟ କାମ କରେ । ଦ୍ୱାରବନ୍ଧରେ ଲୁହାକଣ୍ଟା ମାରି ସେମାନଙ୍କୁ ତଡ଼ିବା ଯାହା କଡ଼ିବରଗା ଉପର ଫାଙ୍କରେ କରିଥିବା ଘରଚଟିଆ ବସା ଭାଙ୍ଗିବା ସେଇଆ ।

ଘରଚଟିଆଗୁଡ଼ା ଚିଁ ଚିଁ ହୋଇ ତୁମକୁ ଗାଳିଦିଅନ୍ତି । ଅଭିଶାପ ଦିଅନ୍ତି, ଅଭିମାନ କରି ଦୁଗ୍‌ଧେଇ ହୋଇ ପୁଣି କୁଟା କାଠି ଆଣି ଜମାନ୍ତି । କହନ୍ତି, ତୁମେ ଆମର ବସା ଭାଙ୍ଗିଲ, ଅଣ୍ଡା ତଳେ ପକାଇ ନଷ୍ଟ କଲ, ଚିକି ଚିକି ଛୁଆଟିମାନଙ୍କର ପ୍ରାଣ ନେଲ । ଆମର ଦୁଃଖ ହେଉ କିନ୍ତୁ: ପରବାଏ ନାହିଁ । କେତେ ଭାଙ୍ଗୁଛ ଭାଙ୍ଗୁଥାଅ, ଆମେ ପୁଣି ଆସିଲୁ । ବସା କରିବୁ, ଅଣ୍ଡା ଦେବୁ, ଛୁଆ ଫୁଟେଇବୁ । ଆମର ପ୍ରେମ ଅପରନ୍ତି ।

—କେତେଥର ମୁଁ ତାଙ୍କର ବସା ଭାଙ୍ଗିଛୁ ଗୋ; ସେମାନେ ଗାଳିଦଅନ୍ତି ! ପୁଣି ଦୁଗୁଣେଇ ହୋଇ ଆସନ୍ତି, ଘର ମଇଳା କରନ୍ତି । ଘର ମଇଳା ହେଉପଛେ, ବନ୍ଧପଣ ଲୁଗାପଟା ଉପରେ ହଗି ନଷ୍ଟ ପଛେ କରନ୍ତୁ, ଆଉ ସେମାନଙ୍କର ବସା ମୁଁ ଭାଙ୍ଗିବ ନାହିଁ, ଅଣ୍ଡା ଓ ଛୁଆଗୁଡ଼ିକ ନଷ୍ଟ ହୁଅନ୍ତି ।

—ଆରେ, ତୁମେ ଭୁଲ ବୁଝିଲ । କୁକୁଡ଼ା ଅଣ୍ଡା ପୋଚ୍ କରି ଖାଇଲେ ଓ କୁକୁଡ଼ା ମାଂସ ତରକାରି କରି ଖାଇଲେ ପାପ ହୁଏ ନାହିଁ, ଆଉ ଘରଚଟିଆ ବସା ଭାଙ୍ଗିଲେ ପାପ ହେବ, ଏକଥା କେଉଁ ବେଦରେ ଲେଖାହୋଇଛୁ ? ବୃଦ୍ଧ ବୟସରେ ମରି ଆସୁଥିବା ପ୍ରେମଶକ୍ତିକୁ ସଜାଗ କରିବା ପାଇଁ କେତେ ବହୁପତ୍ନୀକ ଘରଚଟିଆ

ଉଜାଳିଣ ଖାଇବାର ସମ୍ବାଦ ମୁଁ ପାଇଛି । ତୁମେ ଗୋଟିଏ କାମ କର । ସେମାନେ ଯେପରି କୁମ୍ଭଟୋଇ ହୋଇ ବସା ବାନ୍ଧିବାକୁ ଆରମ୍ଭ କରିବେ, ତୁମେ ସେମିତି ବସା ଭଙ୍ଗେଇବାକୁ ଆରମ୍ଭ କର । ତମ୍ଭ ହେବ ନା ତୁମର ପାପ ହେବ ?

ଆରେ ହଁ କହୁଥିଲି ପରା ଦ୍ୱାରବନ୍ଧରେ କଣ୍ଟା ମାରି କି ମନ୍ତ୍ରପଢ଼ି ପୂଜା କରି, ଘରୁ ଭୂତପ୍ରେତଙ୍କୁ ତଡ଼ିଲେ ପାପ ହୁଏ ବୋଲି ମୋର ଧାରଣା । ସେମାନଙ୍କର ସଂସାର ଅଛି । ଏଇ ପୃଥିବୀରେ ତାଙ୍କର କୋଟିଏ ମୃକ୍ଷ୍ମ ପ୍ରେତପୁରୀ ଲୁଚି ରହିଛି । ସେମାନେ ଘରସଂସାର କରୁଥିବେ । ତାଙ୍କର ପିଲାଛୁଆ ହେଉଥିବେ । ପୁଣ୍ୟ-ପର୍ବ, ବାହା-କନିଷ୍ଠ୍ୟ ହେଉଥିବ । ଖାନା-ପିନା, ଚଞ୍ଚଳଅ, ସବୁ ଚାଲିଥିବ ।

—ଧେତ୍, ମତେ ମିଛ କହି ଭୁଲାଉଛ । ସେମାନଙ୍କର ତ ଦେହ ନାହିଁ ସେମାନେ ଏସବୁ କରିବେ କିପରି ? ଛାଇରୂପରେ ଆସି ସେମାନେ କେବଳ ଡରାନ୍ତି ।

—ତୁମେ ମୋର ପ୍ରେମମୟୀ ପତ୍ନୀ, ତୁମକୁ ମୁଁ ମିଛ କଥା କହିବି ? ମିଛର ଜନ୍ମ ଅନ୍ୟ ପାଇଁକି । ପିଲାଦିନେ, ଅର୍ଥାତ୍ ହାତଗୋଡ଼ ଝଜବଜ ହେଲା ପରେ, ଗାଳିମାଡ଼ରୁ ରକ୍ଷା ପାଇବାକୁ ମିଛେ ଆସନ୍ତି ତୁଣ୍ଡକୁ, ବାପ-ମା ଓ ଅନ୍ୟାନ୍ୟ ଅଭିଭାବକଙ୍କ ଆଗରେ । ସ୍କୁଲକଲେଜରେ, ପରେ କର୍ମକ୍ଷେତ୍ରରେ, ବନ୍ଧୁମେଳରେ, ଶ୍ରୀଯୁକ୍ତ ମିଶ୍ରେ, ଶ୍ରୀମାନ ସତ୍ୟସୁନ୍ଦର ଷଡ଼ଙ୍ଗୀଙ୍କର ଛତା ଧରି ଭୁଲୁଭୁନାମକ ଡମ୍ବରୁ ବଜାଇ ଓଠରେ ଆସ୍ଥାନ ଜମାନ୍ତି । ମନ୍ତ୍ର ପଢ଼ିବାକୁ ପଡ଼େ, ସତ୍ୟମ୍ ବ୍ରୂୟାତ୍ · ଗୃହିଣୀଙ୍କ ଆଗରେ ମିଛ କହିବାଠାରୁ ବଳି ପାପ ଓ ଅନ୍ୟାୟ ଆଉ କିଛି ହୋଇ ନ ପାରେ । ତେବେ, ମିଛ କହିବାର ଅଧିକାର ଗୃହିଣୀମାନଙ୍କର ଅଛି । ସେମାନେ ସ୍ୱାମୀମାନଙ୍କ ଆଗରେ ମିଛ କହିଲେ ପାପ ନ ହୋଇ ପୁଣ୍ୟ ହୁଏ ବୋଲି ସେମାନଙ୍କର ଧାରଣା ।

ଅତସୀ ଅଭିମାନ କଲା । କେଉଁ କଥା ପଡ଼ିଥିଲା, ସେଥିରୁ ଯାଇ ସେ ଆଉ କେଉଁ କଥା ଧରିଲେଣି । ସେ ବିଶ୍ୱାସ କରନ୍ତି ଯେ ଅତସୀ ତାଙ୍କ ଆଗରେ ମିଛ କହେ । ଅତସୀ ଆଉ ଟିକିଏ କଡ଼କୁ ଘୁଞ୍ଚିଗଲା । ଗୋଡ଼ହାତ ଓ ପିଠିରୁ ଅଧେ ଋଜେଇ ବାହାରକୁ ଆସିଲା । ଦେହ ଶୀତେଇ ଉଠିଲା । ଭାବିଲା, ସେଇ ଅବିଶ୍ୱାସ

ପାଇଁ କଅଁ ଳେଇ ଗେଲେଇ କରି ପଶୁରନ୍ତି ପରା, ବୁଝି ମ ଅତସୀ, ଆମ ଘରକୁ ବୋହୂ ହୋଇ ଆସିବ । ଆଗରୁ ତମ ମନ କେବେ କେମିତି ଆଉ କାହାପାଇଁ ଚହଲିଥିଲା ?

ଛି କ ଅସନା କଥା ପଚାରୁଛ ? ଏତିକ ଅଲାଜୁକ ? ନିଜ ମନରେ ମଇଳା ଭରି ରଖିଛ କି ?

ମନେ ମନେ ହସି ଅସିତ କହିଲା, ଶୁଣିଲେ ଶୁଣ ନୋହିଲେ ନାହିଁ, ମୁଁ ସତ କଥା କହିବ । ଭୂତପ୍ରେତଙ୍କୁ କେହି କବାଟ କିଳି ଅଟକାଇ ପାରିବେ ନାହିଁ । ସେମାନେ ଗଛ, ପଥର, କାନ୍ଥ, ବାଡ଼ରୁ ବାହାରି ପଡ଼ନ୍ତି । ଦେହ ନାହିଁ, କେବଳ ଶୂନ୍ୟରୂପ । ବାପଚମକୁ ବେଳେବେଳେ ସେମାନେ ଉପେକ୍ଷା କରନ୍ତି । ଛପି ଛପି ମଣିଷ ପାଖକୁ ଆସନ୍ତି । ହାତ ବଢ଼ାଇ ଧରିବାକୁ ଚେଷ୍ଟା କରନ୍ତି । ହଁ, ଏ କଥା ମଧ୍ୟ ଜାଣିବା ଉଚିତ ଯେ ଯେଉଁ ନାରୀମାନେ ଅପମୃତ୍ୟୁରେ ପଡ଼ିଥାଆନ୍ତି, ସେମାନେ ପୁରୁଷମାନଙ୍କ ପାଖକୁ ଆସିବେ ନାହିଁ । ବିଶେଷତଃ ଯେଉଁମାନେ ସତୀ ସ୍ତ୍ରୀ ଥିଲେ, ସ୍ୱାମୀମାନଙ୍କ ପାଇଁ ପୁଣି ସ୍ୱାମୀମାନଙ୍କ ହାତରେ ପ୍ରାଣ ଦେଇଥିଲେ, ସେମାନେ ସତୀ ସ୍ତ୍ରୀମାନଙ୍କ ପାଖକୁ ପ୍ରେତଣୀ ହୋଇ ଆସନ୍ତି । ଆସିବାର କଥା ।

ଅସିତ ନୀରବ ହେଲା । ଅତସୀ ପାଖରୁ ଆଉ ଟିକିଏ ଦୂରେଇଗଲା । ଦେହକୁ ଦେହ ଆଉ ସ୍ପର୍ଶ କଲା ନାହିଁ ।

ହଠାତ୍ ଲାଗିଥିବା ନୀରବତା ଅତସୀର ମନରେ ଭେଦିଲା । କାନରେ ବାଜିଲା ବାହାରୁ, ପାଖ ଓ ଦୂର ଅରଣ୍ୟ ଆଡ଼ୁ ଭାସିଆସୁଥିବା ବିବିଧ ପ୍ରକାର ଶବ୍ଦ । କିଏ କାହାକୁ ଡାକୁଛି । କିଏ ଧାଇଁଧାଇଁକା ଯାଉଛି । ଆର୍ତ୍ତଶ୍ୱାସ । ଦୁଇ ନାରୀଙ୍କର କନ୍ଦଣର ବଚନିକା । କରୁଣ କ୍ଷୀଣ ବେଦନ । ହିହି ଦା ହସ । ପ କୁଆପାଟି ପାଇଁ ପାନକୁଟାର ଠକ୍ ଠକ୍, କିଏ କରି ରାନ୍ଧିଲାଣି । ତରକାରି ବଘାର ଚେଁ ଗ୍ରେଟ ଫିଲର କ୍ୱାଁ କ୍ୱାଁ ।

ଅଧେ ଦେହ ହେମାଳିଆ ହୋଇ ଆସୁଥିଲା, ଏବେ ସାରା ଶରୀରରେ ଶୀତଳ ପ୍ରବାହ ଖେଳିଯାଉଛି । ଜଣାପଡୁଛି, ହେଇ, ଧଳା ଗାଉନ୍ ଓ ଧଳା ଜାମା ପିନ୍ଧି, ହାଇହିଲ୍ ଓ ରବର୍ ସୋଲ ଜୋତା ମାଡ଼ି, ଅତସୀ ପାଖ କାନ୍ଥ ଭିତରୁ ଧୀ ବ

ଫରଫର ସୁନ୍ଦର ନାଗୁଣିଟିଏ ଧୀରେ ଧୀରେ ବାହାରି ଆସୁଛି । ସେ କ୍ଷ୍ୟାଣ୍ଡ୍ କରିବାକୁ ହାତ ବଢ଼ାଉଛି । ଆରେ, ପାପୁଲିରେ ରକ୍ତ ଲାଗିଛି ପରା ! କିଏ ସେ ? ସାହେବାଣୀର ପ୍ରେତ କି ? ହଁ, ସେଇ ହୋଇଥିବ ତ !

ଅନ୍ଧାର ଭିତରେ ଆଖି ଖୋଲି ନିରେଖିବାକୁ ଅଡସୀର ମନ ହେଉଛି; କିନ୍ତୁ ଆଖିପତା ଖୋଲି ହେଉ ନାହିଁ । ମନ୍ତ୍ରପଡ଼ି କିଏ ବାନ୍ଧିଦେଇଛି । ମନ ବୋବାଳି ଛାଡ଼ୁଛି ଆତଙ୍କିଆ ଥରିଲା ସ୍ୱରରେ—ହେ, ହେ, ହୋଇ ହେ, ଶୁଣ ମ !

ଓଠପତା ଖୋଲୁ ନାହିଁ । ମନର କରୁଣ ଡ଼ାକ ଅତଳ ଜଳର ଗୋଳିଆ ମୂଳରେ ଅଟକି ଯାଉଛି । ଦେହ ଚଳୁ ନାହିଁ । ଅବଶ ଲାଗୁଛି । ପିଣ୍ଡରୁ ପ୍ରାଣ ଉଡ଼ିଗଲା ପରି ଲାଗୁଛି ।

ନୀରବତା କେତେ କ୍ଷଣର ।

ସେଇ ଶବ୍ଦଗୁଡ଼ାକ କାନରେ ପଡୁଛି । ସେଇ ଦୃଶ୍ୟ ଆଖି ଆଗକୁ ଆସୁଛି । ସାହେବାଣୀ ଧୀରେ ଧୀରେ ପାହୁଣ୍ଡ ପକାଇ ପାଖକୁ ପାଖକୁ ମାଡ଼ିଆସୁଛି । ତାର ଦୁଇ ଆଖିରୁ ଗଡ଼ିପଡ଼ୁଛି ଦୁଇ ଧାର ଲୁହ । ଆରେ, ଲୁହ ନୁହେ, ଲହୁ, ଲାଲ୍ ଟକ୍ ଟକ । ଏ, ତାର ମୁଣ୍ଡରେ ଗୋଟାଏ କଣା ! ଟିକିଏ ମଥାଉପରୁ ବାହାରି ପଡ଼ୁଛି, ନିଗିଡ଼ି ଆସୁଛି । କି ଉତ୍କଟ ଗନ୍ଧ ! ବାରୁଦ ପୋଡ଼ାର ଗନ୍ଧ ପରି ପରତେ ହେଉଛି । ହେଇଟି, ସେ ପାଖେଇ ଆଇଲାଣି । ତାର ହାତପାପୁଲି ହାତେ ଦୂରରେ ନାହିଁ ।

ଅଡସୀର ତଣ୍ଟି ଶୁଖିଯାଉଛି, ଛାତି ଥରୁଛି ଆରେ, ସେ ଗଲେ କୁଆଡ଼େ ? ଏତେ ଅବିଶ୍ୱାସୀ ଏ ପୁରୁଷଜାତି ! ମଦଘଡ଼ା, ମଦ ସରିଲେ ଗଡ଼ଗଡ଼ା !

ମନରେ ସାହସ ବାନ୍ଧି ଅଡସୀ ଅଧା ନିର୍ଜୀବ ଓ ଅଧା ଅଚଳ ହାତଟି ଧୀରେ ଧୀରେ ଅସିତ ଆଡ଼କୁ ଲମ୍ବାଇଲା । ଫୁଙ୍ଗୁଳା ପିଠିରେ ହାତର ସ୍ପର୍ଶ ଲାଗିଲା । ତଡ଼ିତ୍ ବେଗରେ ଦରମଲା ଦେହରେ ନୂଆ ଜୀବନ ସଞ୍ଚରିଲା ।

ଅସିତ ଛଟାଗାଳି ଶୋଇଛି । ହଲ୍‌ଚଲ୍ ହେଲା ନାହିଁ ।

ଅଡସୀର ମୁଦିଲା ଆଖି ଆଗରୁ ସାହେବାଣୀର ପ୍ରେତ ଉଭେଇଗଲା । ସତେ କି ସେ ପୁଣି ଧୋବ ଫରଫର କାନ୍ଥ ଦେହରେ ମିଶିଗଲାଣି ! ଅଡସୀର

ମନରେ ସାହସ ଆସିଲା ! ସ୍ୱାମୀ ପାଖରେ ଅଛନ୍ତି । ଶୋଇପଡ଼ିଛନ୍ତି । ତଥାପି, ତା'ର ଆଉ କି ଡର ? ଆବଶ୍ୟକ ହେଲେ ସେ ତାଙ୍କୁ ହଲାଇ ଉଠାଇବ । ସେ ରେଜେଇ ଭିତରକୁ ଘୁଞ୍ଚି ଘୁଞ୍ଚି ଆସିଲା । ହାତ ଲମ୍ବାଇ ଅସିତର ଦେହକୁ ଗୁଡ଼ାଇ ଧରିଲା । ଦୁଇଟି ଦେହର ମଝିରେ ବ୍ୟବଧାନ ରହିଲା ନାହିଁ ।

ଧୀରେ ଧୀରେ ଅସିତ ଚିତ୍ ହୋଇ ଶୋଇଲା । ଦୀର୍ଘଶ୍ୱାସ ଛାଡ଼ିଲା ।

ଅତସୀ ଅନୁମାନ କଲା, ସେ ଶୋଇପଡ଼ିଲେଣି । କଥା କହୁ କହୁ ସେ ଏମିତି ଝଟ୍‌କରି ଶୋଇପଡ଼ନ୍ତି । ହଲାଇଲେ ମଧ୍ୟ ଉଠନ୍ତି ନାହିଁ । ଶୁଅନ୍ତୁ, ଆଉ କି ଡର ? ପ୍ରେତନୀ ଅନ୍ତର୍ଦ୍ଧାନ ହେଲାଣି । ସେମାନେ ସତୀ ସ୍ତ୍ରୀଙ୍କ ପାଖକୁ ଆସନ୍ତି । ଡରାଇବାକୁ ଆସନ୍ତି ? ସ୍ୱାମୀର ଦେହରେ ଲାଗି ରହିଥିଲେ ଭୟରେ ପଳାନ୍ତି ? ସେଇଆ ତ ହେଲା ।

ଅତସୀ ଆହୁରି ଘୁଞ୍ଚିଲା । ରେଜେଇର ଫାଙ୍କ ବାଟେ କାଳେ ସେଇଟା ପଶି ଆସିବ ! ସେ ଶୁଣିଛି, ଭୂତପ୍ରେତମାନେ ନାନା ରୂପ ଧରି ଆସନ୍ତି । ଝିଣ୍ଟିକା, ଝିଟିପିଟି, କେତେ ଜାତିର ଚଢ଼େଇ, ପଶୁ, ହୁଥା ବିଲେଇ, କୁକୁର, ଗେଧମାଙ୍କଡ଼, ବିଲୁଆ, ହେଟା, ଘୁଷୁରି, କଅଁଳା ବାଛୁରି । ବାପ୍‌ରେ ! ଆଉ କେତେପ୍ରକାର ବିକଟାଳ ରୂପ ! କିନ୍ତୁ କୌଣସି ରୂପରେ ହେଲେ ସେ ଆସିପାରିବ ନାହିଁ ।

ଅତସୀ ଧୀରେ ଧୀରେ ମୁଣ୍ଡ ଉଠାଇ ଅସିତର ବଙ୍କିଲା ବାହୁ ଉପରେ ରଖିଲା । ଡାହାଣ ଗୋଡଟି ଉଠାଇ ଅସିତ୍‌ର ଲମ୍ବିଲା ଗୋଡ଼ ଉପରେ ଥୋଇଲା । ଡାହାଣ ହାତରେ ତାର ବଳିଷ୍ଠ ତନୁକୁ ନିବିଡ଼ ଭାବରେ ଗୁଡ଼ାଇ ଧରିଲା ।

ଆସୁଥାଉ ସେ ଚୁଲିପଶୀ, ଡାଆଣୀ, ଚିରଗୁଣୀ, ସାହାବାଣୀର ପ୍ରେତନୀ । କେଉଁ ରୂପରେ ଆସୁଛି ଆସୁ ସେ ନିଆଁ ଲଗୀ । ସ୍ୱାମୀ କୋଳରେ ସ୍ତ୍ରୀ, ପାଖରେ ପଶିପାରିବ ନାହିଁ ସେ ଦୋସ୍ତରୁଣୀ ।

ଢ' ପିଲାର ବାପା ସେ ଚୋର ଆଗର ଗେରସ୍ତ । ଆଉ କାହା ସଙ୍ଗେ ପ୍ରେମ କଲା ବୋଲି ତାକୁ ଛାଡ଼ପତ୍ର ଦେଇ ପଛ ଗେରସ୍ତକୁ ପ୍ରେମ କରି ବାହା ହୋଇଥିଲୁ । ପରିଭବ ପାଇଲୁ ତ ? ଯାଉନୁ ଲୋ ଆଉ କୁଆଡ଼େ ! ଏ ରାଇଜରେ ଏତେ ବଣ, ପାହାଡ଼, ଖୋଲ, ନାଳ, ଗୁହା, ଅପନ୍ତରା ପଡ଼ିଛି । ଏକୁଟିଆ ନିରୋଳା

ଥାନ ଦେଖି ରହିବୁ । ଏଠି କାହିଁକି ଏତେ ବର୍ଷ ହେଲା ନହିର ପହରା ଦେଉଛୁ ? ଖାନସାମାକୁ ପାଖେ ପାଖେ ରଖିଛୁ ?

କାନରେ ପଡ଼ିଲା ପାଖର ଓ ଦୂରର ଶବ୍ଦମାନ । ଜାଢଜାଢକା, ମିଶାମିଶି । ପବନ ଚଳନର ଶବ୍ଦ ସଙ୍ଗେ କେଉଁ ଅଜଣା ଜୀବଜନ୍ତୁ ଓ ଜଳପ୍ରବାହର ଶବ୍ଦ ମିଶିଥିବ; କିନ୍ତୁ ତା ସଙ୍ଗରେ ପ୍ରେତ ଦଳର ହସକାନ୍ଦ, ବାହା-ନମିତ୍ୟ ନାଚ ଓ ବାଇଦର ଶବ୍ଦ ଯେ ମିଶି ନ ଥିବ ଏହା ତ ନୁହେଁ । ସେମାନେ ବି ସଂସାର କରନ୍ତି ପରା ! ପିଲାଛୁଆ ବି ହୁଅନ୍ତି ! ଆଲୋ ପ୍ରେମ-ଛଟପଟୀ, ଜହ୍ନଲବକଲୀ, ହଲମଲ୍ଲୀ, ମଦୁଆ ଲମ୍ପଟୀର ପ୍ରେମକାଙ୍ଗାଳୁଣୀ, ସାହାବାଣୀଙ୍କ ଯୌବନ, ସାଉନ୍ତ୍ର, କେଉଁ ଓଅରା ଭୂତକୁ ପାଲରେ ପକାଇ ବାହାହୋଇ ସୁଖରେ ରହିବୁ !

ଏଠିକି କାହିଁକି ଯୋରଟେଇ ହୋଇ ଆସୁଛୁ ମ ? ତୋର ଦେ'ଗେରସ୍ତ କେବଠୁଁ ମଶ ମାଟିରେ ମିଶିବେଣି । ସେମାନଙ୍କର ଆତ୍ମା କେତେ ଥର ଜନମ ହୋଇ କେତେ ପୁରୁଣା ଦେହ ଛାଡ଼ି କେଉଁଠି ନୂଆ ପିଲା ହୋଇ କୁଆଁ କୁଆଁ କାନ୍ଦି ଛାଡ଼ୁଥିବେ । ତୋତେ ଯଦି ଜଣାଅଛି ଲୋ ଡାକିଣୀ, ସେଠିକି ଯାଇ ସେ ପିଲାଙ୍କର ପରାଣ ଶୋଷ, ଆଉ ବଡ଼ ପଣକି ଧରି ମଶାଣି ଭୂଇଁରେ ବସି ସେମାନଙ୍କୁ ଅନ୍ଧାର ରାତିରେ କାନ୍ଦୁଥା । ଚୁଲି ଭିତରକୁ ଟିକା ଗୋଡ଼ ଲମ୍ବାଇ ଚଇଚୂଣୀ ଆଳୁଅ ଜାଳିବୁ, ସେଇ ନିଆଁରେ ତାଙ୍କୁ ସେକିସାକି ଗିଳୁଥିବୁ । ସେମାନେ ତୋତେ କଷ୍ଟ ଦେଇଥିଲେ, ଛଟପଟ କରି ମାରିଲେ ପରା !

ଆରେ ହଁ, ମନେ ପଡ଼ିଲା, ସେମାନେ ଖିରସ୍ତାନ । ସେମାନଙ୍କର ଆତ୍ମା ଆଉ ଜନମ ହୁଏ ନାହିଁ । ଭୂତ ହୋଇ କବର ପାଖେ ଘୂରି ବୁଲୁଥାଏ ପୃଥ୍ୱୀ ପ୍ରଳୟ ହେବାଯାଏ । ଯାଉନ୍ତୁ ସେମାନଙ୍କ ପାଖକୁ; କଣ୍ଟେ କାହାକୁ ବାହା ହୋଇ ରହିଥିବୁ ! ଏଠିକି କାହିଁକି ଆସି ମରୁଛୁ ?

ଆସିତର ଚଳନ୍ତ ନିଶ୍ୱାସ ଅଚସୀର ଗାଲରେ ବାଜିଲା । ଆସିତ କଡ଼େଇ ଶୋଇ ଅଚସୀଙ୍କୁ ଗୁଡ଼ାଇ ଧରିଲା । କହିଲା, ମୋର ଗୁଇନଦ ଭାଙ୍ଗିଲା ? ଏପରି ଛଟପଟ ହେଉଛ କାହିଁକି ? ଡରିଲ କି ?

ଅସିତର ସ୍ୱର ଶୁଣିବା ସଙ୍ଗେ ସଙ୍ଗେ ଅତସୀର ସୁପ୍ତ ଚେତନା ଫେରିଆସିଲା । ଅଥଚ ଜଳରେ ପଡ଼ି କୂଳରେ ଦାନଟିପର ସ୍ପର୍ଶ ପାଇ ଆଶା ଦୂରଶାରେ ଉନ୍ମୁକ୍ତ ହେଉଥିବା ବ୍ୟକ୍ତିକୁ ଜଳ ଯେପରି କୂଳର ଭୂମି ଉପରେ ଟେକି ରଖିଦେଲା । ନୂଆ ପହଁରା ଶିଖିଥିବା ଲୋକ ଶିର୍ଷି ବୁଡ଼ା ଖାଇ ଦୁଇ ଢୋକ ପାଣି ପିଇ କୂଳରେ ଲାଗିଲା ପରେ ଏବେଟେଣେ ବୁଦ୍ଧି ହାଦୁଡ଼ିଆ କଥା କହିଲା ପରି ଅତସୀ ଛେପ ଢୋକି ଗୁଡ଼ଥର ଶ୍ୱାସ ଗ୍ରସ୍ତ ଉତ୍ତର ଦେଲା, ଉଃ କାହିଁକି ମ, ତୁମେ ମୋ ପାଖରେ ଅଛ । ହେଲେ, ସେ ସେଇ ରୂପରେ ଏବେ ଆସିଥିଲା । ମୋ ଜନ୍ମ କାନ୍ଥରୁ ବାହାରି ଧୀରେ ଧୀରେ ପାଖକୁ ପାଖକୁ ମାଡ଼ିଆସୁଥିଲା । ଯେମିତି ତୁମ ଦେହରେ ମୁଁ ହିପ ଲେଉଟିଲି, ସେ ପୁଣି କାନ୍ଥରେ ନେସି ହୋଇଗଲା ।

ଅସିତ ଅତସୀର ଗାଳରେ ଟେଲି କରି କୌତୂହଳ ଓ ଆମୋଦ ଅନୁଭବ କଲା । ଅତସୀ ଥରିଲା ଦେହ ଓ ସ୍ତନରେ ପଚରି ମାଇ ମନେ ମନେ ଦୁଃଖିତ ହୋଇ ପିଠି ଆଉଁସୁଣୁ ଟେବହୁର କହିଲା, ପାଗଳୀ, ସତରେ ତୁମେ ଡରିଛ ? ଅଭିମାନ କରି ଦୂରେଇଗଲ, ଏବେ ପରାଭବ ପାଇଲ । ଅନ୍ଧାର ଘରର ଗନ୍ଧରେ ଡେଉଁରୁ ଡେଇଁ ଦୂରେଇଗଲେ ଯେତେ ଭଦ୍ରଲୋକ କଳିଆ ଭୂତପ୍ରେତ ଅଛନ୍ତି, ସେମାନେ ପାଖକୁ ଆସନ୍ତି । ଆଲୁଅ ଥିଲେ ପାଖ ମାଡ଼ନ୍ତି ନାହିଁ । ତକିଆ କନ୍ତରେ ଟର୍ଚ୍ଚ ଲାଇଟ୍ ରଖିଛ ପରା ' ଆଲୁଅ ଜାଳିଲ ନାହିଁ ? ହେଉଛି ରଅ ।

ଅତସୀ ଟର୍ଚ୍ଚ ନେଇ ଆଲୁଅ ଟିପିଲା । ପଲଙ୍କ ଉପରେ ବସି ମଶାରି ଟେକି ବଡ଼ ଘରର ଅନ୍ଧକାରରେ ଉଜ୍ଜ୍ୱଳ ଆଲୁଅ ଖେଳାଇଦେଲା । ଯେଉଁ କାନ୍ଥରୁ ସେଇ ମାୟାବୀନୀର ପ୍ରେତ ବାହାରିଥିଲା, ତାକୁ ଆଲୁଅ ତେଜରେ ବାରମ୍ବାର ଚିଲେଇ ଆଣିଲା । କେହି କେଉଁଠି ଥିବା ତ ଦୂରର କଥା, ବାଘଟିଏ ବି ଦେଖାଯାଉ ନାହିଁ । ଟର୍ଚ୍ଚ ଆଲୁଅ ତରଙ୍ଗ ଆଉ ପାଖରେ ସ୍ୱାମୀଙ୍କର କଣ୍ଠରେ ଥିଲା, ଏହା ତାର ମନେ ପଡ଼ିଲା ନାହିଁ । ଅତସୀ ଆଉ ଥରେ ଆଲୁଅ ଖେଳାଇଲା ।

ଅସିତ ତାର ଫୁଲ୍ଲ ଦେହର ଭରପୂରତାକୁ ମୁଗ୍ଧ ଓ ତୃଷିତ ନେତ୍ରରେ ଚାହିଁଲା । ଖୋଲା ଦେଲେଇ, ଶୀତ ପଡ଼ି ଆସୁଛି ।

ଅଳସୀର ଦେହ କଣ୍ଟକିତ ହୋଇଛି, ତାଥପି ସେ ସାହାବାଣୀର ପ୍ରେତକୁ ଖୋଜୁଛି । ଆସିତ ତାକୁ କୋଳକୁ ଟାଣିନେଲା । ଟର୍ଚ୍ଚ ଲାଇଟ୍ ହାତରୁ ଛଡ଼ାଇ ଆଲୁଅ ଲିଭାଇଲା । ଛେନେଇ ଘୋଡ଼ାଇ ତା'ର ମୁଣ୍ଡ ଥାପଡ଼ି କହିଲା, ଦେଖିଲ ତ କେହି କୁଆଡ଼େ ନାହିଁ, ଆଉ କ ଡର ? ଏଥର ଶୋଇପଡ଼ ଚୁପ୍‌ ହୋଇ । ଭୂତପ୍ରେତ ପାଖକୁ ଆସିବେ ନାହିଁ ।

ମୁଁ କଅଣ ସପନ ଦେଖିଲି ? ନିଦ ତ ହୋଇ ନ ଥିଲା ! ଧୋବ ଫର୍ ଫର୍ ପେଷାକ ପିନ୍ଧି ସେ କାହୁଁରୁ ବାହାରି ଆସିଲା, ନିଜେ ଦେଖିଛି ।

ହସି ହସି ଅସିତ କହିଲା, ଆସିଲେ ଆସୁ, ତମର କ ଯାଏ ? ସେମାନେ ଡରାଇବାକୁ ଆସନ୍ତି ନାହିଁ, କଥା କହିବାକୁ ଆସନ୍ତି । ଲୋକେ ବୃଥାରେ ଡର ଛୁଆଁ ହୋଇ ମରନ୍ତି । ସାହେବ ତାର ବଦ୍‌ନାମ କରିଥିଲା ଯେ ସେ କୁଆଡ଼େ ଖାନାସାମାକୁ ପ୍ରେମ କରୁଥିଲା ଓ ଦୁହିଁଙ୍କୁ ସେ ଗୋଟିଏ ଅଛଣାରେ ଦେଖିଥିଲା ।

ଏକଥା ମେ ତାହା ମିଛ, ସେଇଆ କହିବାକୁ ସେ ଆସିଥିଲା । ମନର ଦୁଃଖ ତୁମ ଆଗରେ କହିଥାନ୍ତା, ସେଇଠୁ ସେ ଏ ସ୍ଥାନ ଛାଡ଼ି ଆଉ କୁଆଡେ ଚାଲି-ଯାଇଥାନ୍ତା । ସେ ଅଭିମାନ କରି ଚାଲିଗଲା । ଏ ଘରେ ତୁମେ ଥିବାଯାଏ ଆଉ ସେ ପାଖ ପଶିବ ନାହିଁ କି ସ୍ୱପ୍ନରେ ହେଲେ ଦେଖାଦେବ ନାହିଁ । ସାହେବାଣୀ ଅଭିମାନିନୀ ଥିଲା । ପୁଣି, ଅପମୃତ୍ୟୁ ହୋଇ ପ୍ରେତ ହେଲେ ଅଭିମାନ ବଢ଼ିଯାଏ । ଏଥର ଶୋଇପଡ଼ ।

ଅଳସୀ ଦୁଃଖିତ ହୋଇ କହିଲା, ନିଦ ମାଡ଼ୁନାହିଁ । ମୁଣ୍ଡ ଗରମ ହୋଇଛି । ଆହା, କେଡ଼େ ଭୁଲ୍ କଲି । ଡରିଲି । ସେଇ ହତଭାଗିନୀର ଜୀବନର ଦରୁ ଦୁଃଖର କାହାଣୀ ମୁଁ ତାଆରି ମୁହଁରୁ ଶୁଣିଥାନ୍ତି । ସତ କହ ତୁମେ ଏପରି କେବେ ଭୂତପ୍ରେତ ଦେଖିଛ ? ସେମାନେ ତାଙ୍କର ଜୀବନର ସୁଖଦୁଃଖର କାହାଣୀ କହନ୍ତି ? ନ ଡରି ତୁମେ ଶୁଣିଛ ?

ହସି ହସି ଅସିତ କହିଲା, ଓଃ, କେତେ ଥର । କହି ବସିଲେ ପୁରାଣ ହେବ । ତୁମେ ନିଜେ ଶୋଇବ ନାହିଁ, ମୋତେ ଶୁଆଇ ଦେବ ନାହିଁ । ରାତି ଅଧିକ ହେଲାଣି ଯେ !

ଅଟ ପିଲ ଦିନେ କେତେ ଲୋକଙ୍କ ଭୁଣ୍ଡରୁ ଭୂତପ୍ରେତଙ୍କ ସମ୍ବନ୍ଧରେ ଅନେକ ଗଳ୍ପ ଶୁଣିଥିଲି । ଯେଉଁମାନେ କହନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ କହନ୍ତି ଯେ ସେମାନେ ଆଉ କାହାଠାରୁ ଶୁଣିଥିଲେ । କେହି କେହି ନିଜ ଦେଖିଲି କଥା ଓ ଅଙ୍ଗେ ଲଗ୍ଭିଥିଲା କଥା ବି କହନ୍ତି । ଶୁଣିଲେ ଡର ଲାଗେ ସିନା, ଶୁଣିବାକୁ ମଜା ଲାଗେ, ଭଲ ଲାଗେ । ଛାଡ଼ି ପଳାଇବାକୁ ମନ ହୁଏ ନାହିଁ । ଆଈବୁଢ଼ୀଙ୍କ କାହାଣୀଠାରୁ ମଧ୍ୟ ଭୂତପ୍ରେତଙ୍କ କାହାଣୀ ଆହୁରି ବଢ଼ିଆ ଓ ମନଭୁଆଁ ।

ପୂର୍ବକାଳରେ ଘୋଡ଼ାମାନଙ୍କର ଡେଣା ଥିଲା, ସୁନାକାଠି ଛୁଇଁଲେ ରାଜକନ୍ୟା ଜୀଇଁ ଉଠୁଥିଲା, ରୂପା କାଠି ଛୁଆଁଇଲେ ତାର ଜୀବନ ଯାଉଥିଲା; ଧଳାଫୁଲ ଶୁଙ୍ଘାଇଲେ ମେଣ୍ଢାଛୁଆଟା ଗଛରେ ଦିବ୍ୟସୁନ୍ଦର ତରୁଣ ହୁଏ, ବେଙ୍ଗଜେମା ଗଛ ଜାଙ୍ଗୁଲୁ, ଜାଙ୍ଗୁଲୁ ବୋଲେ, କୁକୁଡ଼ା ଡାକିଲେ, କାଳାଫୁଲ ଶୁଙ୍ଘାଇ ତ ପ୍ରେମିକକୁ ମେଣ୍ଢା କରେ । ମନପବନ ଡଙ୍ଗା ଶୂନ୍ୟପର ଭାସିଯାଏ, ଘଣ୍ଟାକରେ ଶହେ ଯୋଜନ ଦୂରକୁ ।

—ଏଗୁଡ଼ାକ ମୁଁ ଶୁଣିବି ନାହିଁ ଯା ! ଏମିତିକା ଶହ ଶହ କଥା ମୁଁ ଜାଣିଛି । ମନରୁ ଫନ୍ଦି ଶହ ଶହ କଥା ମୁଁ କହିପାରିବି; କେତେ କହିଛି ତୁମକୁ । ଭୂତପ୍ରେତ କଥା କହ । ଲୋକେ ଯାହା ଦେଖିଛନ୍ତି ଓ ତୁମେ ନିଜେ ଯାହା ଦେଖିଛ ।

—ତୁମେ ଅଧୀର ହୁଅ ନା ଅନ୍ତରୀ, ମୁଁ ସେହି କଥା କହୁଥିଲି । ଭୂତ-ପ୍ରେତଙ୍କ ସମ୍ବନ୍ଧରେ ଯାହା ଶୁଣିଛି, ସେ ସବୁ ଆଈବୁଢ଼ୀଙ୍କ ଗପ, ତୁମର ଫନ୍ଦିକହିଲା ଗପଠାରୁ ବଢ଼ିଆ, ବହସ୍ୟପ୍ରଦ ଓ କୌତୁକିଆ । କିନ୍ତୁ, ମନେ ରଖି ଥା, ସେସବୁ ଗଳ୍ପ ନୁହେଁ, ନିଚ୍ଛଟ ସତ୍ୟ, ଏଥିପାଇଁ ସେମାନେ ଶପଥ କରି କହନ୍ତି । ଶୁଣ—

ବଣିଆ ଆଳୁକିଆରିକୁ ଡେଙ୍ଗାରେ ପାଣି ବୋହୁଛି, ଭଗିଆ ପାଣି ମଡ଼ାଉଛି । ଦୁହେଁ ମିଶି ଭାଗରେ ମାଣେ ଜମି ନେଇ ଆଳୁ ଲଗାଇଥିଲେ । ସଞ୍ଜବୁଡ଼େ ଦୁହେଁ କଥାଭାଷା ହେଲେ, ପାହାନ୍ତାରୁ ଯାଇ କିଆରିରେ ପାଣି ମଡ଼ାଇବେ ।

ଭଗିଆ ଆସି ବଣିଆକୁ ଉଠାଇଲା । ଜହ୍ନ କେତେବେଳୁ ବୁଡ଼ିଗଲାଣି । ଫରଚ୍ଛ ହେଲାଣି । ଆଗେ ଆଗେ ଭଗି ଓ ପଛେ ପଛେ ବଣି ପାଣି ମଡ଼ାଇବାକୁ

ଗଲେ । ପାଣି ବୋହୂ ବୋହୂ ବଣି ହାଲିଆ ହେଲା, ଉଗିକୁ ଡାକଲା । କାହିଁ ସେ ଉଗିଆ ? ଜହ୍ନ ଉପରୁ ପାତଳ ବଉଦ ଖସିଗଲାଣି । ଆକାଶ ଉପରେ ସେ ଦଣୁଛୁ । ମଶାଣି ପାଖ ତୋଟାରୁ କଏ ବଡ଼ ପାଟିକରି ହସୁଛୁ । ମଣିଷଟାଏ ସେଇଆଡେ ଗ୍ଲିଯାଉଥିଲା । ବଣିଆର ଡାକ ଶୁଣି ଟିକଏ ରହ ପଛକୁ ଗ୍ହିଁଲା । ପୁଣି ଆଗକୁ ଗ୍ଲିଲା, ତୋଟା ଭିତରେ ଲୁଚିଲା ।

—ସେ ଲୋକଟା କଏ ? ଉଗିଆ ନୁହେଁ ?

—ବଣିଆ ଭ୍ବିଲା, ସେଇଟା ଭୂତ । ପାଣି ବୋହୂବାକୁ ପାହାନ୍ତାରୁ ଆସିବେ ବୋଲି ଗାଁ ଦାଣ୍ଡର କଦମ୍ବମୂଳେ କଥାବାର୍ତ୍ତା ହେଉଥିଲା ବେଳେ ସେଇ ଭୂତ କଦମ୍ବଗଛରେ ଆଶ୍ରା ନେଇଥିଲା; ସବୁ ଶୁଣିଥିଲା । ଭୂତପ୍ରେତମାନେ ଲୋକଙ୍କୁ କପଟ ହଇରାଣ କରନ୍ତି, ଏମିତି ଘରୁ ବଚ୍ଛଣାରୁ ଉଠାଇନେଇ ଶରୀର ମଝିରେ ନଚ୍ଛଟିଆ ବାଟ କଡ଼ରେ ଗୋରୁହାଡ଼ରେ ପିଟନ୍ତି, ସବୁ ବଣିକେସନ ପିଲାଦିନୁ ମା କୋଳରୁ ଶୁଣିଆସୁଛୁ । ଆଜ ନଜେ ତାର ପ୍ରମାଣ ପାଇଲା ଜାଣ । କାଣି ଆଙ୍ଗୁଠିରେ ଗୋଟାଏ ଲୁହାତାରର ମୁଦ ଗଳାଇଥିଲା ବୋଲି ରକ୍ଷା ପାଇଲା । ନୋହିଲେ, ଭୂତ ତାକୁ ଗୋଗଛ ବାଡ଼ିଆ ବାଡ଼େଇ ଥାଆନ୍ତା ।

ଭୂତ ଉଠେଇ ଆଣିଛୁ ବୋଲି ଯେମିତି ଜାଣିଲା, ତାର ରକ୍ତ ପାଣି ଫାଟିଗଲା ଗୋ ! ବାପା ଲୋ, ମାଆ ଲୋ ପାଟିକରି ଶରୀର ବଳରେ ପଡ଼ଉଠି ମାଇଲିଏ ବାଟ ଧାଇଁଲା ଘରକୁ । ଗୋଡ଼ହାତ ଛୁଣ୍ଡି ଲହୁଲୁହାଣ । ଘର ଆଗରେ ଆସି ଭୂସୁକରି ପଡ଼ିଗଲା । ପାହାନ୍ତା ହୋଇଆସୁଥିଲା । କାଁ-ଭାଁ କାଉ ବୋବାଉ ଥିଲେ ।

ଉଗିଆ କେତେବେଳୁ ଯାଇଁ ବଣିଆ ଘରେ ପହଞ୍ଚିଥିଲା କେଜାଣି, ସେ ଓ ବଣିଆର ଘରଣୀ ତାକୁ ଟେକାଟେକ କରି ଘରକୁ ନେଲେ । ସକାଳୁ ତାର ଦ' ମୁହଁ ଛୁଟିଲା, ଯାହା ହେଉ, ଅତ କଷ୍ଟରେ ସେ ବଞ୍ଚିଲା ।

—ଉଗିଆ ବଣିଆକୁ ଖୋଜିବାକୁ ନ ଯାଇ ତା' ଘରେ ବସିଥିଲା କାହିଁକ ମ ?

—କେଜାଣି, ତୁମେ ସେ କଥା ବିଶ୍ୱାସ କର । ଭଗିଆର ମାଇପ ସେଇ କଥା ବଣିଆର ଘର ପିଲଙ୍କର ମାଆକୁ ଗୁପ୍ତରେ ପଚାରିବାରୁ ଏକଥା ଘରଣୀ ତୁଣ୍ଡରୁ ଶୁଣି ବଣିଆ ଟାଙ୍ଗିଆ ଧରି ଧାଇଁଥିଲା ଭଗିଆର ବାଂଝ ଘରଣୀକୁ ହାଣିବ ବୋଲି । ତା' ଭଉଜା ଓଗାଳି ରଖି କହିଲା, କି ମିଳିବ ଅବୁଝା ପଶୁକୁ ? ମନରେ ପାପ ପୂରେଇ ବସିଛୁ ବୋଲି ଠାକୁରେ କୋଳରେ ପିଲା ବଳଟେ ଦେଉନାହାନ୍ତି । ବଣିଆ ହାତରୁ ତା ଘରଣୀ ଟାଙ୍ଗିଆ ଟାଣିନେଲା । ଏକଥା ଗୋପନ ରହିଲା ନାହିଁ ।

ଅତସୀ ଆଉ କିଛି ପଚାରିଲା ନାହିଁ । ସେ ଶୁଣିଛି, କେତେ ଜାତିର ଅଜାତି କଥା ଓ ସେଥିପାଇଁ ଏଇ ମିଶିପଗୁଡ଼ାଙ୍କର କୌଶଳ, ସାହସ ଓ ପରାଭବ ।

କୃଷ୍ଣଠାକୁରେ ଭୂତ ହୋଇଥିଲେ ! ମାଳୁଣୀ ଓ କେଳୁଣୀ ହୋଇଥିଲେ । ଛି, ପରନାରୀର ଲୋଭ ଏ ମିଶିପଗୁଡ଼ାଙ୍କୁ କେତେ ନାଚ ନଚାଏ । କେତେ ଯାନବସ୍ଥା ଭରାଏ !

—ଶୁଣ ଅତସୀ, କେଉଁ ଗାଁର କଏ, ସୁଲଗଣ୍ଡି ମାର ମଝିରେ ଦୁଇ ବର୍ଷର ଅନ୍ତର୍ନିହିତ ପଞ୍ଚବରହ୍ମଣୀର ବାଂଦେଶୀ ପଡର ସ୍ୱପ୍ନପ୍ରତିମା ହୋଇ ରାତିଅଧରେ ଅନ୍ଧାରରେ ଓହ୍ଲାଏ ଉଠାଏ ଯା'ଆସ କରେ । ରାତିରେ ନାଟ, ସକାଳେ କବାଟ ଖୋଲିଲେ କେହି ନାହିଁ । ସପନରେ ବେତାଳ ଆଣି ପହଞ୍ଚାଇଦିଏ ପ୍ରାଣର ଦୋସର, କେଉଁ ଦୂର ବିଦେଶରୁ । ସତୀ ନାରୀର ମନକାମନା ପୂରଣ କରେ ।

ତୁଣ୍ଡ ଖୋଲି କହିହେବ ନାହିଁ । ସତୀର ମହିମା କଳିକାଳର କେହି ବୁଝିବେ ନାହିଁ । କହିବେ, ଦୋଷରୁଣୀ । ରାତିରେ ଆଲୁଅ ଜାଳି ଶୋଇଲେ ବେତାଳ ଆସେ ନାହିଁ, ଜଣ ବି ହୁଏ ନାହିଁ । ଅନ୍ଧାର କଲେ ଆଖି ମାଡ଼ିମାଡ଼ି ପଡ଼େ, ବେତାଳ ତାଙ୍କୁ ଆଣି ପହଞ୍ଚାଏ । ସେ ଆନନ୍ଦ ଦିଅନ୍ତି, କଥା କହନ୍ତି ନାହିଁ, ଜଣେ କଅଣ ପଚାରିଲେ ତୁଣ୍ଡରେ ହାତ ଦିଅନ୍ତି ।

ଅତସୀ ମନେପକାଇଲା, ସାଙ୍ଗମେଳରେ ଶୁଣିବା କଥା— ମଝିରେ ଦୁଇ ବର୍ଷ ଘର ଡେଇଁ ଗ୍ରେଟ ସ୍କୁଲଘରେ ଅର୍ଜୁନ ବାରିକ, ଯୁଆନ ସୁନ୍ଦର ଟୋକା,

ଅମାର ଜଗି ଶୁଏ । ମଝି ଢ'ବଖଣ୍ଡରେ ଓଳିଅମାନ ରଖାହୋଇଛି । ବନ୍ଧନ, ଅର୍ଜୁନ ଚଳଖ ଟୋକା । ହେଲେ, ଭୂତ କ ବେତାଳର ଦାଉରୁ ରକ୍ଷା ପାଇଲା ନାହିଁ ।

ଦିନେ ରାତିଅଧରେ ଭୂତଟାଏ ଆସି ତାକୁ ଶୂନ୍ୟେ ଶୂନ୍ୟେ ଉଠାଇ ସ୍ଥଳଘରର ଓଗ ଉପରକୁ ଟେକନେଲା । ନଦବାଉଳାରେ ପ୍ରାଣବ୍ୟାକୁଳରେ ସେ ପାଖ ଅଣ୍ଡାଳ ଗୁଅରେ ବନ୍ଧା ହୋଇଥିବା ବଡ଼ା ଫାଳିଆକୁ ଜାବୁଡ଼ି ଧରିଲା । ତଥାପି ଭୂତ ତା'କୁ ନ ଛାଡ଼େ । କହିଲା କୁଆଡ଼େ, ହଇରେ, ତୋର ଏତେ ଗରବ, ଟୋକାଟାକଳିଆ ହେମନ୍ତରେ ଠାକୁର ଠାକୁରାଣୀ ମାନିବୁ ନାହିଁ ? ବାପୁଲେଇ ଆସ୍ଥାନ ଅଡ଼କୁ ମୁହଁକରି ଠିଆହୋଇ ପ୍ରଣାମ କଲୁ ? ମୁଁ ତାଙ୍କର ବେତାଳ । ଦେଉଛି କେଞ୍ଚାଏ, ରହ । ଏତିକି କହି ମାଡ଼ିଦେଲା । ବତାଣ୍ଡି ତଳେ ପଡ଼ିଲା ।

ଅଣ୍ଟା ଭାଙ୍ଗିଲା । ବରଷେ କାଳ ବିଛଣାରେପଡ଼ି ଉଠିଲା ସିନା, ଅଣ୍ଟା ଆଉ ମଳଖି ହୁଏ ନାହିଁ । ଗୁଣିଆ ଯେତେବେଳେ ଲଙ୍କାମରିଚ ଗୁଣ୍ଡାର ଧୂଆଁ ଦେଇ ଅର୍ଜୁନାକୁ ଗୋଟାଏ ଘରେ ବନ୍ଦ କରି ସରୁ ବେତ ମାଡ଼ରେ ତା ଦେହରୁ ଭୂତ ଛଡ଼ାଉଥିଲା, ପ୍ରାଣବ୍ୟାକୁଳରେ ସେ ସତ କଥା ପ୍ରକାଶ କଲା । ଦିନେ କଥାକୁ ଗୋପନ, କଲେ ତାଙ୍କର ଗୁମର ଧୀରେ ଧୀରେ ଫିଟିଲା । କାନରୁ କାନ ଦୁନିଆ ରଟିଲା ।

କହିବାକୁ ମୋଟେ ଅଗ୍ରହ ନ ଥିଲେ ବି ଦିନେ ନିଦଭୁଲ ଦୁର୍ବଳ ମୁହୂର୍ତ୍ତରେ ଅତସୀର ଅପତର୍କ ଓଠରୁ ଏଇ ବେତାଳ ଗଳ୍ପଟି ଅସିତର କାନରେ ଖସିପଡ଼ିଥିଲା । ଅସିତ କହିଥିଲା, ଦେଖିଲ, ଯେତେ ଭୂତପ୍ରେତ ବେତାଳ ଗଳ୍ପ ଶୁଣିଛ, ତା ପଛରେ ଏମିତି କିଛି ଅସଲ ମରମକଥା ଛପି ରହିଥାଏ । ଖୋଳତାଡ଼ି ତଦନ୍ତ କଲେ ପ୍ରକୃତ କାରଣ ଜଣାପଡ଼େ । ବିଶ୍ୱାସ କଲେ ଭୟ, ନିଶା ଆନନ୍ଦ ଆସେ । ଅଡ଼ୁଆବେଳେ ଶୁଣିଲା କଥା ରୂପ ଧରେ । ଅଲଗା ରୂପ, ଡର ମନର ଜଣିଲା ରୂପ । ସେଇ ରୂପ ଯେ ଭୂତ, ପ୍ରେତ, ବେତାଳ ।

ଅତସୀ ଭାବିଲା, ବଣିଆ ସିନା ଭୂତ ଦେଖିଲା ନାହିଁ; କିନ୍ତୁ ଏ ସାହାବାଣୀର ହେତୁ ? ସେ ଆଜ ନିଜେ ଦେଖିଛି ।

ଶୋଇପଡ଼ିଲ କି ଅତସୀ ?

—ନାହିଁ ମ, ଭଗିଆ କଥା ଭାବୁଛି । ତୁମେ ମଣିପଗୁଡ଼ା ଅଢ଼ ଖେପ । ଭୂତପ୍ରେତଙ୍କ ଆଉ ଧରି ଏତେ ହନ୍ତପାନ୍ତ କର ? କିନ୍ତୁ ତମେ ପରା ନିଜ ଦେଖିଲା କଥା କହୁଥିଲ ? ସ୍ତ୍ରୀ ତା'ଠୁ ଶୁଣିଲା କଥା ମୁଁ ଅନେକ ଜାଣେ ।

ଶୁଣିଲା କଥା ଯାହା, ଦେଖିଲା କଥା ବି ସେଇଆ । ମକଦ୍ଦମା ତାରିଖ ଥାଏ ବୋଲି ପାହାନ୍ତାରୁ ଉଠି ମିଶ୍ରେ ମାମଲତ୍କାର ତାଙ୍କ ଅଶ୍ରିତ ମୁଦେଇ ଓ ସାକ୍ଷୀମାନଙ୍କ ସଙ୍ଗରେ ଧରି କଟକ ବାହାରିଲେ । ଖରାଦିନ, ସକାଳୁଆ ଜଟେଇ । ରାତିରେ ଭଲ ଅସରାଏ ବର୍ଷା ହୋଇଥିଲା । ମିଶ୍ରେ ଆଗେ ଆଗେ ଚାଲିଛନ୍ତି । ଚଷ୍ଟର ବାଟ । ଚଷ୍ଟର ପାଖ ବୁଢ଼ାବୁଢ଼ି ଗାଁ ମୁଣ୍ଡରେ ରାତି ପାହିଲା । ତିନି ଘଣ୍ଟା ଚାଲି ଚାଲି ଅନ୍ତତଃ ପାଞ୍ଚ କୋଶ ବାଟ ତ ସେ ଚାଲିଥିବେ ! ସେ ବାଟ କୁଆଡ଼େ ଉଭେଇଗଲା ?

ଗାଁ ମୁଣ୍ଡ ମଶାଣି ତୋଟାଆଡ଼ୁ ବଡ଼ପାଟି କରି କିଏ ହୁଙ୍କାରି ହସିଉଠିଲେ ଅତସୀ । ମିଶ୍ରେ ସିନା ଅଳପ ଅଫିମ ସେବନ୍ତି, ମୁଦେଇ ସିଏ ତାଙ୍କ ପଛରେ ଚାଲିଥିଲେ, ସେ ସିନା ଗଞ୍ଜେଇ ଚିଲମେ ଟାଣି ଦେଲାରେ ଦମ୍ ପୁରାଇ ମିଶ୍ରଙ୍କ ପଛେ ପଛେ ହଡ଼େ ହଡ଼େ ଚାଲୁଥିଲେ, ସାକ୍ଷୀମାନେ ତ ଭଲ ଲୋକ, ସଚ୍ଚୋଟ ଲୋକ, କଥାଭୁଷା ହୋଇ ଯାଉଥିଲେ । ବାଟବଣା ହେଲେ କାହିଁକି ?

ନିଜେ ମିଶ୍ରେ କହିଲେ, କିଏ ସେପରି ତାଙ୍କ କାନରେ କହୁଛି, ଏଇ ବାଟ, ଏଇ ବାଟ, ଆଗେଇ ଯା' । ମୁଦାଲା ଠାକୁରାଣୀ ପାଖରେ କାଳିଆବୋଦା ଦଳି ଦେଇ କର୍ଣ୍ଣପିଶାଚ ପଠାଇଥିଲା । କର୍ଣ୍ଣପିଶାଚ ଆଖିକୁ ଦିଶେ ନାହିଁ । ତମ ଅଜାଣତରେ କାନରେ କହେ । ସେ ଯାହା କହେ, ତୁମେ ସେଇଆ କରିବାକୁ ବାଧ୍ୟ ।

ମିଶ୍ରେ ଉପଦେଶ ଦେଲେ, ଆରେ, ମୁଦାଲ ଜୋରରେ ଠାକୁରାଣୀଙ୍କୁ ଆଗରୁ ଧରିପକାଇଲ । କୋର୍ଟଘର କି ବିଚାରଣା କରିବେ ? କର୍ଣ୍ଣପିଶାଚ ସାକ୍ଷୀମାନଙ୍କ କାନରେ କଅଣ ଶିଖାଇବ, ସେମାନେ ହାକିମଙ୍କ ଆଗରେ କଅଣ କହିବେ, କିଏ ଜାଣେ ? ଜିତିବାର ଆଶା ନାହିଁ । ମକଦ୍ଦମା ରଫା କର, ଚୁପୁଡ଼ା ଦି’ଟା ମାରିଥିଲ, ପାଞ୍ଚ ଆଙ୍ଗୁଠିର ଦାଗ କେବେଠୁଁ ଗାଲରୁ ଲିଭିଗଲାଣି ।

ମିଶ୍ରେ ମଧ୍ୟସ୍ଥ ହୋଇ ଦୁଇ ପକ୍ଷଙ୍କୁ ମିଳାଇଦେଲେ । ଦୁଇ ପକ୍ଷ ମିଶି ଠାକୁରାଣୀଙ୍କୁ ବାଇଦ ବାଜଣା କରି ଗାଧୋଇଦେଲେ । ମଧ୍ୟସ୍ଥ ଦୁଇଆଡ଼ୁ ପାଞ୍ଚ ପାଞ୍ଚ ଟଙ୍କା ଅଫିମଖିଆ ନେଲେ । ଗ୍ରାମରେ ଆମର ଜି ନାଥ ମେଳା ହେଲା । ଗନ୍ଧେଇଧୂଆଁର ଧୂମ ଉଠିଲା । ଠାକୁରାଣୀ ସନ୍ତୋଷ, ଭୋଳାନାଥ ଶିବ ବି ଖୁସି । ପିଶାଚମାନେ ନିଜ ନିଜର ଆସ୍ଥାନକୁ ଚାଲିଗଲେ ।

ଏ ତ ମୋର ଦେଖିବା କଥା ଓ ଜାଣିବା କଥା ଗୋ ଅତସୀ ! ପିଶାଚ ନାହାନ୍ତି ବୋଲି ଯେଉଁମାନେ କହନ୍ତି, ସେମାନଙ୍କୁ ନାସ୍ତିକ ବୋଲି କହିବ । ସେମାନେ ଦୟାର ପାତ୍ର ।

ଅତସୀ କର୍ଣ୍ଣପିଶାଚମାନଙ୍କ କଥା ଭାବୁଥିଲା । ସେ କର୍ଣ୍ଣପିଶାଚମାନଙ୍କ କରାମତି ସମ୍ବନ୍ଧରେ କେତେ ଗଳ୍ପ ଶୁଣିଛି । କେଜାଣି କେଉଁ ଗ୍ରାମରେ, ଅତି ନିରମାଖୀ ବଡଘରର କୁଳବୋହୂଟାକୁ ରାତିଅଧରେ ତାର ସ୍ୱାମୀ ପାଖରୁ ଉଠାଇନେଇ ନଈନେଇ ପାଙ୍କରେ ଶୁଆଇଲା । ନଣନ୍ଦ ଆର ଘରୁ ଆସି ଦେଖି କାବା ! କିଏ ଆଣିଚି ମ, ବୋହୂ ନା ତା ଗେରସ୍ତ ? ତେଲଦୀପ ଲିଭାଇ ନୂଆ ଭାଉଜର କାନ ଧରି ଘିଡ଼ି ଘିଡ଼ି କରି ଘୋଷାଡ଼ିନେଲା, ସାନଭାଇର ଘର ମୁକୁଳା ।

ନିଶା ଗଡ଼ୁଛି । ସମସ୍ତେ ଶୋଇଲେଣି । ଆର ଘରେ ନଣନ୍ଦ ବୁଢ଼ୀ-ମାଆର ଗୋଡ଼ ଆଉଁସୁଥିଲା । ଛୋଟ ଛୋଟ ପୁଅ ଦିଓଟି ତାର ଆଈ କୋଳରେ । ସ୍ୱାମୀ ଓ ପିଲାଙ୍କୁ ନେଇ ବୁଢ଼ାବୋଉକୁ ଦେଖିବାକୁ ସେ ଦି’ ଦିନ ହେଲା ଆସିଥିଲା । ଆଉ ଦିନେ ରହି ଶାଶୁଘର ଗାଁକୁ ଫେରିଯିବ । ତଟସ୍ଥ ହୋଇ ପଚାରିଲା, କି ଲୋ ! ସେ ଘରେ କାହିଁକି ଶୋଇଲୁ ? ମୋ ପାଖେ ବସି ଶାଶୁଙ୍କ ଗୋଡ଼ ଘଷୁଥିଲୁଟି, ଘୁମେଇଲୁ, ସେଇଥିପାଇଁ ତୋତେ ଯିବାକୁ କହିଲି ।

ନୂଆବୋହୂ କହୁଲା, ନିଦରେ ଟଳିଟଳି ଏ ଘର ଦ୍ୱାରବନ୍ଧକୁ ଆଇଲି ମ ଅପା ! ମତେ ଯେମିତି କାହାର ତୁନ ତୁନ କଥା ଶୁଭିଲା । ଛି ଲୋ ଅଲକ୍ଷଣୀ, ମଜା କରିବାକୁ ସେ ଘରେ ଆଜି ତୋ ନଣନ୍ଦେଇ ଶୋ'ଇଛୁ । କଡ଼ଘରେ ତୋ ଗେରସ୍ତ ଶୋଇଛୁ । ନିଦ ବାଉଳାରେ, ଆଲୁଅ ତ ନାହିଁ, ଅଣ୍ଡାଳି ଅଣ୍ଡାଳି ଗଲି । ଆସ୍ତେକିନା ପାଖରେ ଶୋଇପଡ଼ିଲି, ନିଦ ଘୋଟିଗଲା ।

—ହେ'ଇଥିବ । କବାଟ ବନ୍ଦ ନ ଥିଲେ ବି ଆଉଜା, ହୋଇଥିଲା । ତୋ ପିଠି ଉପରେ ତୋ ନଣନ୍ଦେଇଙ୍କର ହାତ । ତୋ ଗୋଡ଼ ଉପରେ ତାଙ୍କର ଗୋଡ଼ । ଘୁଙ୍ଗୁଡ଼ି ଯେ ଘରର ଚାଳ ଉଡ଼ିଯିବ ।

—ମତେ ମରଣ ନ ହେଲା ଯାହା ! ତୁମେ ଅପା ମତେ ଅନ୍ଧାରରେ ଠେଲି ପେଲି କଣ ପଠାଇଲ କାହିଁକି ? ଦୀପ ଦେଖାଇଲ ନାହିଁ ? ନଣନ୍ଦେଇ, କି ତମ ଭାଇ ଜାଣିଲେ କଅଣ ଭାବିବେ ? ମରଣଠୁଁ ଯେ ଲାଜ ବଳିବ ! ମୁଁ ନିଶ୍ଚେ ଜୀବନ ହାରିଦେବି ।

—ଇଲୋ, ଜାଣୁଛୁ କାହିଁକି ? ଗୋଟାଗ୍ରାଏ ଅବୁଝୁ କାହିଁକି ? ସିଏ ତୋ ବାପା ପଣିକା । ତୋର କି ଦୋଷ ? ଏସବୁ କର୍ଣ୍ଣପିଶାଚୀର କାଣ୍ଡ । ମାଇପଙ୍କ ହାଟ ଦେଖିବାକୁ ସେ ଏମିତି କରାଏ । ନଡ଼ିଆଗଛର ବାହୁଙ୍ଗା ଉପରେ ବସି ଟହଟହ ହସୁଥାଏ । ତୁ ଯିବୁଟି ଶୋଇବୁ । କିଏ କାହିଁକି ଜାଣିବ ଯେ ତତେ ଲାଜସରମ ହେବ ? ରହ ଥା, କାଲି କର୍ଣ୍ଣପିଶାଚୀର ମଜା ଦେଖୁଛୁ । ମନ୍ତ୍ରପାଣି ଆଣି ଘର ବାହାର ଛିଞ୍ଚିବି, ଆଉ ଥରେ ଏ ଗାଇଁରେ ପଶିପାରିବ ନାହିଁ !

ନଣନ୍ଦ ତାର ପିଠି ଆଉଁସିଲେ । ଆଖିର ଲୁହ ପୋଛିଲେ । ମୁଣ୍ଡରେ ମୁଣ୍ଡ ଘଷି କହିଲେ, ଓଲମିଟା ! ଯା, ମଶାଣ ଟେକି ପଲଙ୍କ ଉପରେ ଶୋଇପଡ଼ିବୁ ।

ଟିକି ଭାଉଜକୁ ଘରେ ପୁରାଇ କବାଟ ଆଉଜାଇଦେଲେ ଗୋ, କିନ୍ତୁ କାହା ମୁହଁ କେବେ ଖୋଲିଲା ଯେ ଭାଲଙ୍ଗେ କଥା ରାଜ୍ୟ ରାଜ୍ୟରେ ପ୍ରଘଟିଲା ।

—ଟିକି ବୋହୂର ମୁହଁ ତ କେବେ ଖୋଲି ନ ଥିବ ଗୋ ଅଡପୀ, ସେଇ ସ୍ନେହମୟୀ ଅପା, କେବେ ପୁଣି ଆଉ କେଉଁ କର୍ଣ୍ଣପିଶାଚର ବୋଲରେ ପଡ଼ିଥିବେ ! ସେ ଅସି କାନରେ ଫୁଙ୍କି ଥିବ, କହୁନୁ, କହିଦେଉନୁ ? ତୋ ଗେରସ୍ତ ବାହାଦୁରୀ

କାଢ଼ି କଥା କହୁଛ । ପର, ଝିଅବୋହୂଙ୍କ ଗୁଣ ବାହୁନୁଛ । ଏତେକବେଳେ କହ ଯେ ଜଳଠା ବାହାପିଆ ଜବତ ହେବ । ଆଉ ଦନେ ପରଘର ଚର୍ଚ୍ଚା କରବ ନାହିଁ ।

ଗୁଣମଣି ଅପା କହଦେଇଥିଲେ । ଥରେ ଯଦ କଥା ପଦାକୁ ବାହାରିଆସେ ତୋ ଅଡ଼ଯୀ, ବନ୍ଧଭଙ୍ଗା ପାଣି ପର ସେ କେଡ଼େ ବେଗରେ ଧ୍ବଂଶଆଡ଼େ ଛୁଟେ ! ଧନ୍ୟ ସେଇ ଦୁଇ ପରାଣୀ କର୍ଣ୍ଣପିଶାଚ ଓ କର୍ଣ୍ଣପିଶାଚୀ ! କେତେ ଯେ ତାଙ୍କର ପୁଅ-ବୋହୂ, ନାତ, ନାତୁଣୀ, କେହି କଳନା କରିପାରିଲେ ନାହିଁ । ସବୁବେଳେ ସବୁଠି ସେମାନେ ଏଇ ଶୂନ୍ୟରେ ଥାଆନ୍ତି । ବାଗ ଖୋଜୁଥାଆନ୍ତି । ସୁବଧା ବେଳ ଦେଖି କାନରେ କହନ୍ତି । ତୁଣ୍ଡରୁ ବାହାରନ୍ତି, କାନରେ ପଶନ୍ତି, ତୁଣ୍ଡରେ ଆସ୍ଥାନ ମାଡ଼ି ବସନ୍ତି ।

—କାହା ତୁଣ୍ଡରେ ?

—କା'ହା ତୁଣ୍ଡରେ ନୁହେଁ ଯେ ! ତାଙ୍କୁ ତୁଣ୍ଡପିଶାଚ କ ତୁଣ୍ଡପିଶାଚୀ ନାମ ଦେଲେ ବ ଚଳିବ । ତୁଣ୍ଡରୁ ବାହାରି କାନରେ ପଶନ୍ତି, ପୁଣି କାନରୁ ଫେରି କରି ଖୋଜନ୍ତି ତୁଣ୍ଡକୁ, ଏଇ ଲୀଳା ତାଙ୍କର ଲାଗିଥାଏ ।

—ମାଟିଆ ବୋଲି ଆଉ ଜାତେ ଭୂତପିଲି ଅଛନ୍ତି । ସେମାନେ ସଦ୍ୟ-ପୋଖତା ଖୋଜୁଥାଆନ୍ତି । ସୁବଧା ପାଇଲେ ଟିକାପିଲାର ରୂପ ଧରି ରାତଅଧରେ କେଉଁ ମା କୋଳରେ ପଶନ୍ତି । ତାର ଟିକି ଉତାଣି ପିଲାକୁ କଡ଼କୁ ଆଡ଼େଇ ମା' ଥନରେ ମୁହଁ ଲଗାଇ ସବୁ କ୍ଷୀର ଶୋଷି ଖାଆନ୍ତି । ରାତ ନ ପାହୁଣୁ ଅନ୍ତର୍ଦ୍ଧାନ ହୁଅନ୍ତି ।

ଏକଥା କେହି ଜାଣିପାରନ୍ତି ନାହିଁ । ପିଲା ଦୁର୍ବଳ ହୁଏ ଦନୁଦନ, ଅତ ଦୁର୍ବଳ ହୋଇ କେହି କେହି ଚଉଦନ ଲାଗି ଆଖି ବୁଜିଦଅନ୍ତି । ମାଆ ତ ପିଲାକୁ ହରାଏ, ମାଟିଆ ଭୂତର ଦାଉ ତା ଉପରେ ବୋଲି ଘରଲୋକେ ଧଡ଼ିଆ ଧେଡ଼ିଙ୍କ ବୋହୂଟି ଉପରେ ଅତ୍ୟାଚାର କରନ୍ତି । ଗଡ଼ଜାତ ରାଜ୍ୟମାନଙ୍କରେ ଏଇ ମାଟିଆ ଭୂତଙ୍କ ପ୍ରଭାବ ବେଶି ।

—କାଏ ଦେଖିଛ ଭଲା ସେମାନଙ୍କୁ

—ଥିଲେ ନ ଦେଖିବେ ! ବାରଘର ଭଙ୍ଗେଇଲା ନଗର ନାଉଛି, ପଦ୍ମଶ୍ରୀକାନ୍ତର ମାଇପେ କେଇ ଜଣ, ଆଖିକାନ ଛୁଇଁ, ହଲପ କରି କହନ୍ତି ଯେ ସେମାନେ ଦେଖିଛନ୍ତି । ଦୁର୍ବଳ ହେଉ, କି ବାହାରକୁ ଦେଖିବାକୁ ସ୍ୱାସ୍ଥ୍ୟବନ୍ତ ହେଉ, କୋଟିଏ ନାରୀର ସ୍ତନ ଅଛନ୍ତି, ଯେଉଁମାନଙ୍କର କ୍ଷୀର ହୁଏ ନାହିଁ । ଏହି ନୂଆ ପୋଷଣର ଉପଯୁକ୍ତ ଯତ୍ନ ନେଇ ଭଲ ଖାଇବାକୁ ଦେଲେ କିନା କ୍ଷୀର ହେବ ? ଭଲ ଜାଣିଲା ଡାକ୍ତର, କବିରାଜଙ୍କୁ ଦେଖାଇ ଔଷଧର ବ୍ୟବସ୍ଥା କଲେ କ୍ଷୀର ନ ହୋଇ ଯିବ କୁଆଡ଼େ ?

ଅଶିକ୍ଷିତ ଗାଁ-ଗୁଣିଆ ଆସି ଝଡ଼ାଇବେ । ଦେହରେ, ଥନରେ ଚଉଁ ଦିଆଇବେ । ମନ୍ତ୍ର ଭୁଟୁକା ଔଷଦ ଖୁଆଇବେ । ଏଥିରେ ପିଲା ତ ମରିବାର କଥା, ମାଆ ଯେ ବଞ୍ଚିଯାଏ, ସେତକ କେବଳ ତା ବାପମାଆଙ୍କ ସୁକୃତରୁ । ନିଜ ଅଜ୍ଞତା ଓ ପ୍ରମାଦକୁ ଘୋଡ଼ାଇବାକୁ ସେମାନେ ମାଟିଆ ଦେବତାକୁ ମନରୁ ଗଢ଼ି ରୂପ ଦିଅନ୍ତି ।

ଶ୍ରୀର ସାକ୍ଷୀ ମଦୁଆ ପରି ଜଣେ ଜୃଟକପଟୀ ନଗରନାଉଡ଼ିର ଆଉ ପାଞ୍ଚଟା ସଙ୍ଗିନୀ ସାକ୍ଷୀ କୁଟିଯାଆନ୍ତି । ପ୍ରଚାର କରନ୍ତି, ମୁଁ ଦେଖିଛି ଗୋ, କି ସୁନ୍ଦର ବାଳଗୋପାଳ ପରି ସ୍ୱର୍ଣ୍ଣପାଣ୍ଡବର୍ଣ୍ଣର ପିଲାଟିଏ ! ସେଇ ଘରୁ ବାହାରି ଚାଲି ପରି ଛୁଟି ପଳାଇଲା । ଶୂନ୍ୟେ ଶୂନ୍ୟେ ଧାଇଁଥାଏ, ତଳେ ଗୋଡ଼ ଲାଗୁ ନ ଥାଏ । ସେଇ ତ 'ମାଟିଆ' ଆସି ଛୁଉଁଛି !

ତାହା ମିଛ କହି ପରକିଅକୁ ଉଚ୍ଛେଇ ଦିଅନ୍ତି ?

—ମିଛ ନାହିଁକି ହେବ ? ଦୁନିଆରେ ଲୋକେ କେତେ କେତେ ବିଶ୍ୱାସ କରନ୍ତି । ଭୂତପିଶାଚ ଓ କର୍ଣ୍ଣପିଶାଚଙ୍କର ଏ ଶିକ୍ଷା । ମୋର ମନେହୁଏ, ଏଇ ଭୂତ ପ୍ରେତ, ବେତାଳ, ପିଶାଚ, ମାଟିଆମାନଙ୍କର ବାସସ୍ଥାନ ହେଉଛି କୁଚର୍ଚ୍ଚୀ କେତେକଙ୍କ କାରସାଦ, ଆଉ ତାଙ୍କର ଅବୋଧ ଚେଲାଏ । ତାଙ୍କ ପାଇଁ ଲୋଡ଼ା ଝାଲ ଦୁହ୍ମଜ ବାଡ଼ା ।

ଅଡସୀର ମନରୁ ଭୂତ, ପ୍ରେତ, ପିଶାଚ, ବେତାଳ ଓ ମାଟିଆ ଡର ହୁଗୁଳ ଆସୁଥିଲା । ଛାତିର ସ୍ପନ୍ଦନ ସମତାଳ ହୋଇଆସିଲା । ସେ ବୁଝିବାକୁ ଚେଷ୍ଟା କରୁଥିଲା ସେ ଏସବୁ ମନର ବିକାର । ପିଲାଦିନେ ସେ ଅନ୍ଧାର ଗୁଡ଼ୁଗୁଡ଼ୁକୁ ଅଗଣା ପାଖ ବଉଳଗଛ ତଳ ଛାଇରେ, ସଞ୍ଜବେଳେ, ମେଘମାଳଭରା ଛିଣ୍ଡି ଛିଣ୍ଡିକା ଆକାଶର ଖଣ୍ଡିଆ ଜହ୍ନର ଫିକାଳିଆ ଆଲୁଅରେ ଦେଖି ଗୁଙ୍ଗୁଆ ହୋଇ ଧାଇଁଯାଇଥିଲା ।

ହଁ, ସେ ଦେଖିଛି । ଅର୍ଦ୍ଧାଙ୍ଗିଆ ମଣିଷ ତ ନୁହେଁ, ରାକ୍ଷସ ପରି ଲମ୍ବହୋଇ ସେ ବଉଳଗଛକୁ ଆଉଜି ଠିଆ ହୋଇଥାଏ । ବ୍ରହ୍ମରାକ୍ଷସ ହେବ କି କଅଣ ! ବଡ଼ ବଡ଼ ହାତ ଦୁଇଟା ଏପାଖ ସେପାଖ ହଲାଉଥାଏ । ସେ ନିଜେ ଦେଖିଛି । ଶୁଣିବା କଥା ନୁହେ । ଦଶ କି ଏଗାର ବର୍ଷର ଝିଅ ସେ ହୋଇଥିଲା ।

ଗୁଙ୍ଗୁଆ ହୋଇ ଧାଇଁଗଲା । ରୋଷଘର ପାଖରେ ବାପା ଠିଆ ହୋଇ ବୋଉଙ୍କୁ କଅଣ କହୁଥିଲେ । ଅଡସୀ ଚରଚରେଇ ଉଠିଲା । ବାପାଙ୍କୁ କୁଣ୍ଢାଇ ଧରିଲା ।

ପଚାରିଲେ, କଲେ, କଥା କଅଣ ?

ସେ ଗୋଟାଗୁଏଁ ଥରୁଥାଏ । ପାଟିରୁ କଥା ବାହାରୁ ନ ଥାଏ ।

ବୋଉ ବିରକ୍ତ ହୋଇ କହିଲେ, ଏଡ଼େ ଝିଅଟାଏ ହେଲୁଣି, ଏମିତି ଡରୁଛୁ କଅଣ ? ନଳାମୁହଁକୁ ନ ଯାଇ ବାରଆଡ଼କୁ ଏକା ଯାଉ କାହିଁକି ?

—ଡର-ଡର ଅଡସୀ କହିଲା, ଅନ୍ଧାର ଗୁଡୁଗୁଡ଼ ।

—ତୁଆ ଲୋ ଅଲକ୍ଷ୍ମୀ, ଅନ୍ଧାର ଗୁଡ଼ୁଗୁଡ଼ୁ କଏ ଦେଖିଛି ?

—ଠୁ ତ କହୁ ଲୋ ବୋଉ ! ସେ ଭୂତ ପରଜା, ପୁଣି କେତେ ଲେଟ ହୋଇଯାଏ, ରୋଷଘରେ ପଶି ହାଣ୍ଡି ଖୁଡ଼ୁ ଖୁଡ଼ୁ କରେ, ଯାହା ଥାଏ ସବୁ ଖାଇଦିଏ ।

—ବୋଉ ହସିଦେଇ କହିଲା, ଅଠକ୍ଲାସ ଯାଏ ପାଠ ପଢ଼ିଲୁ, କୋଉ ଦିନଦନର କଥା ମନେପକାଇ କଅଁଳେଇ ଦେଖି ଭ୍ରମରଅାଁ ହେଉଛୁ ? ନ ଶୋଇ ଘୁରୁରୁ ଘୁରୁରୁ ହୁଅ କ ଦୁଷ୍ଟାମୀ କର ବୋଲି ଡରଉବାକୁ ମୁଁ ସେମିତ କହୁଥିଲି । ହାଣ୍ଡି ଖୁଡ଼୍ରୁ ଖୁଡ଼୍ରୁ ବଳେଇ କରେ । ଭୂଆଁ ବଳେଇ, କାଳଅଟା, ଅଖି ଜଅାଁପରି ଜଳୁଥାଏ । ଦେଖିଲେ ଡର ମାଡ଼େ, କେଉଁ ଛାତକରେ କାନ୍ଥ ଉପରୁ ଆସି ସବୁ ଖାଇଦିଏ ।

ବାପା ଦରକୁଆ ସ୍ୱରରେ କହିଲେ—ମିଛକଥା କହି ପିଲାଦିନରୁ ଏମାନଙ୍କ ମନରେ ଡରଭୟ ଖୁଦାଦେଉଛ । ଏଗାର ବର୍ଷର ଝିଅ, ଘୁଇଟାଏ, ବଳେଇଟାଏ ଦେଖି କପରି ଭୟରେ ଭ୍ରମରଅାଁ ହୋଇ ଧାଇଁଆସିଛି ଦେଖ ! ଯେତେ କହିଲେ ତୁମେ ମାନିବ ନାହିଁ, ପର ଘରେ ସେ କେମିତି ଚଳିବ ?

ବୋଉ ତମତମ ହୋଇ କହିଲା—ସେଇ କଥା ତୁମେ ବୁଝୁନ ? ଦେହ ଇସ୍ କଲ ହେଲେ, ଡର ମାଡ଼ିଲେ ଏଡ଼େ ଏଡ଼େ ପିଲାଟିମାନଙ୍କୁ ନେଇ ପାଖରେ ଶୁଆଇବ । ଭୂତ ଉପରେ ପକାଇବ, କହ ତ, ସେମାନେ କ ମଣିଷ ହେବେ ? ଯାଆ ଲୋ, ପଢ଼ାଘରେ ଅଲୁଅ ରଖାହେଲଣି । ଟୁନା ବସି ପଢ଼ୁଛି, ତୁ ଯା ପଢ଼ିବୁ । ଧୀରୁ ଖୁଡ଼ୀ ପାଖରେ ବସି ପୁଣି ଭୂତଗପ ଶୁଣୁଥିବ । ତାଙ୍କୁ ଡାକନରୁ, ଏଇ ଭୂତପ୍ରେତ ଗପ ଶୁଣିକରି ରାତିରେ ବାଲବାଲଉଛି ସେ ଟୋକୀଟା ।

ଅଡପୀ ଦୁଇ ଚାରିପାଦ ଯାଇ ଡରରେ ପୁଣି ଫେରିଆସିଲା । ଏଥର ବୋଉର ହାତ ଧରି ତୁନି ତୁନି କହିଲା, ପଢ଼ାଘରକୁ ତୁ ମୋ ସଙ୍ଗେ ଆ । ମତେ ଡର ମାଡ଼ୁଛି ।

—କଲେ କାହିଁକି ? ରହ, ଗୁଣିଆଠୁ ଗୋଟାଏ ତେଉଁରିଆ ଆଣି କାଲି ତୋ ହାତରେ ବାନ୍ଧିଦେବ ।

—ମୁଁ ଜଳେ ଦେଖିଲି, ବୋଉ ! ଅନ୍ଧାର ଗୁଡ଼ୁଗୁଡ଼ି ନ ହୋଇସାରେ, ସେ ଭୂତ, କ ବ୍ରହ୍ମରାକ୍ଷସ । ବଉଳଗଛ ପାଖରେ ଠିଆହୋଇଛି, ଅଧା ତାଳଗଛ ଉଚ । ହାତ ଦୁଇଟା ହଲଉଛି, ହଁ, ବୋଉ !

ବୋଉକୁ ବି ଡର ମାଡ଼ିଲାଣି । ଅତସୀର ହାତକୁ ସେ କଟମଟ କରି ଧରିଲେଣି । କହିଲେ, ଏଁ ? ହଇ ହୋ, ମୋ ପିଲାଏ ମିଛ କହନ୍ତି ନାହିଁ । ଡାକିଦିଅ ଗୋବିନ୍ଦାକୁ, ଲଣ୍ଠନ ନେଇ ଦେଖିଆସୁ । ବ୍ର-ହ୍ମ-ରା-କ୍ଷ-ସ ! ହୋଇଥିବ, ଆମ ବାରି ସେପାଖ ଗୋକୁଳର ପୁରୁଣା ଡିହରେ ସେ ଥିଲା ।

ଅତସୀର ବାପା ଆକାଶର ପାତଳ ମେଘ ଓ ଜହ୍ନକୁ ଅନାଇ କହିଲେ, ଗୋବିନ୍ଦକୁ ଡାକିବା ଦରକାର ନାହିଁ, ମୁଁ ନିଜେ ଯାଇଁ ଦେଖିଆସେ । ବ୍ରହ୍ମରାକ୍ଷସ ତଡ଼ିବାର ମନ୍ତ୍ର ମୁଁ ଶିଖିଛି । ଯା' କହିଲେ ଯିବ, ଆ' କହିଲେ ଆସିବ । ଅତସୀ ମୋ ସାଙ୍ଗରେ ଆସୁ, ତୁମେ ବି ଆସ ।

ତାଙ୍କ ପଛେ ପଛେ ଅତସୀ ଓ ତା'ର ବୋଉ ବାରିକୁ ଗଲେ । ଅତସୀ ଦେଖାଇଦେଲା ବଉଳଗଛକୁ । ଏବଯାଏ ସେ ସେମିତି ଗଛକୁ ଆଉଜି ଠିଆହୋଇଛି । ହ ତ ହଲଉଛି ।

ଦେଖିବା ସଙ୍ଗେ ସଙ୍ଗେ ବାପା ଠୋ ଠୋ ହସି ଉଠିଲେ । କହିଲେ, ମୋ ଝିଅ ମିଛ କହିନାହିଁ ସେ ଭୁଲ ବୁଝିଛି । ସେଇଟା ପଛୁଆଣି ଜହ୍ନରେ ଆମ ଡେଙ୍ଗା ନଡ଼ିଆଗଛର ଛାଇ । ହେଇଟି, ବାହୁଙ୍ଗା ହଲିଲେ ହାତ ହଲଇଲା ପରି ଦିଶୁଛି, ଆସ, ଦେଖିବ ।

ସତ କଥା । ଆମେ କେଡ଼େ ନିର୍ବୋଧ ! ଗୋକୁଳ ଡିହର ବ୍ରହ୍ମରାକ୍ଷସ ସେଇଠି ଥାଇପାରେ, କିନ୍ତୁ, ବଉଳଗଛ ଉପରେ ପଡ଼ିଥିଲା ନଡ଼ିଆ ଗଛର ଛାଇ ।

ବାପା କହିଲେ ଜଣେ ଡରୁଆ ଛୁଆର ବାହୁରେ ବୁଢ଼ିଆ ଶିକ୍ଷକ ମନ୍ତ୍ରିଲା କାଗଜ ମୋଡ଼ିକରି ବାନ୍ଧିଲେ । କହିଲେ, ଭୂତପ୍ରେତ ଦେଖିଲେ ଡରିବୁ ନାହିଁ । ଫେରିଆସି ହାତ ପାପୁଲିରେ କଳା ବୋଳି ଧାଇଁଯିବୁ । ମୋ ନାମ ସ୍ମରଣ କରି ମାରିବୁ ବ୍ରହ୍ମଚୂଡ଼ା । ସେ ପଳାଇବ, ତୁ ଧାଇଁଆସି ସଙ୍ଗେ ସଙ୍ଗେ ମତେ ଖବର ଦେବୁ, ଯେତେ ରାତି ହେଉ, ଚିନ୍ତା ନାହିଁ ।

ଦିନେ ଛୁଆ ସେଇଆ କଲା । ରାତି ଦୁ'ପହରରେ ଧଇଁସଇଁ ହୋଇ ଧାଇଁଆସି ଶିକ୍ଷକଙ୍କୁ ଉଠାଇଲା । ଆଲୁଅ ଜାଳି ଶିକ୍ଷକ ଛୁଆ ଆଡ଼କୁ ତାଙ୍କର ବଡ଼ ଅଣନାଟି

ନଚାଇଦେଲେ । ନିଜ ମୁହଁକୁ ନୁହଁ ଟୁଣ୍ଟି ଚିପି, ଚିତ୍ ହୋଇ ପଡ଼ିଗଲି, ମୋ ଗାଲରେ ପାଞ୍ଚ ଆଙ୍ଗୁଠିର କଳାଦାଗ ବସିଲା କିପରି ? ମୁଁ ଆମ ଦାଣ୍ଡପାଖ କୂଅମୂଳ କଦମ୍ବ ଗଛରେ ଥିବା ବ୍ରହ୍ମରାକ୍ଷସକୁ କହିଦେବି ଗୋଟାଏ କାବୁଡ଼ା ମାରି ଆପଣଙ୍କ ପାଖକୁ ଧାଇଁଆସିଛୁ ।

—ଶିକ୍ଷକ ତାକୁ କି ଉତ୍ତର ଦେଲେ, ବାପା ?

—କହିଲେ, ତୋ ମନର ଡର ତୋତେ ବାହାରେ ଭୂତପ୍ରେତ, ରାକ୍ଷସ ପରି ଦିଶନ୍ତି । ବ୍ରହ୍ମରାକ୍ଷସ ବୋଲି ତୁ ନିଜକୁ ନିଜେ ବ୍ରହ୍ମଚପୁଡ଼ା ମାରିଛୁ । ଆଲୋ ଅତସୀ, ସେସବୁ ନିଜ ମନର ବିକାର । ଡରିଲେ ଆସି ଆଗରେ ଠିଆହୁଅନ୍ତି । ନ ଡରିଲେ ପାଖରେ ପଶନ୍ତି ନାହିଁ ।

ଅତସୀ କହିବାକୁ ଲାଗିଲା, ସବୁ ମିଛ । ତା ମନରୁ ଡର ଛାଡ଼ିଗଲା । ଅସିତର କଡ଼ ଉପରୁ ହାତ ଖସାଇ ଚିତ୍‌ହୋଇ ଶୋଇଲା । କହିଲା, ସବୁ ମିଛ । ଭୂତପ୍ରେତ ନାହାନ୍ତି । ଏଥର ତୁମେ ନିଶ୍ଚିନ୍ତ ହୋଇ ଶୋଇପଡ଼ । ମୋତେ ଆଉ ଡର ମାଡ଼ିବ ନାହିଁ ।

—ଭଲ କଥା । ତେବେ, ଏକାଥରେ ମିଛ ବୋଲି କହିହେବ ନାହିଁ । କେହି କେହି ଦେଖିଛନ୍ତି ବୋଲି କହନ୍ତି । ତୁମକୁ ଛାଇନିଦ ମାଡ଼ିଆସୁଥିଲା, କିନ୍ତୁ ଶୋଇ ନ ଥିଲ ତ । ନିଜେ ଦେଖିଲି, ସେଇ କାନ୍ଥରୁ ପ୍ରେତୁଣୀ ବାହାରିଲା, ପୁଣି ସେଇ କାନ୍ଥରେ ମିଶି ହୋଇଗଲା ।

—ସା-ହା-ବା-ଣୀ ?

—ହଁ । ମୋ ଜୀବନରେ ଥରେ ଅଧେ ଯେ ମୁଁ ନ ଦେଖିଛି, ଏପରି ନୁହେଁ । ନିଜ ଲୋକଙ୍କ ମୁହଁରୁ ସେମାନଙ୍କର ଦେଖିଲା କଥା କାନରେ ଶୁଣିଛି । ବିଶ୍ୱାସ ନ କରି ରହିହେବ ନାହିଁ । ବାପ୍‌ରେ ବାପ୍, କହିଲା ଆଗରୁ ସେ ସବୁ କଥା ମନେ ପକାଇଲେ ଦେହ ଶୀତେଇ ଉଠୁଛି । ଛାତି ଥର ଥର ହୋଇ କମ୍ପୁଛି । ସତ କି ମିଛ ତୁମେ ପରୀକ୍ଷା କରି ଦେଖ ।

ଅତସୀର ଦେହ ଶୀତେଇ ଉଠିଲା । ଛାତିର ସ୍ପନ୍ଦନ ଦ୍ରୁତ ହେଲା । କେତେ ଘଟଣା ସତ ହୋଇପାରେ, ଆଉ କେତେ ଭ୍ରମ ଧାରଣା ହୋଇପାରେ । ତା ବୋଲି ସେ ସବୁ ଘଟଣାକୁ ମିଛ ଭାବି ଉଡ଼ାଇ ଦେଇହେବ, ଏହା ନୁହେଁ ।

ଭୂତପ୍ରେତ ସବୁ ମିଛ, ଦେବଦେବୀ ମଧ୍ୟ ମିଛ । ଅତସୀର ବାପଘର ଗ୍ରାମରେ ରଙ୍ଗିଆ ବାରିକର ଘରଣୀ ରାଣୀ ଭଣ୍ଡାରୁଣୀଙ୍କୁ କପଟ ହାଡ଼ୁଆଇ ଠାକୁରାଣୀ ଲାଗନ୍ତି । ଏହା ତ ଦେଖିଲା କଥା, ଶୁଣିଲା କଥା ନୁହେଁ । ଠାକୁରାଣୀଙ୍କ ହଳଦୀପାଣିରେ ସ୍ନାନ କରି, ତାଙ୍କ ଦେହରେ ଘିଅସିନ୍ଦୂର ବୋଳି, ପଣା ମଦଏ ଭୋଗ ଦେଲାବେଳେ ଯଦି କେଉଁଠି ବିଧିବିଧାନରେ ଭୁଲ ହୁଏ, କୌଣସି ଅନାଚାର ହୋଇଥାଏ, ତେବେ ଠାକୁରାଣୀ ରାଣୀକୁ ରାତିରେ ସପନାନ୍ତି ।

--- ଠାକୁରାଣୀ କଅଣ ସପନାନ୍ତି, ଅତସୀ ?

ରାତିଅଧରେ ଆସି ରାଣୀ ବାରିକାଣୀ ଆଗରେ ଠିଆହୋଇ ଯାଆନ୍ତି ମା । ନା ଭୟଙ୍କର ମୂର୍ତ୍ତି ! ଦେଖିଲେ ଚେତନା ହଜିଯିବ । ରାଣୀ କହେ, ହାତରୁ ତାଙ୍କର କାଚ ଝମଝମ ଶୁଭେ । ଗଙ୍ଗଶିଉଳି ଫୁଲର ମଧୁର ମହକରେ ଘର ଭିତର ଆଗ ବାସିଉଠେ । ସେଥିରୁ ଛୁଟେ ଝୁଣା-ଗୋଗୁଳର ଧୂପଗନ୍ଧ ।

ଥରିଥରି କହି ରାଣୀ କହେ, ମା' ମାନେ ଲୋ, ସପନରେ ମୋ ନିଦ ଭାଙ୍ଗିଗଲା । ମୁଁ ଆଖି ଖୋଲି ଦେଖେ, କଳା ମିଚମିଚ ଚକଚକ ମୁଗୁନିପଥର ଭଳି ଦେହ ଓ ମୁହଁ । ସେ ମୁହଁରେ ଆଖି ଦିଓଟି ସଞ୍ଜତରା ପରି ଦାଉଦାଉ ଜଳୁଥାଏ, କି ଶୋଭା ମୁହଁ ! ତିନି ଭୁବନ ମୋହିବ । ସେ ମୁହଁର ଶୋଭା ବର୍ଣ୍ଣିବାକୁ ମୋର ଭାଷା ନାହିଁ ! ହାତରେ କଳାସୁନାର କାଚ, ପାପୁଲି ପାଖରୁ କହୁଣି ଯାଏ ଲାଗିଛି, ବାହୁରେ ବାହୁଟି । ଗଳାରେ ଦଶସରିଆ ହାର ବେକଠାରୁ ନାହିଯାଏ ଲମ୍ବିଛି । ସେଥିରେ କଳାମାଣିକ ସବୁ ଖଞ୍ଜା ହୋଇଛି । ମଥାରେ କଳାହୀରାର ମଥାମଣି । ସବୁ କାଳିଆ ସୁନାରେ ଗଢ଼ା । ପାଦର ନୂପୁର ବି ସେଇଆ ।

ବିଶ୍ୱକର୍ମା ଗଢ଼ିଛି ଗୋ ମାଆମାନେ ! ଧର୍ମ ଦେବତା ଯାହାର ପୁଅ, ତାକୁ ବାହୁବ କିଏ ? ନିଜେ ନାରାୟଣ ନରସିଂହ, ତ୍ରିଭୁବନର ରଜା, ପାଖରେ ବସି

କେଡ଼େ ସ୍ନେହରେ ଖଇରବୋହୂଙ୍କ ପାଖେ ଗଢେଇଥିଲେ । ମହାଦେବ ଯେ ଭୋଳାନାଥ ! ସାପମାନେ ତାଙ୍କ ଗହଣାଗଣ୍ଠି । ମାଇପଙ୍କ ମନକଥା ସେ ବୁଝନ୍ତି ନାହିଁ । ଦୁର୍ଗା ଠାକୁରାଣୀ ରୁଷିକରି ପଳାଇଆସି ଆମ ନଈବନ୍ଧ ଉପରେ କୋଚିଲା ବଣରେ ରହିଲେ । ସେଇଠି ହାଡ଼ୁବାଈ ନାମ ଧଇଲେ । ଶିବ ଖୋଜି ଖୋଜି ନସ୍ତ ନ୍ତ ।

—ଅଲେ ବାଣବାଣୀ, କଳାସୁନା, କଳା ମୋତି, ମାଣିକ୍, ଘର କଥଣ ଏ ସଂସାରରେ ଅଛି ?

ଥିବ କି ନ ଥିବ ମୋତେ ଜଣାନାହିଁ ଗୋ ମାଆମାନେ ! ଆମ ଠାକୁରାଣୀଙ୍କ ବାହୁନା ଶୁଣି ଲକ୍ଷ୍ମୀ ସରସ୍ୱତୀ ଧାଇଁ ଆସିଲେ । ସାନ ଜାଆଟା । ନଅଟା ନୁହେଁ; ଛଟା ନୁହେଁ; ଗେ ଟିଏ ବୋଲ ଦଅର । ଗୋଟିଏ ବୋଲ ସୁକୁମାରୀ ସୁନାବରନୀ, ଚିପୁର ମୋହିନୀ. ଗେଲବସରୀ ଜାଆ । ତା ଆଖିରେ ଲୁହ ଦେଖି ଲକ୍ଷ୍ମୀ ସରସ୍ୱତୀ ସହରୁଣୀପଣ ଭୁଲିଲେ । ତା ଆଖିରୁ ଲୋତକ ପୋଛି ପକାଇଲେ ।

ଲକ୍ଷ୍ମୀ ତାଙ୍କୁ କୋଳକୁ ନେଇ, ପିଠି ଆଉଁସି ପଚାରିଲେ, କାହିଁକି କାନ୍ଦୁଛୁ, ଶିବ ବାଇଆ ଗାଳିଦେଲା କି ?

ଲଜ ଲଜ ହୋଇ ପାର୍ବତୀ ଠାକୁରାଣୀ କହିଲେ, ନାଇଁ ଯେ, ତମ ଦଅର ସବୁବେଳେ ଘର ଛାଡ଼ି ଭୂତ ପ୍ରେତ, ଡାଆଁଣୀ, ଚିରୁଗୁଣୀଙ୍କ ସଙ୍ଗରେ ଧରି, ଷଣ୍ଢଟାଏ ଚଢ଼ି, ସାପଗୁଡ଼ାଙ୍କୁ ଦେହରେ ବାନ୍ଧି ସଂସାର ସାରା ଧାଉଁଛନ୍ତି । କେତେ ତାଙ୍କ ପଛରେ ଗୋଡ଼ାଇବି ? ବାଘଚମ ଉପରେ ପାଖରେ ବସିବାକୁ ଡାକନ୍ତି । ସାପଙ୍କ ଡରରେ ଯିବାକୁ ମନ ହୁଏ ନାହିଁ । ଆଜିଯାଏ ଗହଣାଗଣ୍ଠି ଖଣ୍ଡେ ଗଢ଼େଇ ଦେଲେ ନାହିଁ ।

ଲକ୍ଷ୍ମୀ ଠାକୁରାଣୀ କହିଲେ, ଏଇ ଛାର କଥା ପାଇଁ ଏତେ କାନ୍ଦ ? ନେ ।

ମା ମାନେ ଗୋ, ଦେହରୁ ଗହଣା କାଢ଼ି ପିନ୍ଧାଇଦେଲେ । କହିଲେ, ତୋ ଦେଶ୍ଵରର ନରସିଂହଙ୍କୁ କହିଲେ ବିଶୁ ମହାରଣାଙ୍କୁ ଡକାଇ ମୋ ପାଇଁ ଆଉ ସାରେ ଗହଣା ଗଢ଼ାଇଦେବେ । ମଥାମଣିକୁ ସେ ଗଢ଼ିପାରିବ କି ନାହିଁ କେଜାଣି, ମଝିରେ ଏ ହୀରାପଥର ଖଣ୍ଡିକ ବସାଇବା କାଠିକର ଠାଠ । ତେବେ

ତୋ ଦେଢ଼ଶୁର ବସ୍ତୁନୁଙ୍କୁ ଜାଣୁ ତ, ସେ କେଡ଼େ ନବରଙ୍ଗିଆ । ମତେ ସେ ଖୁବ ସୁଖପାଆନ୍ତି । ଦଣ୍ଡେ ନ ଦେଖିଲେ ବଣା ହୋଇଯାଆନ୍ତି । ସେ କଳେ ବଳେ କହୁଥିଲେ ଆମ ଦେଢ଼ଶୁର ବରହ୍ମା ଯିଏ ଏ ସୃଷ୍ଟି ସରଜନା କରିଛନ୍ତି ଲୋ. ତାଙ୍କୁ ବିଶ୍ୱ ମହାରଣାର ଧରମପୁଅ କରି ପଠାଇବେ । ସେଇ ଧରମା ଆସି ମୋ ମଥାମଣିର ମଝିପଥରକୁ ଖଞ୍ଜିବ, ସେଇଠୁ ଅଦୃଶ୍ୟ ହୋଇ ପଳାଇବ ।

ମୋ ସୁନାଭଉଣୀଟା, ତୁ ଆଉ କାନ୍ଦରୁ ନାହିଁ ପାର ' ସରସ୍ୱତୀ ତୋ ପାଖରେ ରହିଲା, ମୁଁ ଯାଉଛି । ତୋ ଦେଢ଼ଶୁର ତେଣେ ଖୋଜୁଥିବେ । ଟିକିପୁଅ କନ୍ଦରପକୁ କୋଳରେ ପୁରେଇ ବସି ଛଟପଟ ହେଉଥିବେ । ସେ ଅବେଇଜା ଟୋକାଟାକୁ ଧରି ନ ରଖିଲେ ସେ କଣ ରହିବ ? ଆଖି ପିଛୁଳାକେ ଖସିଯାଇ ତ୍ରିଭୁବନ ବୁଲିଆସିବ ସେ ଛତରା । କେତେ କେଉଁଠି ଉତ୍ପାତ କରିବ । ତା ଗ୍ରେଟିଆ ଧନୁର ପାଞ୍ଚ ଶରକୁ ସମସ୍ତେ ଡରନ୍ତି । ପୁଣି, ସମସ୍ତେ ଭଲ ପାଆନ୍ତି । ବାପା ହୋଇ ବସ୍ତୁନୁ ବି ପରିହାସ ପାଉନାହାନ୍ତି । ଡହରଟାଏ, ଅବିକଳ ତା ସାନ ମା ସରସ୍ୱତୀ ପରିକା ମ !

ମୁହଁ ଫଣଫଣ କରି ସରସ୍ୱତୀ କହିଲେ, ସାନ ଜାଆ ପାଖରେ ମତେ ଗାଳିଦେଉଛ, ଅପମାନ କରୁଛ, ଅପା ? ମୁଁ ସେଇଥିପାଇଁ ତମ ସଙ୍ଗେ କୁଆଡ଼େ ଯାଏ ନାହିଁ ।

ଲକ୍ଷ୍ମୀ ଠାକୁରାଣୀ ହସିହସିକା ପାଟଣିଙ୍କୁ କୋଳରୁ ଉହ୍ଲାଇଲେ । ସରସ୍ୱତୀଙ୍କ ହାତକୁ ଧରି ଗରୁଡ଼ ଉପରକୁ ଟାଣିଆଣିଲେ । ତାଙ୍କର ଧୋବଲା ଗାଲରେ ମନଖୁସିରେ ଅମୃତିଆ ବୋକ ଦେଇ ତାଙ୍କ କପାଳରେ ଲମ୍ବନାକ ଘଷି ହସି ହସି କହିଲେ, ତୋ ମନରେ ଛଳ କେବଠୁଁ ପଶିଲା ଲୋ ଛଇଳୀ, ଡହରି ! ତତେ କଅଣ ଏକଥା ଜଣାନାହିଁ ଯେ ତୋ ଅପା ତତେ ପ୍ରାଣରୁ ବଳି ଭଲପାଏ ? ତୋ ଗୋଡ଼ରେ ବେଡ଼ି ପକାଇ ଏଥର ତାଙ୍କ ଗୋଡ଼ରେ ଯନ୍ତ ନ ବାନ୍ଧୁଛୁ ତ ମୋ ନାଁ ଧରିବୁ ନାହିଁ ।

—ଆଲୋ ସର, ଯେତେ କହିଲେ ଦେହରେ ଟିକେ ତେଲହଳଦି ଲଗାଇଲୁ ନାହିଁ । ଅଁଳାତେଲ ମୁଣ୍ଡରେ ମାରି ବେଲକାଠର ପାନିଆରେ କେଶ ସଉଁଳିଲୁ ନାହିଁ ଲୋ ଝିଂରିଝିଂରିମୁଣ୍ଡୀ ମଥାରେ ସିନ୍ଦୁର, ଗାଲରେ କୁଙ୍କୁମ, ଗୋଡ଼ରେ ଅଳତା, ଗଳାରେ ବଉଳମାଳ ମୁଣ୍ଡିଲୁ ନାହିଁ, କି ଯେତେ କହିଲେ ଦେହରେ ସୁନା

ଗହଣା ବ ଖଣ୍ଡ ନାଇଲୁ ନାହିଁ । ହାତରେ ଯେଉଁ ସାମାନ୍ୟ ବ ପଟି ଶଙ୍ଖାକାଚ ଗନାଇଛୁ ସେଇଆ ।

ଆମ ଭଣ୍ଡାରଘରେ କେତେ ଜାତର ବନାରସୀ ପାଟ ରଖା ହୋଇଛି; ରଙ୍ଗ ରଙ୍ଗର, ସେଥିରୁ ଖଣ୍ଡିଏ ପିନ୍ଧୁନୁ । ଖାଲି ଧୋବ ଫରଫର କଲଙ୍କୀ ଶାଢ଼ି ପିନ୍ଧି ପଦାକୁ ବାହାରୁଛୁ । ଭଲ ବେଶ ନ ହେଲେ, ଭଲ ଗହଣା ନ ପିନ୍ଧଲେ, ଗେରସ୍ତମ ନେ ନୁହଁ ବୋଲି ପର ଲଦନ୍ତି । ଦାଣ୍ଡରେ ସମସ୍ତେ ମୋ ନନ୍ଦା କରୁଛନ୍ତି । ମୁଁ କୁଆଡ଼େ ତୋ ସଉତୁଣୀ, ପାଟରାଣୀ ହୋଇଛୁ ବୋଲି ତତେ କିଛି ଦେଉ ନାହିଁ ।

ସରସ୍ୱତୀ କାନ୍ଦପକାଇଲେ । ଲକ୍ଷ୍ମୀଙ୍କର ପାଦ ଧରି କ୍ଷମା ମାଗିଲେ । କହିଲେ —ଲୋକଙ୍କ କଥାରୁ ଆମକୁ କଅଣ ମିଳିବ ? ମୋତେ ବାହାର ସଜ ଭଲ ଲାଗେ ନାହିଁ । ଅପା ମ, ତମର ସାଜ ଦୂରରୁ ଦେଖିଲେ ମୋ ଚକ୍ଷୁ ପ୍ରତିଷ୍ଠା ହୁଏ ! ତମର ଗାଳି ଶୁଣିଲେ ମୋ ମନରେ ଗରବ ଆସେ । କହେ ଲୋକଙ୍କୁ, ଯିଏ ଯାହାକୁ ପ୍ରାଣଭରି ଭଲପାଏ, ସିଏ ତାକୁ କଟୁକଥା କହି ଆକଟ କରେ ସିନା, ଆଉ କାହାର ଜିଭରେ ହାଡ଼ ଅଛି ଯେ ଟାଣ କଥା କହିବାକୁ ସାହସ କରିବ ?

ଲକ୍ଷ୍ମୀ ଠାକୁରାଣୀ ଉଠିଲେ । କହିଲେ, କଥାରେ ତୋତେ କିଏ ଜିତିପାରିବ ? ସେତିକ ଗୁଣରେ ଧରି ବୁଲୁଛୁ । ଖିଆପିଆ ଭୁଲୁଛୁ । ମୁଁ ଯାଉଛି ଲୋ, ସାରକୁ ବୋଧଶୋଧ କରି ଆସିବୁ । ଆଜି ଠୁ ମୋ ସଙ୍ଗେ ନ ବସିଲେ, ଆଖିକୁଣ୍ଡି କହୁଛି, ପାଟିରେ ପାଣି ମାରିବ ନ ହିଁ ।

ଯାଉଛି ଲୋ ସାର, ତମ ଦେହଶୁଦ୍ଧ ତେଣେ ବାଉଳି କାଉଳି ହେଉଥିବେ । ଭୋକରେ ପେଟ ଗଳୁଥିବ । ଟିକିପୁଅ ମ, ସେଇ ଫୁଲଧନୁ ଫୁଲଶର ଧରି କନ୍ଦରପ ବୁଆଟା, ତାଙ୍କୁ ଛଟପଟ କରୁଥିବ । ସେଇଟାକୁ ସିନା ମୁଁ ଦେହରୁ ଜନମ କରିଛି ଲୋ ସାର, ଅଗ ତାକୁ ଏଇ ସରସ୍ୱତୀ ମନରୁ ଫାନ୍ଦ ଗୋବିନ୍ଦଙ୍କ ମୁଣ୍ଡରେ ଭରିଥିଲି । ବଡ଼ ନବରଙ୍ଗୀ ସେ, କଳେ ଧରିଛୁଆ ନ ଦେଇ ସ୍ୱାମୀଆଡ଼େ ଗସ୍ତ କରୁଛି । କାମଦେବ, ସେଇ ବନ୍ଦରପର ଆଉ ଗୋଟିଏ ନାଁ, ଏଇ ସରସ୍ୱତୀ ଦେଇଛି । ମୋ ଦେହରୁ ଜନମି ପୁଣି ହରବର କରୁଛି । ଏଇ ସରସ୍ୱତୀ ଲୋ, ତାକୁ କେବେ ଅଖି

ଠିଣକା ମାଣଦେଇ କହୁଛୁ, ଆରେ ପୁଅ, ମାରଲୁ ତୋ ପାଞ୍ଚ ଶର ଆଗ ତୋ ବାପାକୁ । ପୁଅକୁ ଝେହ୍ଦେଇ ନଜେ ଛୁ ।

କହୁନ୍ତ ପଗ୍ର, ସକଳ ଦେବେ ନାଗ୍ସ୍ଣ । କାହିଁକ କହୁନ୍ତ କ ? ପୁଅ ଫୁଲଧନୁ, ଫୁଲଶର ଧର ବାପ ପଛରେ ଗୋଡ଼ାଇଲା । ହ୍ରଶ ଅନ୍ତର୍ଦ୍ଧାନ ନ ହୋଇ ସମସ୍ତଙ୍କ ଦେହରେ ପଶିଲେ । କ ପୁରୁଷ କ ନାସ୍ । ଫୁଲଶରର କଗ୍ରମତ ଦେଖ । କାହାକୁ ଗ୍ରଡ଼ୁଲ ନାହିଁ । କେବଳ ସାପ ଉରରେ ଦାନ୍ଦ ପାଖକୁ ଯାଏ ନାହିଁ । ମୟୁର ଡରରେ ସରସ୍ୱଗ ପାଖରେ ପଶେ ନାହିଁ । ଯାଉଛୁ ଲୋ, ଡ଼େର ହେଲଣି !

ହେଇ ଦେଖ୍ ଲୋ ସର, ତୋ ଗୋଳାମୁହଁ । ମୟୁରଟା କେମିତ ମୋ ଗ୍ରକହଂସକୁ ଝୁମ୍ପି ପକାଉଛୁ । ଆଜ ପୁଅକୁ ମୋର ତା' ଦାନ୍ଦ ପାଖକୁ ପଠେଇବ । ଲୁଚ ଲୁଚ ବୁଢା ଉହାଡ଼ରୁ ସେ ଫୁଲଶର ମାରବ । ଦେଖିବ, କେମିତ ସେ ବାବନାଭୁତ ଶିବ ମୋ ପାରକୁ ପଗ୍ସରୁ ନାହିଁ ! ଆଣ୍ଠୁ ଗଣ୍ଠି ଛୁଣ୍ଡେଇ, ପଡ଼ିଉଠି, ସେ ସଦ ତୋ ପାଖକୁ ନ ଧାଇଁଛୁ ତ ମୋ ନାଁ ଧରବୁ ନାହିଁ, ଯାଉଛୁ ।

ମା ମାନେ ଗୋ, ଲକ୍ଷ୍ମୀଠାକୁରାଣୀ ଗ୍ରୁଲଗଲାରୁ ପାର୍ବତୀ କହୁଲେ ସାନ ଅପା ଗୋ, ବରଟିଏ ମାଗିବ, ଦେବ କ ? ସେ ମୋତେ ଯେତେ ହତାଦର କରଛନ୍ତ, ମୁଁ ତାଙ୍କୁ ସେତକ ଓହ୍ଲଲ ବଦଲ ବରବ । ପାନେ ଦେଇଥିବ ସେ ତାଙ୍କ ଗଣ୍ଡେଇଖିଆ ସ୍ୱଭ ଗ୍ରଣ୍ଡିସିବ ।

ସରସ୍ୱଗ କହୁଲେ, କ ବର ମାଗିବୁ ମାଗ୍ ।

ମା-ମଙ୍ଗଳା କହୁଲେ, ଏଇ ବର ଦଅ ସେ ମୋ ଦେହ, ଗହଣାଗାଣ୍ଠି, ଶାଢ଼ି ସବୁ ମୁଗୁନି ପଥର ପର କଳା ଚକଚକ ହେଉ ।

— ତଥାସ୍ତୁ ! ହେଇ, ହେଲୁ ତ । ଆହୁର କେଡ଼େ ସୁନ୍ଦର ଦଶିଲୁ ଲୋ ପାର୍ବତୀ ! ରୂ କାଳୀ ହେଲୁ ସିନା, ସେ ସର୍ବଙ୍କ ଶିବକୁ ଠକପାରବୁ ନାହିଁ । କଣ୍ଟେ ତତେ ସେ ଚହ୍ନିପାରବ । ଠାବ କରବ । ଆଉ କ ବର ମାଗିବୁ ମାଗ ।

—ଅପା ଗୋ, ଏଇ ବର ଦଅ ସେ ମୁଁ ଗୋଟିଏ ରୂପରେ ବଭିନ୍ନ ନାମରେ ଗାଁ ଗାଁକେ ରହୁବ । ସେ କୁଆଡ଼େ ଧାଇଁବେ ଧାଉନ୍ତୁ । ମୁଁ ଗଛ ପତରରେ ଲୁଚବ ।

—ତଥ ସ୍ତୁ । କିନ୍ତୁ, ତୁ ଗୋଟିଏ ହେଲେ ସେ ବି କୋଟିଏ ହେବେ । ସବୁ ଗାଁରେ ରହିବେ । ଗଛ ପତରର ଅନ୍ଧକାରରେ ପଶି ନଟେ ବାହାର କରିବେ । ଜାଣିନୁ ତ, ତମ ଅଜାନୁଭୁଜ ଦେଢ଼ଶୁର କଅଣ କଲେ ? ଗୋଟିଏ ଥିଲେ, ଷୋଳ ସହସ୍ର ଗୋପୀଙ୍କ ପାଖରେ ଷୋଳ ସହସ୍ର କୃଷ୍ଣ ହୋଇ ନାଟ ଲଗାଇଲେ । ଶିବ ସେଇ ଧାତୁରେ ଗଢ଼ା । ହେଲା ନାହିଁ ତୋ ମନକଥା । ଆଚ୍ଛା, ଆଉ ଗୋଟିଏ ବର ମାଗ ।

—କେତେ ଦୟା ତମର ! ଏଇ ବର ଦିଅ ଗୋ ପାନଅପା, ମନକଲା ସଙ୍ଗେ ସଙ୍ଗେ ମୁଁ ଅତି ଭୟଙ୍କର ରୂପ ଧରିବି । ନିର୍ଘୃଣ ହେବି, ସେ ଆଉ ଚିହ୍ନି ପାରିବେ ନାହିଁ । କୈଳାସରେ ଯେତେ ଯୋଗିନୀ ଅଛନ୍ତି, ସମସ୍ତେ ମୋ ପାଖରେ ଥିବେ । ଯେଉଁ ଗାଁରେ, ଯେଉଁ ଥାନରେ କୋଟିଏ ରୂପ ଧରି ମୁଁ ଥାଏଁ ପଛେ, ସେମାନେ ବି ଭୟଙ୍କର ବିକଟାଳ ରୂପଧରିବେ । ତମ ଦିଅର, କି ତାଙ୍କ ଗଣମାନେ ଆମକୁ ଚିହ୍ନିବା ତ ଦୂରେ ଥାଉ, ଦେଖିଲେ ଡରିବେ । ଫୁର୍କୁଟି ନାଚିଲା ପରି ନାଚି ନାଚି ବାବନାଭୂତ, ଖଣ୍ଡିଆଭୂତ ହୋଇ ଧାଇଁଥିବେ । ମୋ ଝିଅ ପୁଅଙ୍କୁ କହିବି, ସେ କଳିକରି ତା ବଳାକୁ ଓ ତାଙ୍କ ଗଣଙ୍କୁ ସବୁଦିନେ ବାଣ ମାରୁଥିବ । ତେବେ ଯାଇଁ ସେ ମଜା ବୁଝିବେ, ମତେ ହତାଦର କରିବା ସ୍ୱାଦ ପାଇବେ ।

ତଥାସ୍ତୁ କହି, ମୟୂର ପିଠିରେ ବସି ବୀଣା ବଜାଇ ସରସ୍ୱତୀ ମା' ଲୁଚିଲେ ଗୋ ମା'ମାନେ ! ଆମ ହାଡ଼ିବାଈ ଠାକୁରାଣୀ ସେ ସାକ୍ଷାତ ଦୁର୍ଗା । ସେଇଦିନୁ କଳା ମୁଗୁନି ପଥର ପରି ଚକଚକ ହେଲେ । ଦେଖିଲେ ଆଖି ଲାଖି ରହିବ, ସେ ଆସି ଉଭାହେଲେ ମୋ ଆଗରେ । ସପନରେ କହିଲେ, କଳା ଶାଢ଼ି, କଳା କାଚ ପିନ୍ଧି, ମୁଁ ତୋ ଠେଇଁ ଅବତରିବି ଲୋ ରାଣୀ ବାରିକାଣୀ ! ସବୁ କଥା ତତେ କହିବି ।

ଅସିତର କନ୍ଦୁଆ ଆଖିପତା ଅନ୍ଧାରରେ ଖୋଲିଗଲା । କିଛି କଅଣ କହିବାକୁ ବସିଥିଲା, କହିପାରିଲା ନାହିଁ । ଭାବିଲା, ଧନ୍ୟ ସେ ରାଣୀ ବାରିକାଣୀ ! ମନରୁ ଗଢ଼ି 'ହାଡ଼ି ବାଈ ପୁରାଣ' ରଚନା କଲା । ଅରଜୀ ବି ଧନ୍ୟ, ସେ ତାର ପୁରାଣକୁ ମୁଖସ୍ଥ

କରିଛୁ, ଠିକେ ଠିକେ ବର୍ଣ୍ଣନା କରିଛୁ । ନାରୀ ପୁରୁଷଙ୍କ ମିଳାମିଶା କଥା ପିଲାଦିନୁ ସେ ଜାଣିଛୁ । କିଛୁ ଜାଣେ ନାହିଁ, ଅତି ନିରୀହ ବୋଲି ନିଜକୁ ପ୍ରମାଣିତ କରୁଛୁ । ମନଚହଲି କଥା ଯେତେ ଗେହ୍ଲେଇ ପଚ୍ଚରିଲେ ବି କହୁନାହିଁ । ତା ଜୀବନର ସତ ମିଛକଥା ଅତସୀ ମନଦେଇ ଶୁଣିଛୁ । ହସି ହସି ନସ୍ୟାନ୍ତ ହୋଉଛୁ, ପଦେ ଅଧେ ପଚ୍ଚରି ଖୋଳତାଡ଼ି ଅସିତର ଗ୍ରେଟ ଗ୍ରେଟ ଦୁର୍ବଳତା କଥା କାଢ଼ି ନେଉଛୁ । କେଉଁଠି ଘଟଣା ଅତିରଞ୍ଜିତ ହେଲା କି ମନା କରିବାକୁ ସତର୍କତାର ସହିତ ଦେଖେ ଯେ ତା ହେଲା, ସେତକ ବି ଠଉରେଇ ନେଉଛୁ । ଅତସୀର ମଧୁର ହସ କେବଳ ଓଠରେ ନୁହେଁ, ଆଖିରେ ମଧ ପ୍ରତିଫଳେ; ଜଣାଇ ଦିଏ ଏତକ ମନଗଢ଼ା, ଏତକ ଅତିରଞ୍ଜିତ । ମୁଁ ବୁଝିଲି ଯେ, ତଥାପି ତୁମେ କହ ଗୋ କହ, ଗଳ୍ପପରି ଶୁଣିବାକୁ ଖୁସି ଲାଗୁଛୁ ।

—କହିବ ନାହିଁ ତୁମ ଜୀବନର ମନଚହଲି କଥା ଅତସୀ !

ତୁମ ଆଖିକୁ ନିଦ ନାହିଁ କି ? ରାଣୀ ବାରକାଣୀ ସପନ ଦେଖି କେଉଁ ମଙ୍ଗଳବାର ଦିନ ପାହାନ୍ତାରୁ ଉଠି ନିତ୍ୟକର୍ମ ସାରେ । ପେଡ଼ିରୁ କାଢ଼ି କଳାଲୁଗା ଓ କଳା ବ୍ଲାଉଜ ପିନ୍ଧେ । ହାଡ଼ୁବାଇ ଠାକୁରାଣୀଙ୍କ ପାଖକୁ ଯାଇ ତାଙ୍କ ଦେହରୁ ସିନ୍ଦୂର ଆଣି ମଥାରେ ବୋଳେ । ମନ୍ଦାରଫୁଲର ମାଳ ଗୁନ୍ଥି ବେକରେ ଲମ୍ବାଏ । ନୂଆ ଖପରରେ ରଡ଼ନିଆଁ ରଖି ସେଥିରେ ଝୁଣା, ଗୋଗଳ ଗୁଣ୍ଡା ପକାଏ । ତାର ଆଗରେ ସେ ଆଖିବୁଜି ଚେକାମଉଳି ପକାଇ ବସେ । ଧୂପ ଧୂଆଁକୁ ନାକବାଟେ ଟାଣି ପେଟରେ ଭରେ । ହାଡ଼ୁବାଇ ତା ଦେହରେ ଅବତରନ୍ତି । ରାଣୀ ବାରକାଣୀର ଗୋରା ତକତକ କି ଶୋଭା ରୂପ କେଡ଼େ ଭୟଙ୍କର ଦିଶେ ଗୋ !

ତୁମେ କେବେ ଦେଖିଛ ଅତସୀ ?

—ଥରେ ନୁହେଁ, ପିଲାଦିନେ କେତେଥର ଦେଖିଛୁ । ମନେ ପଡ଼ିଲେ ହେଉଛି, ସେ ଆଖି ଆଗରେ ଦିଶିଯାଉଛୁ । ଓଃ, ସେ କେଡ଼େ ଭୟଙ୍କର ଦିଶେ । ମୁଣ୍ଡର ଲମ୍ବ କେଶ ଖୋଲିଦିଏ । ଦେହରୁ ବସନ ଖସିପଡ଼େ । ସେ ଆଖି ତରାଟେ, ମୁଣ୍ଡ ହଲାଏ, ଦେହ ହାତ ହଲାଇ କେତେ ପ୍ରକାର ମୁଖଭଙ୍ଗୀ କରେ । ଦାନ୍ତ ରଗଡ଼େ । ଜିଭକାଢ଼ି ଲହଲହ କରେ । ନିଜକୁ ନିଜେ ଆମ୍ପୁଡ଼େ, ମାରିହୁଏ, କେଶ

ଟାଣେ । ସେ ବିକଟାଳ କନକନା ଶୀତ ଗୁଡ଼େ, ହି ହି ହୋଇ ହସେ । ବାହୁନି ବାହୁନି ଏମିତେଶି କାନ୍ଦି କାଟେ । ଟଳ ଟଳ ଠିଆ ହେଉଣୁ ପୁଣି ଟଳଟଳ ହୋଇ ବସିପଡ଼େ ।

—ସତେ ଅଡାପୀ ?

—ହେଇଟି, ସେ ବଣିଯାଉଛୁ । କେବଠୁଁ ସେ ମଲଣି ସତ, ହେଲେ, ତାର ରୂପ ତ ମଣନାହିଁ ।

ବଳେ ଠାକୁରାଣୀ ତ ଦେହରେ ଅବତରଣଲେ । ସବୁଥର ପର ଲୋକେ ଆସି ଲମ୍ବ ଲମ୍ବ ଓଲଗି ହେଲେ । ବାଇଦ ବାଜିଲା, ଫଗ୍ଗୁଣିନ ହେଲା । ଝେଞ୍ଚିଗଛ, ପଣାପାଣି, ସେ ଯାହା ମାଗିଲା, ଲୋକେ ସବୁ ଦେଲେ । ଧୂପ, ଦୀପ, ନାଲି ଶାଢ଼ି, ଟିକା । କିନ୍ତୁ, ଠାକୁରାଣୀ ତାକୁ ଗୁଡ଼ ଗୁଲିଗଲେ ନାହିଁ । ସେ ମୂର୍ଚ୍ଛା ହୋଇ ପଡ଼ିରହିଲା ।

ସେଇଠୁ ଗୁଣିଆ ଆସି ଝାଡ଼ିଲା, ଧୂପ ଧୂଆଁ ଦେଲା । ବେତରେ କେତେ ପାହାର ମାରିଲା । ସେ ଉଠିଲା ନାହିଁ, ଖାଲି ଗଁ ଗଁ ହେଲା । କବିରାଜ କ ଡାକ୍ତରଙ୍କୁ ଡକାଇ ଦେଖାଇବାକୁ, ଔଷଧ ଦେବାକୁ, କେହି କେହି ତା ସ୍ୱାମୀ ରଙ୍ଗ ବାରିକକୁ ଉପଦେଶ ଦେଲେ । କେତେ ଲୋକ ପୁଣି କହିଲେ, ଠାକୁରାଣୀଙ୍କୁ ଔଷଧ ଦେଲେ ସେ ବଣ ବୁଡ଼ାଇବେ । ଗାଁରେ ହଇଜା ଓ ବସନ୍ତ ବ୍ୟାପିବ । କେତେ ଲୋକ ମରିବେ ।

ସ୍ୱରେବିଟି ପୁଅର ବାପ ରଙ୍ଗ ବାରିକ ଗୁନିଆଁ ହେଲା । ସେ ନିଜେ ଓ ତାର ପୁଅମାନେ ଏବଂ ବୁଢ଼ୀ ମା', ବେକରେ ଲୁଗାକାନି ପକାଇ ଭୂଇଁରେ ଦଣ୍ଡ ଧରି, ରାଣୀ ଶୋଇଥିବା ଖଟ ପାଖରେ ମୁଣ୍ଡିଆ ମାରିଲେ । ରଙ୍ଗିଆ ଯୋଡ଼ ହାତରେ କାକୁତି ମିନତି ହୋଇ ପ୍ରାର୍ଥନା କଲା, ମା' ଗୋ ହାଡ଼ୁବାଇ, ରାଣୀ ତୋ ପାଦ ତଳର ସେବାକାରୀ, ତାକୁ ଗୁଡ଼ ଯା ।

ରାଣୀ ମୁଣ୍ଡ ହଲାଇଲା, ଛଟପଟ ହେଲା । ଗୋଡ଼ହାତ ବାଡ଼େଇ ପୁଣି ଛଟପଟ ହେଲା । ଖୀଣକଣ୍ଠରେ କହିଲା, ଦେହ ଜଳିପୋଡ଼ି ଯାଉଛୁ । ମୁଁ ଖାଇବି, ମୁଁ ଖାଇବି ।

—କଅଣ ଖାଇବାକୁ ସେ ମାଗିଲା ଅତସୀ ?

—ମୋ ଦେହ ଶୀତେଇ ଉଠୁଛି ମ ! ତୁମେ ଘୁଞ୍ଚିଯାଉଛ କାହିଁକି, ଟେକେଇ ଟାଣି ନେଉଛ ? ଶୀତ ପଶିଆସୁଛି । ମଶାଣ ସେ ପାଖେ ଝୋବଲା କାନ୍ଥ ଭିତରୁ ସେଇ ସାହାବାଣୀର ପ୍ରେତଟାର ମୁହଁ ପଦାକୁ ବାହାରିଲା ପରି ମନେହେଉଛି । ମୋ ସ୍ୱପ୍ନ ସେଥିପାଇଁ ଅଣ୍ଟାରେ ଖୋଞ୍ଚିଥିଲି । ତାକୁ ନେଇ କେଉଁଠି ରଖିଲ ?

ଅସିତ ତା ପାଖକୁ ଘୁଞ୍ଚିଆସିଲା । ହାତ ବଢ଼ାଇ ଶେଜକୁ ଅତସୀର କଡ଼ରେ ଟେଙ୍କି ଦେଲା । ସତେ ତ, ତାର ଗୋଡ଼, ହାତ, ପିଠି ହେମାଳିଆ ହୋଇଛି । ଘଡ଼ରେ ବାନ୍ଧିଥିବା ବଉଳମାଳର ବାସ୍ନା ବି ଯେପରି ଶୀତୁଳିଆ ଲାଗୁଛି । ବେଢ଼ାଇଥିବା ବାହୁକୁ ସେପାଖର ନରମ ଦେହ ଅଣ୍ଡାଳିଆ ଲାଗୁଛି । କଥା କହୁସରେ କେତେବେଳେ ଅତସୀର ଫୁଙ୍ଗୁଳା ଦେହ ଟେକେଇ ବାହାରକୁ ଖୋଲିଯାଇଥିଲା ସବୁ ! ଅସିତ ତାର ଗରମ ପାପୁଲିରେ ଅତସୀର ମୁହଁ ଓ ଦେହକୁ ରଗଡ଼ି ରଗଡ଼ି ଦେଲା । ଏଥର ଶୀତ ଛାଡ଼ି ପଳାଇବ, ସେ ଉଷୁମ ହେବ ।

କହିଲା, ଲୁହା ଶିଙ୍ଗରେ ଗଳା ହୋଇଥିବା ଚମର ସ୍ୱପ୍ନଗୋଛାକ ତକିଆ ତଳେ ରଖିଦେଉଛି । ମୁଣ୍ଡର ଖୋପାରେ ଖୋଞ୍ଚିବ କି ? ତୁମେ କାନ୍ଥ ଆଡ଼କୁ ମୁହଁ କରିଛ । ସେଥିପାଇଁ ଅଦୃଶ୍ୟବର୍ଣ୍ଣା ସତୀ ଶିରୋମଣି, ସେଇ କେଉଁ ସାହାବାଣୀର ଧାରଣାପ୍ରେତ ତୁମ ମୁଣ୍ଡରେ ପୁଣି ପଶିବାକୁ ମୁହଁ ଦେଖାଉଛି ।

ଭୂତପ୍ରେତଙ୍କର ଜନମ ମନର ଡରିଲା ଧାରଣାରେ । ସେମାନଙ୍କର ଏକୁଟିଆଶାଳ ମୁଣ୍ଡ ଭିତରେ କେଉଁ ଅନ୍ଧାର କୋଣରେ ହୋଇଥିବ । ସେମାନେ ଗୁନିଆ ଖାଇ ବଢ଼ନ୍ତି ଗୋ ଅତସୀ ! ଅତି ଭୟଙ୍କର ହୋଇ ଆଗକୁ ଆସି ଦେଖା ଦିଅନ୍ତି । ଯେତେ ଡରିବ ସେତେ ଡରାଇବେ, ତୁମେ ମୋ ଆଡ଼କୁ ମୁହଁ କର । ଡର ଭୟ ଛାଡ଼ି ପଳାଇବେ ।

ଅତସୀ ଦୀର୍ଘଶ୍ୱାସ ଛାଡ଼ି କହିଲା—ମୋ ଦେହରେ ତମ ଦେହ ଲାଗିଲାରୁ ଡର ଭୟ ଛାଡ଼ି ପଳାଇଲାଣି । ସାହାବାଣୀ ମୁହଁ ଛପିଗଲାଣି; କିନ୍ତୁ କେଉଁ ପିଲାଦିନର କଥା ମନେ ପଡ଼ିଯାଉଛି । ସ୍ୱର୍ଣ୍ଣ ବାଳିକାଣୀର ରୂପ ଆସି ଆଗରେ ଠିଆ

ହେଉଛୁ ଗୋ ! ହେଇ, ଡଣିଯାଉଛୁ ତାର ଭୟଙ୍କର ରୂପ ! କାନରେ ବାଜୁଯାଉଛୁ ତାର କଥା । ବୋଉର କୂହା ବୋଲ ନ ମାନି ଦାଦାଙ୍କ ସଙ୍ଗେ ଠାକୁରାଣୀଙ୍କୁ ଦେଖିବାକୁ ଯାଇଥିଲି । ଡର ଡର ତାଙ୍କର ପଛରେ ଥାଇ ମୁହଁ ବଢ଼େଇ ଦେଖୁଥିଲି ।

କହୁଛି, ମୁଁ ଖାଇବି, ଖା-ଇ-ବି ।

ଆଖି ଖୋଲି କଟମଟ କରି ଗୁହିଁଲା । ତୋଳା ବୁଲାଇଲା, ଗୋଡ଼ ହାତ ଛଟପଟ କଲା । ଗୋଡ଼ ହାତ ନାଚିଲା । ରଙ୍ଗିଆ ତାକୁ ମାଡ଼ି ବସିଥାଏ । ଗୁଣିଆଁ ବୁଢ଼ା, କଂଠରେ ସେ ଧୋବା, ଧୂପ ଧୂଆଁ ଦେଇ ମନ୍ତ୍ର ପଢୁଥାଏ । ରାଣୀ ତୁଣ୍ଡରୁ ଖାଇବା ଶବ୍ଦ ବାହାରିବାରୁ ସମସ୍ତେ ଭୟତ୍ରସ୍ତ ହେଲେ । ମୋ ଛାତି ତ କମ୍ପୁଥାଏ । ଦାଦାଙ୍କୁ କୁଣ୍ଢାଇ ଧରିଥାଏ । ସେ ମତେ ଗୁନ ଗୁନ କହିଲେ, ଡରିବୁ ନାହିଁ ଅତସୀ । ଯିଏ ଡ଼ରେ, ସିଏ ମରେ ।

ଗୁଣିଆଁ କହିଲା, ହାଡ଼ୁବାଈ ମା, ଯାହାଠି ଅବତରିଛୁ ସେଇ ରାଣୀକୁ ଖା, ତାକୁ ନେଇ ଯା । ତୋଠି ତାର ଖୁବ ଶରଧା । ତାଠୁଁ ତୋର ବି ବେଶି ଶରଧା ।

ଗୁଣିଆଁ ନଆଁ ଫୁଙ୍କି ଧୂପଗୁଣ୍ଡା ପକାଇଲା । ଘଞ୍ଚ କଳାମେଘ ପରି ଧୂଆଁର ଖମ୍ବ ଉଠିଲା । ଗୋଟେ ଘରଟି ଧୂଆଁରେ ପୂର୍ଣ୍ଣ ହେଲା । ମୁଁ, ଦାଦା ଓ ଆଉମାନେ ଦ୍ୱାରବନ୍ଧ ଏପାଖେ ଠିଆ ହୋଇ ମୁହଁ ଗଳାଇ ଦେଖୁଥିଲୁ । ଘର ଭିତରେ ଆଉ କେତେଜଣ ପୁରୁଷ ଓ ସ୍ତ୍ରୀ ଥିଲେ । ଧୂପ ଧୂଆଁର ଗନ୍ଧରେ ମୁଣ୍ଡ ବୁଲାଉଥାଏ । ଆଖି ପୋଡ଼ୁଥାଏ । ଅଣନିଶ୍ୱାସୀ ଲାଗୁଥାଏ । ଗୁଇନେଷ୍ଟ ବେଳ । ଘର ଭିତର ଅନ୍ଧାରିଆ ହୋଇଥିଲା । ଝାପ୍‌ସା ଦିଶୁଥିଲା । ଯେଉଁମାନେ ସେଠି ଥିଲେ ତଳେ ମୁଣ୍ଡ ଲଗାଇ କହିଲେ, ସେଇଆ କର ମା । ତୋ ପାଖରେ ଶରଣ ପଶୁଛୁ । ଯାହା ଦେହରେ ଅବତରିଛୁ ସେଇଆକୁ ଖା, ସେଇଅାକୁ ନେଇ ଯା' ।

ରଙ୍ଗ ବାଗିକ ପ୍ରତିବାଦ କଲା । ରାଣୀର ମୁହଁରେ ମୁହଁ ଲଗାଇ କାନ୍ଦ କାନ୍ଦ ବଡ଼ ପାଟିକରି କହିଲା, ସେ କଥା କର ନା ଲୋ ମା ! ରାଣୀର ପେଟରେ ଷ୍ଠିର ମାସର ଛୁଆ ବୁଲୁଛୁ । ସିଏ ତୋର ଦୋଷ କରିନାହିଁ । ତୁ ରାଣୀକୁ ଖାଇଲେ ସେ ବି ଯିବ, ସ୍ତ୍ରୀବୈଷ୍ଟି ବାଳକ ମୋର ସାନବସ୍ଥା ହେବେ ।

ମା' ଗୋ ! ଲୋକ ଦୟାରୁ ତୋର ସେବା କରି, ଏଇ ଗୁଣୀ ମୋର ଜନ ଗୃହରୁ ଧନ ମାଣ କଲା । ତୋର ନାମ ଧରି, ତା ଦେହରେ ତୁଇ ଅବତରିଲାରୁ ସେ ଯେଉଁ ଦକ୍ଷିଣା ପାଏ ସେଇଥିରେ ସେ ଏତେକ କରିଛି । ଆହୁ ଧନ ମାଣ କରିଯିବ ବୋଲି ଆଶା କରିଛି । ସବୁ ତ ତୋ'ଅରି ! ଆଗ ତୋତେ ନ ଦେଇ କେବେ ସେ ପାଣି ମନାଏ ବି ପିଉନାହିଁ । ତାକୁ ନେଇଗଲେ ତୋ ଆଶା ପୋଡ଼ି ଜଳିଯିବ । ଏ କଷ୍ଟରେ କିଏ ତୋ ସେବା କରିବ ? ତୁ ଅପୂଜା ରହିବୁ । ତୋ ଶରଣ ପଶିଛି ଲୋ ମା ! ମୋ ମୁଣ୍ଡ ନେ, ଏ ମୁଣ୍ଡକୁ ଛାଡ଼ିଦେ । କାଳିଆବୋଦା ଦ'ଟା ଦେବି । ବାଇଦ ବାଜଣା କରି ତୋତେ ଗାଧୋଇବି । ସେଇଠୁ ତୁ ମୋତେ ନେବୁ, ଗୁଣୀକୁ ଛାଡ଼ ଯା' ।

ଗୁଣୀ ଉତ୍ତର ଦେଲା ନାହିଁ ।

କାଲେ ମୁଁ ଡରିବି, କାଲେ ବୋଉ ଗାଳିଦେବ, ସେଥିପାଇଁ ଦାଦା ମୋର ହାତ ଧରି ସେଠାରୁ ନେଇଆସିଲେ । ଢୋଲ ବାଇଦର ଶବଦରେ କାନ ବଧିର ହେଉଥାଏ । ଗାଁର ଅଧେ ଲୋକ ରଙ୍ଗ ବାରିକ ଘର ଆଗରେ ଜମା ହୋଇଥିଲେ । ହାଡ଼ୁବାଈ ଖାଇବ ଖାଇବ କହୁଛନ୍ତି, ଏକଥା ଶୁଣି ଯିଏ ଯୁଆଡ଼େ ଛୁ !

ଅତସୀକୁ ଆହୁରି ପାଖକୁ ନେଇ ଅଜିତ ତାର ମୁଣ୍ଡ ସାଉଁଳିଲା । ଅତସୀ ଦେହର କୋମଳପଣ ଖର୍ଜିଲା । ସେ ଗରମ ହେଲା । ଅଜିତ ପଚାରିଲା, ଗୁଣୀ ଜନ ଗୃହରୁ ଧନ ମାଣ କମି କରିପାରିଲା ? ବାଃ, ଧନ୍ୟ ସେ ବୁଦ୍ଧିଆ । ଠାକୁରାଣୀଙ୍କର ନାମ ତାର ଆସ୍ତ୍ରା, ଏ ଦେଶରେ କେତେ ବୁଦ୍ଧିଆ ଅଛନ୍ତି ଗୋ ଅତସୀ !

କେତେ ବୁଦ୍ଧିଆ ଜାତି ବି ଅଛନ୍ତି, ଯେଉଁମାନେ ଜୀବନରେ କୁଟାଖଣ୍ଡି ଦି ଖଣ୍ଡ ନ କରି ବାଟିବାଟି ସମ୍ପତ୍ତି କରିଯାଇଛନ୍ତି, କରୁଛନ୍ତି । ଜମିଦାରୀ କିଣି କୋଠାବାଡ଼ି କରି ସୁଖରେ ଜୀବନଯାପନ କରୁଛନ୍ତି । ଭୂତ, ପ୍ରେତ, ଡାଆଣୀ, ଚିରଗୁଣୀ, ମଶାଣିଚଣ୍ଡୀ, ବେତାଳ, ଏଇମାନେ ତାଙ୍କୁ ଧନସମ୍ପତ୍ତି ଅର୍ଜନ କରି ସୁଖରେ ରହିବାକୁ ସାହାଯ୍ୟ କରନ୍ତି ।

ନିର୍ବୋଧ, ଅନ୍ଧବିଶ୍ୱାସୀ ଲୋକଙ୍କର ଲୋଭ ଓ ଭୟ, ଜାତିଆଣିପଣର ଟାଣ ବନ୍ଧନ, ଜୀବିତ ଓ ମୃତ ଗୁରୁଜନମାନଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି, ସେଇ ସବୁ ଥଳସୁଆ ଲୋକ ଓ ଜାତିମାନଙ୍କୁ ବଞ୍ଚିବାକୁ, ସମୃଦ୍ଧି କରିବାକୁ, ଯୁଗ ଯୁଗ ଧରି ସୁଯୋଗ ଦେଇଆସିଛୁ ଓ ଦେଉଛୁ ।

ରାଣୀ ବାଉରିଆଣୀ ସେଇ ସୁଯୋଗ ନେଇଥିଲା । ନିଜର ବିଶ୍ୱାସର ଡୋରରେ ନିଜକୁ ବାନ୍ଧିଥିଲା ।

—ହଁ, ଗୋ ହଁ । ବାପା କଟକରୁ ଫେରି ହେଇ କଥା କହି ଦୁଃଖ କରୁଥିଲେ । ଅଦ୍ୟରାଣୀ ରାଣୀ ବାଉରିଆଣୀର ଚିତାନଳ ମଶାଣିରେ ଦେଖି ସବୁକଥା ବୁଝିଆସିଲେ । ଗର୍ଭିଣୀ ଥାଇ ସେ ମଲା ବୋଲି ତାର ପେଟ ନହୁଛୁଣିରେ ଚିରି ଘୃଣମାସର ଛୁଆକୁ କାଢ଼ି ପୋତି ଦେଇଥିଲେ ।

ବାପା କହିଲେ, ଦଳୁଆ ପୋଖରୀର ସଢ଼ା ପାଣିରେ ବୁଡ଼ି ବୁଡ଼ି ଗାଧୋଇ ତାକୁ ଜର ହୋଇଥିଲା । ପଇସା ଲୋଭରେ ଠାକୁରାଣୀଙ୍କୁ ନିଜର ବିଚଳିତ ମନ ପାଇଁ ନିଜ ଦେହରେ ଅବତରେଇଲା । ତାକୁ ଔଷଧ ନ ଦେଇ ଧୂପ ଧୂଆଁ ଓ ବାସି ପଖାଳ ଦେଲେ । ପଣା ପିଆଇଲେ । ରାଣୀ ତାର ଲୋଭ ଓ ପ୍ରତିପତ୍ତି ପାଇଁ ଅଜାଣତରେ ଆତ୍ମହତ୍ୟା କଲା ।

ରଙ୍ଗିଆ, ଗୁଣିଆଁ ଓ ଆଉ ଯେଉଁମାନେ ତାକୁ ଧୂପ, ଜପ ପଣାପାଣି ଦେଇ ଲମ୍ବ ଲମ୍ବ ହୋଇ ତଳେ ପଡ଼ି ମା ମା ଡାକ ଛାଡ଼ୁଥିଲେ, ସେମାନେ ତାଙ୍କର ଅଜ୍ଞତା ଓ ଅନ୍ଧବିଶ୍ୱାସ ପାଇଁ ଅଜାଣତରେ ରାଣୀ ଓ ତାର ପେଟର ପିଲାକୁ ଜାଣ ମର୍ଡ଼ର କଲେ । ସେମାନଙ୍କୁ ଫାଶୀଖୁଣ୍ଟରେ ଝୁଲାଇଲେ ଅନ୍ୟାୟ ହେବ କାହିଁ ।

ଯେଉଁମାନେ ଆମ ଦେଶର କୋଟି କୋଟି ଲୋକଙ୍କ ମନରେ ଅନ୍ଧବିଶ୍ୱାସ ଜନ୍ମାଇ, ଜନ୍ମ ଆଗରୁ ଜନ୍ମିଥିବା ଅନ୍ଧବିଶ୍ୱାସକୁ ବଞ୍ଚାଇ, ବଢ଼ାଇ ଭୂତପ୍ରେତ ଇତ୍ୟାଦିଙ୍କର ଆନୁମାନିକ ରାଜ୍ୟ ବିସ୍ତାର ଲାଭ ଉଠାଉଛନ୍ତି, ସେ ଥି ପୁରାଣ ଏବଂ ଏସ୍ପୁଟେଶ୍ର କେତେ ବହିରୁ ପଦ ଉଦ୍ଧାର କରି ଅଶିକ୍ଷିତ ଅର୍ଦ୍ଧଶିକ୍ଷିତ ଓ କୁଶିକ୍ଷିତଙ୍କ ମନରେ ଭୟ ସଞ୍ଚାର କରାଉଛନ୍ତି, ସେମାନଙ୍କୁ ଖୋଲା ପଡ଼ିଆରେ ଗଛରେ ବାନ୍ଧି କୋରଡ଼ା ମାଡ଼ ଦେଇ ସାବାଡ଼ କରିବା ଉଚିତ ।

—ଅତସୀ, ତୁମର ବାପା ଦୂରରେ ଅଛନ୍ତି । ତଥାପି, ଏଇଠି ତାଙ୍କ ଉଦ୍ଦେଶ୍ୟରେ ତୁମର ମୁଣ୍ଡରେ ମୁଣ୍ଡ ଲଗାଇ ମୁଁ ତାଙ୍କୁ ପ୍ରଣାମ କରୁଛି । ତାଙ୍କର ଝିଅ ବୋଲି ତୁମକୁ ମୁଁ ଅଭିନନ୍ଦନ ଜଣାଉଛି । ତୁମକୁ ଗେଲ କରିବାକୁ ସଙ୍କଳ୍ପ କରିଛି । ଏଣିକି ମୁହଁ କର ତ !

—ଆରେ, ଦୁଷ୍ଟ !

ଅସିତ ଅତସୀକୁ ନିଜ ଆଡ଼କୁ ଓଲଟାଇଲା । ଗେଲର ତୋଫାନ ସ୍ଥିର ହେଲରୁ ଅତସୀ କହିଲା, ତୁମେ ମୋ ବ ପାଙ୍କର ଜୋଇଁ ବୋଲି ତୁମକୁ ମୁଁ ଅଭିନନ୍ଦନ ଜଣାଉଛି ।

—ନୀରସ ଶୁଖିଲା ଅଭିନନ୍ଦନ ?

—ସ୍ନେହପର୍ଶ ! ଏବେ ହେଲା ତ ? ଶୁଣ, ମୁଁ ମୋ ବୋଉ ପେଟରୁ ଜନମିଛି ଯେ ! ମୋ ବୋଉ ଭୂତପ୍ରେତ ନ ଦେଖିଲେ ବି ବିଶ୍ୱାସ କରେ ଦେବଦେବୀଙ୍କଠାରେ ତାର ଅଚଳା ଭକ୍ତି । ବାରବ୍ରତ କରେ । ଉପାସ ରହେ । ବାପାଙ୍କ କଥାରେ ସେ କେବେ ପ୍ରତିବାଦ କରେ ନାହିଁ । ଖାଲି ଶୁଣେ, ନୀରବ ରହେ ।

ସେଇଆ ସେ କଲା । ବାପା ଜାଣନ୍ତି ନାହିଁ, ସେ ଉପାସ କଲା, ମୁଣ୍ଡ ଧୋଇ ଗାଧୋଇଲା । ବାହ୍ମଣ ଡକାଇ ଘରେ ହୋମ କରାଇଲା । ଚଣ୍ଡୀପୁରାଣ ଓ ଶିବପୁରାଣ ବୋଲାଇଲା । ନିଜେ ମହାଦେବଙ୍କ ପାଖକୁ ଯାଇ ଜଳଲାଗି କରାଇଲା । ହାଡ଼ୁବାଈଙ୍କ ପାଖକୁ ଯାଇ ପୂଜା କରାଇଲା ।

ମୋତେ ସଙ୍ଗରେ ନେଇଥିଲା । ଘରର ସଭିଙ୍କ ମୁଣ୍ଡରେ ଶିବଙ୍କ ପାଦୁକପାଣି ଛୁଆଁଇ ପାଟିରେ ବେଲପତ୍ର ଦେଲା । ଠାକୁରାଣୀଙ୍କ ସିନ୍ଦୂର ଟୋପା ସମସ୍ତଙ୍କ ମୁଣ୍ଡରେ ଲଗାଇଲା, ପାଟିରେ ଦେଲା ଉଖୁଡ଼ା ।

ତୁମର ବାପ କଅଣ କଲେ ?

—କଅଣ ଆଉ କରିବେ ? ପାଦୁକ ନ ପାଇଲେ, ସିନ୍ଦୂର ନ ଲଗାଇଲେ ବୋଉ ଉପାସ ରହିବ । ସେ କଥା ତାଙ୍କୁ ଅଜଣା ନାହିଁ । ବୋଉର ହସ ହସ

ମୁହଁକୁ ଚାହିଁ ସେ ପ୍ରତିବାଦ କଲେ ନାହିଁ । ଶ୍ରେଷ୍ଠ ବୁଢ଼ାର ବୋଉର ପିଲାଟି ପରି ଯେ ଆଁ କରି ବୋଉ ହାତର ତେଲପଇଡ ଓ ଉଖୁଡ଼ା ଖାଇଲେ ! ମୁଣ୍ଡ ନୁଆଁଇ ପିନ୍ଧ୍ ଉଠନ୍ଦ୍ କେଲେ । ମୁଁ ଲୁଚିକରି କବାଟ ଉହାଡ଼ରେ ଦେଖୁଥାଏ । ବାପା ଆଜି କଅଣ କଲେ ଜାଣ ?

—କେବେ କହିନାହଁ ତ, କପରି ଜାଣିବ ?

—ଲାଜ ମାଡ଼ୁଛି ।

—ଘର ଭିତରେ ବଳବଳ ଅନ୍ଧାର ହୋଇଛି । ତଥାପି ତୁମକୁ ଲାଜ ମାଡ଼ୁଛି କାହିଁକ ? ଆଖି ବୁଜିଦିଅ, ସେଇଠୁ କହ ।

—ଆଖି ବୁଜିଛି । କହୁଛି ଶୁଣ । ତୁମେ ଏକା ହସିବ ନାହିଁ । ତୁମକୁ ମୋ ରାଣ । ବାପା ବୋଉର ହାତ ଧରିଲେ । ତା ମୁଣ୍ଡକୁ ନୁଆଁଇ ନେଇ ଟିକ ଚିଅଟି ପରି ଗେଲ କଲେ । କହିଲେ, ତମର ବିଶ୍ୱାସକୁ ମୁଁ ବିଶ୍ୱାସ କରିନାହିଁ କ ସମ୍ମାନ ଦେଖାଇନାହିଁ । ତୁମର ସର୍ବବ୍ୟାପୀ ସ୍ନେହ ଓ ପ୍ରେମ ପାଖରେ ମୁଁ ଶିଶୁଟି ପରି ମୁଣ୍ଡ ନୋଇଛି । କଥା ମାନୁଛି । ତୁମେ ମୋତେ ଗେଲ କରିବ ନାହିଁ ?

—ପିଲାଏ, କ ଆଉ କଏ ଆସିଯିବେ ମ । ମୋ ହାତ ଛାଡ଼ିଦିଅ । ଛି, କ ଲାଜର କଥା ! ବୁଢ଼ାଟିଏ ହେଲଣି ।

— ବାପା କହିଲେ, ଛାଡ଼ିବି ନାହିଁ ।

ବେ ଉ ଏଣିକି ତେଣିକି ଚାହିଁଲ । ପିଲାଦିନ କଥା ମନେ ପଡ଼ୁଛି ? ବୋଉଙ୍କ କୋଳରେ ସାତ ବର୍ଷ ଯାଏ ବସି ହାତ ଝୁଲୁଥିଲ । ଦୁଧକଲେ ଖାଇବାକୁ ଅଳି କରୁଥିଲ । ଚୁମା ନ ଖାଇଲେ ଚାହାଳିକୁ ପାଠ ପଢ଼ିବାକୁ ଯିବନାହିଁ ବୋଲି ଅଟ୍ଟ ହେଉଥିଲ ! ଶାଶୁ ମତେ ସବୁ କହିଯାଇଛନ୍ତି ।

—ତୁମେ ଆଜ ମୋ ଆଖିକୁ ସେମିତ ଦିଶୁଛ କହ, ବାପା ମୋ ବୋଉର ହାତ ଛାଡ଼ିଦେଲେ । ବୋଉ ମୁଣ୍ଡ ନୁଆଁଇ ବାପାଙ୍କ କପାଳରେ ଗେଲକଲା । ମୁଁ ଚାଲିପରି ଖୁଡ଼ୀ ପାଖକୁ ରୋଷଘରକୁ ଛୁଟିଗଲି । ସେ ଦେସର ବାଟୁଥିଲେ, ମୁଁ ହେ

ଦଶ ବରଷର ଝିଅ ସେ କଥା ପାଂସୋରଗଲା । ଖୁଡ଼ୀ ପିଠିରେ ନାଲ୍ ଦେଇ ତା ବେକକୁ ଗୁଡ଼ାଇ ଧରିଲି । କାନ ପାଖରେ କହିଲି, ଶୁଣିଲଣି ଖୁଡ଼ୀ···!

ଖୁଡ଼ୀ ଗମ୍ଭୀର ହେଲେ । ମୋ ହାତ ଧରି ଆଗରେ ବସାଇ କହିଲେ, ଏଡ଼େ ବଡ଼ ଝିଅ ହେଲଣି, ଆଉ କେତେ ବୁଦ୍ଧି ଶିଖିବ ? ଗୁରୁଜନମାନେ ନ ଡାକଲେ ନିଜ ମନକୁ ତାଙ୍କ ପାଖକୁ ଯିବନାହିଁ ଅତସୀ ! କବାଟ ଫାଙ୍କରେ ସେମାନେ ଥିବା ଘର ଭିତରକୁ ଚାହିଁବ ନାହିଁ । ତୁମେ ଟିକେ ଉଦ୍ଧତ ହୋଇଛ । ତୁମ ବୋଉଙ୍କୁ ନି ମତେ ନ ପଚାରି ଦାଦାଙ୍କ ସଙ୍ଗେ ରାଣୀ ବାଉଳାଣୀକୁ ଦେଖିବାକୁ ଚାଲିଗଲ । ଆଜି ଡରଥାନ୍ତ ସିନା ?

ତୁମେ ତ ଜାଣନାହିଁ, ରାଣୀ ଅପମୃତ୍ୟୁରାଣୀ ହେଲେ ବି ତାର ଆତ୍ମା ପ୍ରେତିନୀ ହୋଇ ଛୁଆ କାଟେଇ ବୁଲିବ । ଯେଉଁମାନେ ତା ପାଖକୁ ଯାଇଥିଲେ, ରାଣୀର ପ୍ରେତିନୀ ଥରେ ହେଲେ ସେମାନଙ୍କୁ ଦେଖାଦେବ । ମତେ କି ବୋଉଙ୍କୁ ନ ପଚାରି ଆଉ ଘରଖଞ୍ଜାରୁ କେବେ ପଦାକୁ ଗୋଡ଼ କାଢ଼ିବ ନାହିଁ, ହେଲା ?

—ମୁଁ ହଁ କହିଲି । ସେଇ ଦିନରୁ ମୋ ଖୁଡ଼ୀଙ୍କ କଥା ମାନିଲି । କେତେଦିନ ଯାଏ ରାଣୀ ବାଉଳାଣୀର ପ୍ରେତିନୀ ଡରରେ ସନ୍ଧ୍ୟା ହେଲେ ମୁଁ କେବେ ଏକୁଟିଆ ରହେ ନାହିଁ । ଶ୍ରେଷ୍ଠ ପିଲାଟିଏ ହେଉ ପଛେ ତା ପାଖରେ ରହେ । ରାଣୀର ଜଳଜଳ ରୂପ ମୋ ମନେ ପଡ଼ିଯାଏ ।

ଅନ୍ଧାରିଆ ଥାନରେ ଦୃଷ୍ଟି ପଡ଼ିଲେ ମନେହୁଏ ଯେପରି ସେ ସେଇଠି ଲୁଚିଛି । ଜଳଜଳ କରି ମୁହଁକୁ ଚାହିଁଛି । ରାତିରେ ତାକୁ ସପନ ଦେଖି ଚିଲାବିଲେଇଲି ବୋଲି ବୋଉ ଗୋଟିଏ ଲୁହାକାତ ଗଢ଼ାଇ ମୋ ହାତରେ ପିନ୍ଧାଇଲା । ସେଇ ଦିନରୁ ମୋର ଡର ଭାଙ୍ଗିଲା । ରାତିରେ ଆଉ ତାକୁ ସପନ ଦେଖିଲି ନାହିଁ । ଲୋକେ କହିଲେ, ରାଣୀ ବାଉଳାଣୀ ପ୍ରେତିନୀ ହେଲା ।

—ତୁମେ କେବେ ତାର ପ୍ରେତେନୀକୁ ଦେଖିଛ ଅତସୀ ?

—ମୁଁ ଦେଖିନାହିଁ, କି ଆମର ଆଉ କେହି ଦେଖି ନାହାନ୍ତି । ଶୁଣା ଶୁଣିରେ ଆମ ଗ୍ରାମର ଓ ଆଖପାଖ ଗାଁମର କେତେ ଲୋକ ଦେଖିବାକୁ ସେଇ ମଶାଣିବାଟେ

ଗଳ୍ପବେଳେ ଦୂରରୁ ଦେଖି ଛାନିଆ ହୋଇଛନ୍ତି । ଭେଟଣା ହୋଇ କେଉଁ ଗ୍ରାମର କେଜାଣି, ଦୁଇ ତିନି ଜଣ ଝାଡ଼ାବାନ୍ତି ହୋଇ, ନୋହିଲେ ରକ୍ତବାନ୍ତିକରି ମରିଛନ୍ତି ବୋଲି ଲୋକେ କହନ୍ତି ।

ଜେମା ତେଲୁଣୀ ତେଲଲୁଣର ପସରା ଧରି ସାହି ସାହି, ଘର ଘର ବୁଲି ପଳା, କାହାକି, ନଳରେ ତେଲ ବିକେ । ସେଇ ଏସବୁ କଥା ଶୁଣି ଆସେ । ବୋଉ, ଝିଆରୀବୋହୂମାନଙ୍କ ଆଗରେ କହେଇ କହେଇ ଗପେ । ଆମେ ସବୁ ଲୁଚି ଲୁଚି, ନ ଶୁଣିଲା ପରି ହୋଇ, ଶୁଣୁ ।

—ଡର ମାଡ଼େ ନାହିଁ ?

—ଜେମା ତେଲୁଣୀ ଡରକେଲା ଗପେ । ଡାହୁରେ ଥୁ କରି ଛେପ ଅଗ କାମୁଡ଼ି, ସେଇଠୁ ସେ କହେ, ଜଲ୍‌ଦି ରଖ ଗୋ ବୋହୂ, ଦଶଘର ବୁଲିବ । ଛୁଇ ନେଉଛିଲଣି । ସଞ୍ଜହେଲେ ଡର, ରାଣୀ ବାରିକାଣୀ ପ୍ରେତନୀ ହୋଇଛି । ମଶାଣିଚଣ୍ଡୀ ହୋଇ ଦଶ ମାସର ଛୁଆଟାକୁ ଧରି ବୁଲୁଛି । ଅନ୍ଧାର ରାତିରେ ମଶାଣିର ବରଗଛ ମୂଳେ ସେ ଚରୁଗୁଣୀ ଜାଳେ । ଶୂଳଖାଏ, କଷ୍ଟ ହୁଏ ବୋଲି ବିକଳ ହୋଇ କାନ୍ଦେ, କୁନ୍ଥାଏ, ଛୁଆ ଜନମେ ।

ତାକୁ ଦେଖି ସକଟାଳ ରଡ଼ି ଛାଡ଼େ । ହସି ହସି କସ୍ତୁରୀ ହୁଏ, ସେଇଠୁ ଭୁନ୍‌ଡାନ୍ । ତା ମା' ପଣ ଉଭେଇଯାଏ, ଚଣ୍ଡୀପଣ ବାହାରେ । ସନ୍ନକଟାଏ ଆଗରେ ପକାଇ ସେଇ ଛୁଆଟାକୁ ଓଃ କି କହିବ, ଟିକଟିକ କରି କାଟେ । ନିଆଁରେ ସେକି, ଟାଉ ଟାଉ କରି ଟକଟକ କରି ଗିଳିଦିଏ । ପିଲାଟାର ସେଉଁ ବିକଳ କୁଆଁ କୁଆଁ ରଡ଼ି ! ଆଗୋ, ମଶାଣି ପୋଖରୀର ବାହ୍ମଣୀ ବେଙ୍ଗର ରଡ଼ି ପରି ମ, କେତେ ଲୋକ ଶୁଣିଛନ୍ତି ।

—ପିଲାଟାକୁ ଖାଇସାରିଲା ପରେ ତା ଚଣ୍ଡୀପଣ କୁଆଡ଼େ ଯାଏ । ପୁଣି ମା' ପଣିଆଁ ଆସେ । ବାଉଳା ବାଉଳା ହୋଇ ଖୋଜେ, ମଶାଣି ସାରା ଅଣ୍ଡାଳେ । ନଖରେ ବିଦାରି ପକାଏ । କେତେ ରୂପ ଧରେ, ମାଦଳ ହୁଏ, ଗଡ଼ିଗଡ଼ି ଯାଏ । ହେଟା, କଅଁଳା ବାଛୁରି, ଷଣ୍ଢ, ମାଇପି ରୂପ ଧରେ । ମଶାଣି ଛାଡ଼ି ଏଣେତେଣେ ଧାଏଁ । ବାହୁନେ ହା, ହା ହା ହା ହୋଇ ହସେ । ପିଲାକୁ ଖୋଜେ, ପାଏ ନାହିଁ ।

ଗୋଧ ମାଙ୍କଡ଼ ରୂପଧରି ଗଛରେ ଚଢ଼େ । ଏ ଗଛରୁ ସେ ଗଛ ଡିଏଁ, କଡ଼ କଡ଼ କରି ଦାନ୍ତ ରଗଡ଼େ । ଲୋକେ ଦେଖିଛନ୍ତି, ଲୋକେ ଶୁଣିଛନ୍ତି । ମଶାଣିଚଣ୍ଡୀ ତ ସେ, ସବୁ କରିପାରେ ।

—ପୁଣି, ଆଉ ଘରେ ଛୁଆକୁ ଜନମ କରେ, ପଲକରେ କାଟି ଚରୁଗୁଣୀ ନିଆଁରେ ସେକି ଗିଳେ । ଏମିତି ସ୍ୱଭାବ ଥାଏ ତା କାରବାର ନିତି । କୃଷ୍ଣପକ୍ଷ ହେଲେ ସେ ଅଉ ପିଲାକୁ ଖାଏ ନାହିଁ । ଘରରେ ଜାକି ନୂଆ ବୋହୂଙ୍କି ପରି ଏଣେତେଣେ ବୁଲେ । ରଙ୍ଗ ବାରିକର ନୂଆ ସ୍ତ୍ରୀକୁ ସେ ଲଗିଥିଲା ଗୋ ବୋହୂମାନେ, ଯେଉଁ ହଟହଟା, ଶୁଣିଲେ କାନରେ ହାତ ଦେବ । ଗୁଣୀ କୁଆଡ଼େ ଜଣେ ଡାଆଣୀ ଥିଲା । ସେ ମଲାରୁ ଏବେ ତା ଗୁଣ ଜଣାପଡ଼ିଲା ।

ସେଇ ଝିଅଟି ପ୍ରସବର ଭିତରୁ । ଗୁଣୀ ତାକୁ ଔଷଧ କରିଥିଲା ବୋଲି ସେ ବଞ୍ଚିଥିବା ଯାଏ ତା ଭୂଣ୍ଡରେ ଭୂଣ୍ଡୀ ବନ୍ଧା ହୋଇଥିଲା । ସେ ମଲାରୁ ରଙ୍ଗ ବାରିକର ମୁହଁ ଖୋଲିଲା ।

—ଶୁଣ ମ, ହାତଟା କାହିଁକି ଝକଝକ କରୁଛ ?

—ମଣିଷ କାନରେ ଶୁଣେ ମ ଅଜଣା, ହାତରେ ଶୁଣେ ନାହିଁ । ତମ ଭୂଣ୍ଡ କଥା କହୁଛ, ମୋ କାନ ମନଧ୍ୟାନ ଦେଇ ଶୁଣୁଛ । ଶୋଇଦେଲ ନାହିଁ, ନିଦ ଭାଙ୍ଗିଲା । କୁଆଡ଼େ ସେ ପଳାଇଲା, ତମ ନିଦୁଣୀକୁ ମୋ ନିଦ ସଙ୍ଗରେ ନେଇ ଅଭିମାନ କରି ଲୁଚି ପଳାଇଛ । ସଗ ତମ ତମ ହୋଇ ଯେତେବେଳେ ଆସିବେ ସେ ବର୍ଷେ, ମାଡ଼ି ବସିବେ, ଅଚଳ କରିବେ । ମୁଁ କଥା ନ କହିଲେ ନିଦ-ଭାଇ ନିଦୁଣୀ-ନାମୀକୁ ଗ୍ରୁଡ଼ି ଧାଇଁଆସିବ । ମୋତେ ଅଚେତ କରିବ । ତୁମର ଭୂତପ୍ରେତ କଥା ତୁମେ ଶୁଣିବ । ମୁଁ ଭୂଣ୍ଡରେ କହିଲେ, ତୁମ କଥା ଓ ମୋ କଥା ଧରାପରା ହେବେ । ଗଡ଼ାଗଡ଼ି ହେବେ, ସେଇଥିପାଇଁ ଭୂଣ୍ଡରେ ନ କହି ହାତରେ କହୁଛୁ । ଆଉ, ତୁମେ କାନରେ ଶୁଣି ଦେହରେ ଶୁଣୁଛ, ହଁ କହ ।

—କହିବ ନାହିଁ, ଯା ! ତୁମେ କହ, ମୁଁ ଶୁଣିବ । ମୋ ହାତ ସେମିତି କଥା କହିବ । ଦେଖିବ, କେମିତି ତୁମ ଭୂଣ୍ଡର କଥା ବାହାର ନ ଧରିବ ।

ମୋ ହାତ ଏବେ ଶୋଇପଡ଼ୁ । ଏଥର କହ, ମୁଁ ମନଦେଇ ଶୁଣିବ । ତମର ସରିଲେ ମୋର ଆରମ୍ଭ ହେବ । ତମ କଥା ଯେ ଅଧିକାଂଶ ଶୁଣିଲା କଥା । ମୋର ଯେ ନିଜେ ଦେଖି ଅଙ୍ଗେ ନିଭେଇଲା କଥା । ସବୁ ପଶ୍ଚାତିଲା ଘଟଣା । କହିବ ଯେ । ସତେ, ରାଣୀ ବାଉଳାଣୀ ମଶାଣୀଘୁରଣୀ କଙ୍କାଡାଆଣୀଥିଲା ?

—ଲୋକ ମୁଖରେ ସେଇ କଥା ପ୍ରଚ୍ଛନ୍ନତ ହେଲା ।

—ରାଣୀ ବଞ୍ଚିଥିବାବେଳେ ରଙ୍ଗ ବାଉଳ ତାକୁ ତାର ବନ୍ଧୁ ଘରେ କଥା ଅଁକଥାରେ ଗାଳିଗୁଲଜ କରେ । ଗଞ୍ଜେଇ ଟାଣି ବେଳେବେଳେ ନିସ୍ତୁଳ ହେବେ । ଯେତେ ଯେଉଁଠି ଡାଳମଟଣା ଜନିଯାତ୍ରାମେଳା ହୁଏ, ସେଠିକି ଯାଇ ଖଞ୍ଜଣି ବଜାଏ । ଗଞ୍ଜେଇ ଟାଣି ରାତ ଅଧରେ ଫେରେ । ଗାଁ ଯେବା କଣ ଯାହା ରୋଜଗାର କରିଥାଏ, ସେତକ ଗଞ୍ଜେଇ ଟଣାରେ ଯାଏ । ଘରେ ଚୁଲି ଜଳିବ କିପରି ? ଭୁଆସୁଣୀ ମାଇପ, ହାତେ ଓଢ଼ଣା ପକାଇ ଘରଘର ବୁଲି ଝିଅ ବୋହୂଙ୍କର ନଖ କାଟି ଗୋଡ଼ରେ ଅଳତା ପିନ୍ଧାଇ ଯେଉଁ ମାଣେ କି ପୋଷେ ନିଏ ସେତକ ହାଣ୍ଡିରେ ଫୁଟାଏ । ବାଡ଼ରୁ ଅନାବନା ଶାଗ ତୋଳି ଖରଡ଼େ । ତବତ ଭାତ, କାଞ୍ଜିପାଣି ଓ ଶାଗଖରଡ଼ା ଖାଇ ହାଲୁଟି ମାଉ ରଙ୍ଗ ବାଉଳ ନିଶ୍ଚିନ୍ତ । ରାଣୀ ପିଏ ପେଜ ମଧୁକ !

ରାଣୀର ଲୁଗା ଖଣ୍ଡି ପୁରୁଣା ହୋଇ ଚିରିଗଲା । ପଦାକୁ ପର ଘରକୁ ଯିବାକୁ ଲାଜ ମାଡ଼ିଲା । ତା ଦେହ ଯେମିତି ଡବଡବ କରି ପଦାକୁ ବାହାରିଲା, ଦାଣ୍ଡ ଲୋକେ, ତାଙ୍କର ଆଖି ଫୁଟିଯାଉ, ସେମାନେ ବି ରାଣୀକୁ ଡବଡବ କରି ଚାହିଁଲେ । ବାଟରେ ଚାଲିଲେ ତାର ଗୋଡ଼କୁ ଗୋଡ଼ ବାଜେ । ସେ ଲାଜରେ ଆଉ ପଦାକୁ ବାହାରେ ନାହିଁ । ଦେଖାପରି ସୁନ୍ଦର ମୁହଁ । ପେଜ ପାଣି ପିଇ, ପୁରୁଣି, କଳମଶାଗ, କଳମ୍ବ, ଶନୁଶୁନିଆ, ହଡ଼ମିଚ ଓ ବାଡ଼ରେ ଲଟେଇଥିବା ପ୍ରସାରୁଣୀ ଶାଗ, ଯେବେ ଯାହା ମିଳିଲା ଖାଇଲେ ବି ସ୍ୱାସ୍ଥ୍ୟ ଏଡ଼େ ସୁନ୍ଦର ଥିଲା ଯେ ଯାହା କହନ୍ତି, ମାଛି ବସିଲେ ଖସି ପଡ଼ିବ । ଲୋକଙ୍କର ଡାଆଣା ମନ ଜନଜନ ହୁଏ ବେଳି, ଅଲପେଇସିଆ-ମାନେ, ତାଙ୍କୁ ବାଡ଼ିଖାଉ, ରାଣୀ ଘର ଚାରିପାଖେ ଭଅଁର ପରି ବୁଲନ୍ତି ଗୋ

ବୋହୂମାନେ । ସେଇମାନଙ୍କ ଉପରେ ରାଣୀ ଭୁଆସୁଣୀ ପଦାକୁ ଗୋଡ଼ କାଢ଼େ ନାହିଁ ।

ବୁଢ଼ୀ ଜେମିତେଲୁଣୀ ଏମିତ କହେ, ଘରରେ ରାଣୀର ଚୁଲି ଜଳେନ । ହୁଣ୍ଡା ରଙ୍ଗିଆ ଖାଇବାକୁ ମାଗିଲେ ସେ କାହୁଁ ଆଣିବ ଯେ ଖାଇବାକୁ ଦେବ ? ଖାଲି ତୋରଣି କଂସାଏ ଓ ବାଡ଼ିଆଡ଼ ସଜନାଗଛ ଶାଗଖରଡ଼ା ବେଲାଏ ଆଗରେ ଥୋଇଦଏ । ପିଆଜ, କଞ୍ଚା ଲଙ୍କାମରିଚ ଓ ଟିକଏ ଲୁଣ । ସେଇକ ଦ ଉରେ ଆଗ ରଙ୍ଗିଆ ପେଟକ ଉଦରରେ ଭରେ । ଗଞ୍ଜେଇ ଟାଣି ଆଖି ଦୁଇଟା କୁମ୍ଭାଟୁଆ ଆଖି ପରି ହୋଇଥାଏ । ସେଇଠୁ ସେ ଧରେ ରାଣୀର ଚୁଟି । ପିଠିରେ ଦୁଲୁଦାଲ୍ ବିଧା ଗୋଇଠା ତାଳପଡ଼ିଲା ପରି ବସାଏ । କହେ, ହଇଲୋ ରାଣ୍ଡି, କଳେ ଭାତ ଖାଇ ମଟେ ତୋରଣି ଦେବାର ଭାବ ପାଉଁ ଏବେ ।

କାଟେଲ କେଳକହସା ହେବ ବୋଲି ରାଣୀ ପାଟିରୁଣ୍ଡ କରେ ନାହିଁ । ସୁକ୍ସୁକ୍ ହୋଇ କ ନ୍ଦେ । କହେ, ଯାହା ଭେଟିଲୁ ଗଞ୍ଜେଇ ଖାଇଲୁ । ମୁଁ କୋଉଠୁ କଅଣ ଆଣିବି ? ଦ'ଢନର ବାସି ତୋରଣିକୁ ମୁଁ ମନ୍ଦାଏ ପିଇଛୁ । ମାରଦେବୁ ତ ଜୀବନରୁ ମାରି ଦେଉନୁ, ଏମିତ କଲବଲ କରୁଛୁ କାହିଁକ ?

ରଙ୍ଗିଆ ଉତ୍ତର ଦଏ ନାହିଁ । ନିଶାରେ ସେ ଅଚେତ ହୋଇ ଶୋଇପଡ଼େ ।

ରାଣୀ ଭାବିଲା, ଜୀବନ ହାରିଦେବ । ରାତ ଅଧରେ ଦନେ ମଶାଣି ପୋଖରୀକୁ ଧାଇଁଲା । ବାଟରେ ହାଡ଼ୁବାଇଙ୍କ କୋଚଲା ବଣ ଭିତରୁ କଣ ଘଣଘଣ ଶୁଭୁଛୁ । ମରିବାକୁ ତ ଯ ଉଛୁ, ତାର ଅଉ କ ଡର ? ଠାକୁରାଣୀଙ୍କ ଅସ୍ଥାନ ପାଖକୁ ଗଲା । ଅନ୍ଧାର ରାତରେ ନଜେ ଠାକୁରାଣୀ ଠିଆ ହେ ଇଛନ୍ତି । କଳାଧୂମର ରୂପ । ମୁଣ୍ଡ ବାଳ ଲମ୍ବିଛି ତଳକୁ । ବାଳଯାକ କୁଜୁକୁଜୁଆ ପୋକ । ଆଖି ଦୁଇଟା ନିଆଁ ପରି ଦାଉ ଦାଉ ଜଳୁଛୁ, ହାତରେ ଖଡ଼ଗ ।

ଏ ରୂପ ଦେଖି ରାଣୀ ଧେଣ୍ଟମାଣ୍ଡ ଲମ୍ବହୋଇ ପଡ଼ିଗଲା । କହିଲା, ପୋଖରୀରେ ବୁଡ଼ିମରିବ କାହିଁକ ? ତୁଇ ମୋତେ ଖାଇଦେ ଲେ ମା ! ମୋ ଦନକାଳ ସରଯାଉ । ଆଉ କେତେ ହେଳ ଉପାସ, ଗାଲିଗଞ୍ଜଣା, ଚୁଟିଟଣା ମାଡ଼ ସହିବ ?

ଠାକୁରାଣୀ ବିକଟାଳ ରୂପ ଛାଡ଼ିଲେ । ସେଇଠୁ ହିଁ ହିଁ ହୋଇ ହସିଲେ । କହିଲେ ତୋ ଭକତିରେ ମୁଁ ଖୁସି । ତୁ ଯେତେବେଳେ ମନ କରିବୁ ମୁଁ ତୋ' ଠେଇଁ ଅବତରିବି । ମୋ ଅଂଶ ତତେ ଦେଲି । ଯିଏ ତତେ ଏତେ ହୀନବସ୍ଥା କରିଛି, ତା' ରକତ ମୁଁ ତୋ'ଓଠ ପାଟିରେ ପିଇବି । ସବୁଦିନେ ତାକୁ ଶୋଷିବୁ ।

ହେଇ ମଙ୍ଗୁଳି ବାଉରାଣୀ ବୁଢ଼ୀ ଘୁଅ ବରଚର ଆସୁଛି । ଲଙ୍ଗଳା ହୋଇ ହାତରେ ଚାଲୁଛି, ଗୋଡ଼ ଦଣ୍ଡା ଉପରକୁ ଟେକିଛି । ମୁଣ୍ଡବାଳ ତଳେ ଲେଟୁଛି । ଯେତେ ମନା କଲି ମାନିଲି ନାହିଁ, ଘୁଅ ଚଣିଲି । କାସ୍ତା ଅପବିତ୍ରର ଜଳ, ତୁ ଠେଇଁ ମୁଁ ଅବତରିବି ନାହିଁ । ତୋ ଠେଇଁ ଅବତରିବି । ଘୁଅ ଖାଇବୁ ନାହିଁ, ରକତ ଶୋଷିବୁ । ଆଉ କାହାର ନୁହେଁ, ଯେଉଁ ଅଲକ୍ଷଣୀର ଯିଏ ତୋତେ ଦହଗଞ୍ଜ କରୁଛି ।

ରାଣୀ ପଚାରିଲି, ସେ ମୋତେ ମାଣ ମାଣ ନସ୍ତାନ୍ତ କଲାଣି । କେମିତି ସେ ନଇ ହେବ, ଆ କହିଲେ ଆଇବ, ଯା କହିଲେ ଯିବ ? କେମିତି ସେ ଗଣ୍ଡେଇ ଛାଡ଼ିବ ?

ଠାକୁରାଣୀ ବୁଦ୍ଧି ବତାଇଲେ । ମଙ୍ଗୁଳି ବୁଢ଼ୀ ଆଉଟ, ତାକୁ ପଦ ଜଣା ଅଛି । ସେ ତତେ ମନ୍ତ୍ର କହିବ । ମୋ ନାମ କହିଲେ ସିଏ ତତେ ଔଷଧ ଦେବ । ଛାଗ ଉଣ୍ଡ ରଙ୍ଗ ଆଳୁ ଖୋଇବୁ । ଘନ ଥର ତ, ସେଇଠୁ ସେ ହେବ ମେଣ୍ଢା । ତୋ ଚୁଟିଧର ସ୍ୱର ପାଇବ ପଦ ପଢ଼ିଲେ ସେ ଶୋଇ ପଡ଼ିବ । ଶୋଇ ପଡ଼ିଲେ ତୁ ରକତ ଶୋଷିବୁ । ବେଶି ନୁହେଁ; ଅଳପ । ନୋହିଲେ ସେ ମରି ଯିବନି । ଆଜିଠୁ ତୁ ମୋର ସ୍ଥାନ ଜଗିଇବୁ । ଯାହା ମାଗିବୁ ଲୋକ ମନକୁ ଦେଇଯିବେ । ଯେଉଁମାନେ ତତେ ପାପ ଆଖିରେ ଚାହିଁଲେ, ସେଇମାନେ ତୋର ପାଦତଳେ ମୁଣ୍ଡ ନୋଇଁବେ ।

ଠାକୁରାଣୀ ଲୁଚେଇ ଗଲେ । ମଙ୍ଗୁଳି ଆଇଲି, ସେସବୁ କଥା ଶୁଣିଥିଲି । ଲୁଗା ଖଣ୍ଡିକ ବେଢ଼େଇ ହୋଇ କହିଲି, ସବୁ ମୁଁ ଶୁଣିଛି । ବୁଢ଼ୀ ହେଲି, କାଣକୁ ନ କହିଲେ କାଳେ ବେଳେ ମରିଯିବି, ପଦ ଲୋପ ହେବ । ଆଣ ତୋ କାନ, କହିଦେଇ ଯିବି ।

ରାଣୀ କାନ ଦେଖାଇଲା । ମଙ୍ଗୁଳି ଭୂଇଁ ହୋଇ ସାତ ଥର ପଡ଼ି କହିଲା । ରାଣୀ ମନେ ରଖିଲା ! ପଚାରିଲା, ସେଇଟାକୁ ବଶ କରିବାକୁ ଔଷଧ ଦେବୁଟି ?

ମଙ୍ଗୁଳୀ ବୁଢ଼ୀ ଟିକିଏ କଅଣ ଭାବିଲା । କହିଲା, ତତେ ତ ପଦ ଦେଲି, ମୋ ଶକ୍ତି ତୋ ପାଖକୁ ଗଲା । ସେଇଟାର ରକତ ଶୋଷି ଶୋଷି ଖାଇଲେ ସେ ଦୁର୍ବଳ ହେବ, ଟଳଟଳ ହେବ । ବଳେ କଥା ମାନିବ । ଉଠ୍ କହିଲେ ଉଠିବ, ବସ କହିଲେ ବସିବ । କଥା ନ ମାନିଲେ ଭଲ କରି ଶୋଷିନେବୁ ଯେ ସେ ଉଠୁ ଉଠୁ ଢଳି ପଡ଼ିବ । ବାରିକଘର ଝିଅ, ଆଉ କାହା ଘରକୁ ଯାଇ ସଂସାର କରିବ ।

ରାଣୀ କହିଲା, ନାହିଁ ଲୋ ଆଈ, ତାର ହାତ ଧରି ଆଣିଛୁ, ଜୀବନରୁ ମାରିବ ନାହିଁ । ଠାକୁରାଣୀ ରକତ ଚାହୁଁଛି । ମୋ ତୁଣ୍ଡରେ ସେ ଶୋଷେଇବ ସିନା, ମୁଁ ତ ଶୋଷିବି ନାହିଁ ? ପାପ ହେବ ଲୋ ଆଈ । ଔଷଧ ଦେବୁ ତ ସେ ବଶ ହେବ । ଠାକୁରାଣୀ ଯେଉଁଆ କହିଛନ୍ତି, ମୋ ଦେହରେ ସେ ପଶିଛନ୍ତି ।

ମଙ୍ଗୁଳୀ ବୁଢ଼ୀ ଭଲ କରି ରାଣୀକୁ ଚାହିଁଲା । ଚିତଉ ଉଆଁସ ରାତି ଦିନ ଥାଏ । ଛୁଣ୍ଡି ଛୁଣ୍ଡିକା କଳାଧୂମର ମେଘ ଫାଙ୍କରେ ପୂର୍ବ ଗଗନ ତୋରା ଦିଶୁଥାଏ । ଜହ୍ନ ଉଠିବ ପରା ! ତିନି ପହର ଅନ୍ଧାର ରାତି ଶେଷ ହୋଇ ଆସୁଛି । ପହରେ ଉଜଳ ରାତି ଯେ ମେଘମାଳ ପାଇଁ ଫରଚା ଦିଶିବ ସିନା, ଜହ୍ନ ଦିଶିବ ନାହିଁ । ତଥାପି ଗାଧୋଇ ପାଧୋଇ ସଫା ସୁତୁରା ହୋଇ, ଦିନ ପାହିଲା ଆଗରୁ ଘରକୁ ଫେରିବାକୁ ହେବ, ବିଛଣାରେ ପଡ଼ିବାକୁ ହେବ ।

କିନ୍ତୁ, ମଙ୍ଗୁଳୀ ଦେଖୁଛି କାହାକୁ ? ରାଣୀ ଫାଣୀ କେହି ନାହିଁ । ଆଗରେ ଠିଆ ହୋଇଛନ୍ତି ନିଜେ ହାଡ଼ୁବାଈ ଠାକୁରାଣୀ, କଡ଼କଡ଼ି ହସୁଛନ୍ତି ।

ମଙ୍ଗୁଳୀର ବୁଦ୍ଧି ହଜିଲା । ବାଉଳା ବାଉଳି ହୋଇ ତଳେ ଲମ୍ବ ହୋଇ ପଡ଼ିଲା । କହିଲା, ହେ ମା, ରକ୍ଷା କର ! ମୁଁ ତୋ ଆଜ୍ଞା ଅବମାନନା କରିଛି, ଭୁଲ କରିଛି ।

ଠାକୁରାଣୀ କହିଲେ, ଖାଲି ସେତିକି କରିନୁ, ପଦ ଉଚାରି ପରଘରର ହୋଇ ଭୁଆସୁଣୀ ଉଚାଣି ପିଲା, ଛନଛନିଆ ସୁନ୍ଦରିଆ ଟୋକାଟୋକୀଙ୍କୁ

ଅନେଇଁଲୁ । ଶୂନ୍ୟେ ଶୂନ୍ୟ ତୋ ଦୃଷ୍ଟିରେ ତାଙ୍କର ରକତ ଶୋଷି ଖାଇଲୁ । ପୁଣି ନଡ଼ାଟାଏ କି ଘାସଟା ଧରି ବଳରେ ପଞ୍ଜିଆରେ ଚରୁଥିବା ଗାଈଗୋରୁ, ଛେଳିମେଣ୍ଢାଙ୍କ ଦନ୍ତରେ ଲଗାଇ ରକତ ପିଇଲୁ । ରକତ ଖାଇ ଓଜନଟା ଗେରସ୍ତଙ୍କର ପ୍ରାଣ ବି ଶୋଷିନେଲୁ ।

ମତେ ମନାଏ ଦେଲୁ କି ମଙ୍ଗୁଳୀ ? ଘୁଅ ଚରି ଚରି କାସ୍ତା ଅଭ୍ରଷ୍ଟା କଲୁ । ଜାଣି ଜାଣି, ତେଣୁ ତୋ ଦେହରେ ମୁଁ ଅବତରି ପାରିଲି ନାହିଁ । ଏବେ ପା, ମନ୍ତ୍ର ପଢ଼ ଗୁଣୀକୁ ଦେଉଛୁ । ଆଉ ତୋ ମନେ ପଡ଼ୁବ ନାହିଁ କି, ଭୂଣ୍ଡରେ ପଇଟିବ ନାହିଁ । ଏଥର ଖାଲି ଘରେ ବସିବୁ, ଗାଳି ମାଡ଼ ଖାଇ ଦନ୍ତଗଞ୍ଜ ହେବୁ । ଗୁଣୀଙ୍କୁ ଓଷଦ ଦେ କହୁଛୁ ନୋହିଲେ, ତୋ ପ୍ରାଣ ଶୋଷିବି ।

ଏତକ କହି ଠାକୁରାଣୀ ମଙ୍ଗୁଳୀର ଜେଣା ଧରି ତଳୁ ଉଠାଇ ଠିଆକଲେ । ସେ ଦେଖିଲା, ଠାକୁରାଣୀ ଉଭେଇ ଯାଇ ଆଗରେ ଗୁଣୀ ହୋଇ ଠିଆ ହୋଇଛନ୍ତି । ଡରି ହରି କହିଲା, ଓଷଦ ନେଇ ତୋ ଘରେ ଦେଇ ଆସିଚ ଲେ, ବାଟିକରି ତୋରାଣିରେ ମିଶେଇ କୌଶଳରେ ପେଇଦେବୁ । ମୋ ଦୋଷ ନାହିଁ । ତେଣିକି ତୋ କପାଳ ।

ମୋ ଜୀବନରେ କେତେ ଅଚ୍ୟାଗୁର ସହିଲା ଘରଣୀମାନଙ୍କୁ ଓଷଦ ଦେଇଛୁ । ମାରଣା ଷଣ୍ଢ ପରି ଗେରସ୍ତମାନେ ମେଣ୍ଢାଛୁଆ ପରି ହୋଇଛନ୍ତି ଲୋ ଗୁଣୀ ! କାମୁଡ଼ା କୁକୁର କି, ବିଲୁଆ ପରି ଘଇତାମାନେ ମୂଷାପିଲା ପରି ହୋଇ କୋଳରେ ପଶିଛନ୍ତି, କାନ୍ଥତଳ ଗାଡ଼ ଗ୍ରୁଡ଼ି ଆଉ କେଣେ ଧାଇଁ ନାହାନ୍ତି । ସାପ ପରି କଥା ଅକଥାରେ ଫଁ ଫଁ ହୋଇ ଚ୍ୱେଟ ମାରିଲା ସ୍ୱାମୀମାନେ ଫଣା ନୋଇଁଛନ୍ତି, ବିଷ ଗ୍ରୁଡ଼ିଛନ୍ତି । ଅଣ୍ଡାପୁତା ପରି ଅଣ୍ଡାରେ ଗୁଡ଼େଇ ହୋଇ ରହିବାକୁ ଅଳି କରିଛନ୍ତି ।

ଆଉ କହିବି କି ? ଷଣ୍ଢ, ଭୂଆ ବଦଳଇ ପରି ସାତ ଘରେ ମୁହଁ ମାରିଲା ରସିକଶେଖରମାନେ, ମୋ ମନ୍ତ୍ରୁରା ଓଷଦ ଖାଇ ସୁଧାର କୁକୁର ପିଲାପରି ଯାହା ଦିଅ ତା' ଖାଇ, ଖୁସିରେ ଲାଙ୍ଗୁଡ଼ ହଲାଇ, କୋଳରେ ବସି, ତାଙ୍କୁ ତଳିପା ଲେହନ କରିଛନ୍ତି ।

ଆଉ ଶୁଣିବୁ ? ମଣିଷପଣିଆଁ ଦେଖେଇ ହୋଇ ଘରଘରଣୀଙ୍କ ପରଅଗ ରଖି, ଛକର, କେତେ ଦେବାଆ ନଲକା ପିଲିପିଚକାର ବାପମାନେ, ପର ଦରବରେ ଆଖି ପକାଇ ଲୁଙ୍ଗ୍‌ ଗ୍ରପଣ କରୁଥିଲେ ଲେ ରାଣୀ ନାଉଣୀ । ମୋ ମନ୍ତ୍ରସ ଓଷଦ ଖାଇ ଓଲଟି ପଡ଼ିଲେ । ଚନ୍ଦ୍ରସେଣା ହେଲେ । ସଙ୍ଗାତ, ମଇଁଷ, ମକର, ଗୁନ୍ଦବସି ଅନ୍ୟ ମଣିପଙ୍କ ଘରକୁ ଆଣିଲେ, ନଜେ ଦୁଆର ଜଗିଲେ । ହିଁ ହିଁ ହିଁ, ଆଖି ଲୁଉଁଛୁ ଲେ !

ରାଣୀ କହିଲା, ଛି ଛି ଛି, ଦୋଗ୍ଧରୁଣୀ ହେଲେ ?

ମଙ୍ଗୁଳୀ ବୁଢ଼ୀ କହିଲା, ଦୋଗ୍ଧରୁଣୀ କଇଁକ ହେବେ ଲେ ନାଉଣୀ ରାଣୀ? ଦୁନଆଁ ଆଖିରେ, ଲୋକଙ୍କ ମୁହଁରେ ଦୋଗ୍ଧରୁଣୀ କଏ କରେ କ ? ନଜ ଗେରସ୍ତ ନାଜ ଉଙ୍ଗରେ ନଜ ତୁଣ୍ଡରେ ସତୀ ମ ଇପକୁ ଅସତୀ ବୋଲାଏ, ଅସତୀକୁ ସତୀ ସୁଲକ୍ଷଣୀ କରାଏ ।

ମୋ ଓଷଦ ପେଟରେ ପଡ଼ିଲେ ଗେରସ୍ତ ଯେ ଭଣଯାକୁ ମୁଣ୍ଡରେ ଧର ବୁଲିବ । କାଲି ସଞ୍ଜବେଳେ ମୁଁ ନଜେ ନେଇ ତୋତେ ଦେଇ ଆସିବ । ମୋ ପାଇଁ କଅଣ ରଖିଥିବୁ ଲେ ! ହେଇଟି ଦୂରରେ କଏ ଗୋଟାଏ ଆଉଛୁ । ଅନ୍ଧାର ଜମି ଜମି ଯାଉଛୁ, ମୁଁ ଯାଏଁ ଲେ ।

ମଙ୍ଗୁଳୀ ବୁଢ଼ୀ ପଳାଇ ଲେ ମାଅମାନେ ! ରାଣୀ ବାଣକାଣୀ ହାଡ଼ୁବାଣ୍ଡ ଠାକୁରାଣୀଙ୍କୁ ସୁମରଣା କଲି, କହିଲା, ମୋ ଦେହରେ ଅବତର ।

ରଙ୍ଗିଆର ନଶା ଗୁଡବାକୁ ସେ ହାତ ଅଣ୍ଡାଳିଲା, ରାଣୀ ପାଖରେ ନାହିଁ । ଝକମକ ପଥର ମାର ଢ଼ବର ଜଳାଇଲା । ରାଣୀ ଘରେ ବାହାରେ କେଉଁଠି ନାହିଁ । ମନରେ ସନ୍ଦେହ ହେଲା । ଖିଅର କଲି ଛୁରଟା ଧର ଘରଯାକ ଗାଁ ଦାଣ୍ଡ, ବାର ବଗିଚ୍ଚ ଖୋଜିଲା, ଦାନ୍ତ ରଗଡ଼ୁ ଥାଏ । ହାବୁଡ଼େ ପଡ଼ିଲେ ରାଣୀର ଓ ତା' ସାଙ୍ଗର ତଣ୍ଟି କାଟିବ ହୁଲପ କରିଥିଲା ।

ଠାକୁରାଣୀଙ୍କ ବରଗଛ ମୂଳେ ରାଣୀକ ଦେଖି ସେ ଅଟକିବାକୁ ଲଗିଲା । ରାଣୀ ନଙ୍ଗଳା ମୁକୁଳା ହୋଇ ବସିଛୁ, ମୁଣ୍ଡ ବାଳ ତଳେ ଲୋଟୁଛୁ । ଆଖି ଦୁଇଟା ନଆଁ

ପରି କରୁଛ । ଭାକସୀ ଲଗିଲା ପରି ଝୁଲୁଚ, ଦାନ୍ତ ରଗଡ଼ୁଛ, ଆଉ କହୁଛ, ମୁଁ ହାଡ଼ୁବାଇ, ଏ ଗାଁରେ ଅନ୍ୟାୟ ହେଲା । ଗଣ୍ଡେଇ ଖାଇ ଘଇତାମାନେ ଘରି ମାଇପମାନଙ୍କର ଚୁଟିଧରି ମାଇଲେ ମୁଁ ତାଙ୍କୁ ଖାଇବି । ମୁଁ ତାଙ୍କର ଅଂଶ ବଂଶ ବୁଡ଼େଇବି, ମୁଁ ଖାଇବି ।

ଏକଥା ଶୁଣି ରଙ୍ଗ ବାଉରି ଲମ୍ବହୋଇ ତଳେ ପଡ଼ିଲା । ଦୁଇ ହାତ ଲମ୍ବେଇ ରାଣୀ-ଠାକୁରାଣୀର ଗୋଡ଼ଧରି କହିଲା, ଆଉ ମୁଁ ଏଡ଼େ ଅଧର୍ମ କାମ କରିବି ନାହିଁ । ରାଣୀକୁ ମାରିବି ନାହିଁ । ମୋତେ ରକ୍ଷାକର ହାଡ଼ୁବାଇ ମା !

ଠାକୁରାଣୀ କହିଲେ, ମତେ କାନ୍ଧରେ ବସେଇ ଘରକୁ ନେ । ମୁଁ ସେଇଠି ରାଣୀକୁ ଗ୍ରହିତ ଆସିବ । ନୋହିଲେ, ଆଗ ତୋତେ ଖାଇବି, ସେଇଠୁ ରାଣୀକୁ ଖାଇବି । ତୋ ବଂଶ ବୁଡ଼େଇବି, ତୋ ଘର ପଛଅଡ଼ ତେନ୍ତୁଳିଗଛରେ ରହିବି ।

ନେଉଛି, ନେଉଛି, କହି ରଙ୍ଗ ରାଣୀକୁ ଟେକି କାନ୍ଧରେ ବସାଇଲା । ଗଞ୍ଜର ବିଲ ବାଟରେ ଅଣନିଶ୍ୱାସୀ ହୋଇ କଣ୍ଠାଘଣ୍ଟା ଡେଇଁ ଧଇଁସଇଁ ହୋଇ ଘରକୁ ପରେ ପହଞ୍ଚିଲାବେଳକୁ ଗୋଡ଼ ଜାଙ୍ଗୁଲୁ ଜାଙ୍ଗୁଲୁହେଉଥାଏ । ରାଣୀକୁ ଝଟରେ ପକାଇ ସେ ନିଜେ ତ ଅଚେତ ହୋଇ ତଳେ ପଡ଼ିଲା, ଦିନ ହ'ଘଡ଼ି ହେଲା ବେଳକୁ ଆଉ ଉଠିପାରୁଛି କେଉଁଠି ? କେତେବେଳେ ରାଣୀ ଉଠି ତା' ପାଖରେ ଶୋଇଛି । ଅଧେ ରକତ ଗୋଡ଼ବାଟେ ଭୂଇଁରେ ଶୋଷିଖାଇଛି । ପାଦ ଦୁଇଟାରେ ଖଣ୍ଡିଆ ଦାଗ, ରକ୍ତବି ଲଗିଛି ।

ମାଆମାନେ ଗୋ, ସଞ୍ଜବେଳେ ମଙ୍ଗୁଳୀ ବୁଢ଼ୀ ଔଷଧ ଦେଇଗଲା । ରାଣୀ ବାଉରାଣୀ ରଙ୍ଗିଆକୁ ଖୋଇ ବଶ କଲା । ସତେ କି ସେ ମେଣ୍ଢା ଛୁଅଟେ । ଉଠ୍ କହିଲେ ଉଠେ, ବସ୍ କହିଲେ ବସେ । ସତେ କି ରଙ୍ଗିଆ ତାର ପୋଷାକୁକୁର । ଦେଖିଥିବ ତ ଏଣୁବ, ଆଉ ଅଧିକ କି କହିବ ।

ମଙ୍ଗୁଳୀ ବୁଢ଼ୀ ମଲା ଆଗରୁ ତାର ବିଶ୍ୱାସୀମାନଙ୍କୁ କହି ଯାଇଥିଲା । ଠାକୁରାଣୀ ରାଣୀ ଦେହରେ ଅବତରଣ ବୋଲି ସାହାସ କରି ସେମାନେ ପ୍ରଘଟ କରୁ ନ ଥିଲେ । ରାଣୀ ମଲା, ରଙ୍ଗିଆ ଆଉ ଗୋଟିଏ ଘରଣୀ ଦୁଇଅ ବାହାହୋଇ ଆଣିଲା । ନୂଆ ଘରଣୀକୁ ତା' ସଉତୁଣୀର ରାଣୀର ଭୂତ ଲଗିଲାରୁ ଗୁଣିଆଁ ଆସି ସବୁ

କଥା ଜଣେଇଲା ଭୂତକୁ ଡାକିଲା । ଗୁଣୀ ମଶାଣିଚଣ୍ଡୀ ହୋଇ ଆଉ କେଉଁ ମଶାଣିକୁ ପଳାଇଲା ଯେ, ଆମ ଗାଁ ନିଶ୍ଚିନ୍ତ ।

— ଶୋଇ ପଡ଼ିଲ କି ? କେମିତି ଝିଲେଇଣୀ ଏଇ କଥା କହେ, ଭେଲ ଲୁଣ ବିକ ଯା'ଏ । ଚମ ଦେଖିଲା କଥା କହୁବ ପରା ମତେ ! ଶୋ'ଇପଡ଼ିଲ କି ?

— ଶୋଇ ନାହିଁ ଅଜପୀ, ମଙ୍ଗୁଲୀ ବୁଢ଼ୀର ଓଷଦ କଥା ଶୁଣୁଛି ।

ମଙ୍ଗୁଲୀ ବୁଢ଼ୀ ବଡଗ ମନ୍ତ୍ର ଓ ଔଷଧ ଗୁଣୀ ବାଣକାଣୀକୁ ଦେଇ ସେପୁରକୁ ଗଲା । ଆରେ ଅଜପୀ, ସେ କେଉଁଠି ମଶାଣିଚଣ୍ଡୀ ହୋଇ ବୁଲୁଥିବ । କେତେ ରୂପ ଧରୁଥିବ । ମଣିଷ, ପଶୁ, ପକ୍ଷୀ, ସରୀସୃପ, ଗଛ, ମାଛ । ତା ଚେଲା ଗୁଣୀ ବି ମଶାଣିଚଣ୍ଡୀ ହୋଇ ସେମିତି ବିବିଧ ରୂପ ଧରୁଥିବ ।

ରାତି ଅଧରେ, ଅକସ୍ମାତ୍ କେଉଁ ନିଛାଟିଆ ବଣ ଜଙ୍ଗଲିଆ ମଶାଣି ଭୂଇଁରେ, ଗାଁର ବିଲ ମଝି ଚଲାବାଟ ଶଗଡ଼ ଗୁଳା ପାଖରେ, ଯେଉଁଠି କିଆବଣ ଥିବ, କାଁ-ଭାଁ ଖଜୁରି, ତାଳ, ନଡ଼ିଆ, ବର, କି ଆମ୍ବଗଛ ଥିବ, ଗାଁ ପାଖରୁ ଅଳପ ଦୂର କେଉଁ ନାଳବନ୍ଧର ବନ୍ଧ ଆମ୍ବ, ପଣସ, ଗୁଣ୍ଡୁ, ଖଜୁରିଗଛ ପାଖରୁ ବୁଢ଼ବୁଢ଼ିଆ ଥାନରେ, ଯେଉଁଠି ନାଳର ପାଣି ପୋଲ ବାଟେ କଡ଼ନାଳରେ ପଶୁଥିବ, ଚୁନା ମାଛ ଛକ୍ ଫକ୍ ଡେଉଁଥିବେ ପୁଣି ଗାଁ ଗଣ୍ଡା ପାଖରୁ ଦୂରରେ, କେଉଁ ରାସ୍ତା କଡ଼ରେ, ଯେଉଁଠି ଏନ୍ଦୁପରୁ ଗଛ ମୂଣ୍ଡ ଟେକ ଠିଆ ହୋଇଥିବ, ପୁରୁଣା ନଅଁଣିଆ ଏକପାଖିଆ ଜଙ୍ଗଲିଆ ଜାଗା, ଗାଁ ପାଖରୁ ଦୂର ଅଗଣ୍ୟେଘେର କେଉଁ ବଙ୍ଗଳା ଓ ରହଣି ଘର, ଅତି ପୁରୁଣା ଭାଙ୍ଗି ପଡ଼ିଥିବା ଅବା ଭାଙ୍ଗି ପଡ଼ୁଥିବା କେଉଁ କୋଠାଘର, ବଅଁ ନ ଥିବା ମନ୍ଦିର, ଯାହାର ଫାଟି ଆଁ କଲା କାନ୍ଥ ଉପରେ ବର ଓସ୍ତ, ଡିମିରି ଗଛ ଉଠିଥିବ, ଝଙ୍କାଳିଆ ହୋଇଥିବ, ସେଇଠି ଯେତେବେଳେ ମଙ୍ଗୁଲୀ ଓ ଗୁଣୀ ଏକା ରୂପରେ ଭେଟାଭେଟି ହେଉଥିବେ ଲଗି ଯାଉଥିବ ଧରାପରା, ଚୁଟି ଟଣାଟଣି, ବିଧା, ଗୋଇଠା, କାମୁଡ଼ାକାମୁଡ଼ି ।

— କାହିଁକି ସେମାନେ ଲଢ଼ିବେ ?

—ରାଣୀକୁ ମନ୍ଦ୍ର କଲି ମାଗୁଥିବ, ଦେ ମୋ ପଦ, ମୋ ଔଷଦ । ଥିଲବେଳେ କାହାକୁ ଶିକ୍ଷାଇ ଆସିଲୁ ନାହିଁ । ଆପଣା ସାର୍ଥିକା ରୁ ଅଗଣା ବରକୁ ମଣ କଲୁ । ଅଳପ ଅଳପ କର ଧନ ରାଉରେ ରକତ ଶୋଷି ତାକୁ ନକ୍ସବା କର ଚରଣକଙ୍କର କଲୁ, ଗ୍ରଣ ପୂଅର ମା ହେଲୁ । ଠାକୁରାଣୀଙ୍କୁ ନଜ ଦେହରେ ଅବତରାଇ ଲୋକଙ୍କୁ ପାଦପୂଜା କରାଇଲୁ । ବଡାଇ ଦକ୍ଷିଣା ନେଇ ଧନ ଗୁଣ୍ଡୁକୁ ଧନ ମାଜ କରାଇଲୁ । ନଜକୁ ନ ଦେଇ ଛଡ଼ାଫୁଲ ଖୋଇଲୁ, ପାଦଧୂଆ ପାଣି ପେଇ ଇର୍ଶ୍ଵୀଆମାନଙ୍କୁ ଗାରଡ଼ କର ନଜ ନଜର ଗୃହାଳରେ ବନ୍ଧାଇଲୁ । ବାହୁଣରୁ ପାଣ୍ଡୋଇ ସାଏ ସମସ୍ତଙ୍କର ନ୍ଦାର ନେଇ ମାଆ ମାଆ ଡାକ ଶୁଣିଲୁ । ହେଲେ, ଅତ ଲୋଭ ତୋର ବନାଶର ହେତୁ ହେଲ । ସେ ଯାହାହେଉ, ସତୀ ଶିରୋମଣି ଅନ୍ନଅନ୍ନାଣୀ ହୋଇ ପୂଅ ପତଙ୍କ ମୂର୍ଖ ଖାହିଁ ଏ ପୁରକୁ ଅଇଲୁ, ସତ, ଅନାଟେତରେ ନଜ କର୍ମ ପାଇଁ ପେଟର ଛୁଆକୁ ମାଇଲୁ । ସେଥିପାଇଁ ପ୍ରେତନୀ ହୋଇ କଷ୍ଟ ପାଇଲୁ । ସଉରୁଣୀ ଦେହରେ ପଶି ତାକୁ ହଟହଟା ଲୋକହସା କରେଇଲୁ ବୋଲି ଗୁଣିଆଁ ତତେ ସେ ଗାମରୁ ନକାଲଲ, ତୋତେ ପ୍ରମୋସନ୍ ଦେଲ । ଏବେ ହେଲୁ ତୁ ମଶାଣିଚଣ୍ଡୀ ମୋ ସମସରସା । ଦେ ମୋ ପଦ, ଦେ ମୋ ଔଷଦ—

ଅତସୀ ଅସିତର କଥା ଶୁଣି ହସି ଉଠିଲ । ପୁଣି ଅସ୍ଵାଭାବକ ଭାବରେ ଗମ୍ଭୀର ହେଲ । ଅସିତ ପାଖରୁ ଅଳମ ଘୁଞ୍ଚିଆସି ଅଭିମାନ କର କହଲ—ମୋଔଣ କଥ କୁ ତୁମେ ଓଲଟାଇ କହ ମତେ ଉପହାସ କରୁଛ । ମତେ ପ୍ରକାନ୍ତରେ ଜଣାଇ ଦେଉଛ ଯେ ମୁଁ ମିଛ କହୁଛ, ନୋହଲେ ବଢ଼ାଇ କହୁଛ । ମୁଁ ଯାହା ଆଖିରେ ଦେଖିଛୁ ଓ କାନରେ ଶୁଣିଛୁ, ସେଇଆ କହଲ । ସତ ମିଛ ମୋତେ କ ଜଣା ? ରାଣୀ ଛଳନା କର, ପେଖନା କର, ଠାକୁରାଣୀ ପଣ ଧର ତା ସ୍ଵାମୀ ଓ ଗ୍ରାମଲୋକଙ୍କୁ ଠକବାକୁ ଚେଷ୍ଟା କରଥାଇ ପାରେ; କନ୍ତୁ ବହୁ ବର୍ଷର ଅଭ୍ୟାସ ଓ ଅଭିନୟ କଲପରେ ନଶ୍ଚେ ତା ମନରେ ବଶ୍ଵାସ ଓ ଧାରଣା ହୋଇଥିଲ ଯେ, ଠାକୁରାଣୀ ତା ଦେହରେ ଅବତରନ୍ତ, ସେ ଠାକୁରାଣୀ ହୁଏ ।

ତାକୁ ଯଦ ସେ ଅବତରଲବେଳେ ତୁମେ ଦେଖିଥାଆନ୍ତ, ତେବେ ବୁଝନ୍ତ । ଆମେ ସମସ୍ତେ ତାର ଛଡ଼ାଫୁଲ ପାଉଛୁ । ଚରଣୋଦକ ଢୋକୁଛୁ । ଦଣ୍ଡବତ

ହୋଇଛୁ । ବାପା ବିଶ୍ୱାସ ନ କରି ଅନ୍ଧା କରନ୍ତି ବୋଲି ବୋଉ ଲୁଚେଇ ଲୁଚେଇ କାନ୍ଦେ । କ'ଣ ତାଙ୍କର ଅମଙ୍ଗଳ ହେବ; ଏଇ ଡରରେ ପାଦୁକ ଫୁଲରୁ ଟିକଏ ଜଳଖିଆରେ ମିଶାଇ ନଜେ ପାଖରେ ବସି ଖୁଆଏ । ପାଣି ଗିଲାସରେ ଚରଣାମୃତ ଟିକଏ ଢାଳି ପିଆଏ । ସେଇଠୁ ତାର ଆନନ୍ଦ କହିଲେ ନ ସରେ । କହେ, କାହାକୁ କହିବୁ ନାହିଁ ଲେ ଅତସୀ, ତୋ ବାପାଙ୍କୁ ଏଥର ହାଡ଼ୁବାଇ-ମା ଘଣ୍ଟ ଘୋଡ଼ାଇ ରଖିବେ, ରୋଗ ବଇରାଗ ତାଙ୍କ ଦେହ ଛୁଇଁବ ନାହିଁ ।

ଅସିତ ପଚାରିଲା, ବୋଉଙ୍କ ଆଦେଶ ଅମାନ୍ୟ କଲ ? ତୁମକୁ ଗୁପ୍ତରେ ସେ ଯାହା କହିଥିଲେ ମୋ ଆଗରେ ପ୍ରକାଶ କରିଦେଲ ? ସେ ଶୁଣିଲେ କଅଣ ଭାବିବେ ?

ଅତସୀ କହିଲା, ତୁମେ ନ ଲେଖିଲେ, ନ କହିଲେ ସେ ଜାଣିବ କିପରି ? କଥା କହିବାବେଳେ ମୋ ତୁଣ୍ଡରୁ ଖସିଗଲା । ତୁମେ କାହାକୁ କହିବ ନାହିଁ ଏ ବିଶ୍ୱାସ ମୋର ଅଛି ।

--ସତ ସେ ଅତସୀ, କେବେ, କଥା କହିବାବେଳେ କେବେ ଯଦି ମୋ ତୁଣ୍ଡରୁ ଖସିଯାଏ ?

—ମୋ ବୋଉ ହସିବ । ଏବେ ବାପାଙ୍କ ଢଙ୍ଗର ପରିବର୍ତ୍ତନ ହୋଇଛି । ନାହିଁକ ହେଲା କେହି ଜାଣନ୍ତି ନାହିଁ । କାହାଠାରୁ ସେ ଦୀକ୍ଷା ନେଇ ନ ଥାନ୍ତି, ମୁଣ୍ଡରେ ଚଳଚ ଲଗାଇ ମାଳା ଗଡ଼ାଉ ନାହାନ୍ତି ସତ; ଠାକୁର ଠାକୁରାଣୀଙ୍କ ଉପରେ ତାଙ୍କର ଅଚଳା ଭକ୍ତି ହୋଇଛି । ଗୀତା, ଭାଗବତ, ରାମାୟଣ ଓ ଚଣ୍ଡୀ-ପୁରାଣ ସକାଳେ ସଞ୍ଜେ ପାଠ କରୁଛନ୍ତି । କଥା କଥାକରେ କହୁଛନ୍ତି, ହରି ଭରସା ।

ନଜେ ପିତଳର ଆଣ୍ଠୁଆ ଗୋପାଳଙ୍କୁ ପୂଜା କରୁଛନ୍ତି । ତୁଳସୀପତ୍ର ଓ ସେଇ ଗୋପାଳଙ୍କର ଚରଣଧୁଆ ପାଣି ଆଗେ ପିଉଛନ୍ତି । ଆମିଷ ସ୍ପର୍ଶ କରୁ ନାହାନ୍ତି । ସେ ଦୁର୍ବଳ ହୋଇ ଯାଉଛନ୍ତି ବୋଲି ବୋଉ ମନରେ ଚିନ୍ତା । କେତେଥର ହୋଇ କାନ୍ଦୁଛି ମୋ ବୋଉ । କହୁଛି, ପୂଜା କରିବ ଭଲ ଯେ, ମାଛ ମାଂସ ନ ଖାଇ ଦେହ ଦୁର୍ବଳ କରିବା ଭଲ ନୁହେଁ । ଯୋଗୀ ମୁନିମାନେ ମାଂସ ଖାଉଥିଲେ । ନଜେ ଭଗବାନ ରାମଚନ୍ଦ୍ର ମୃଗୟା କରି ମାଂସ ଖାଇଥିଲେ । ବୋଉ କଥା ଶୁଣି ବାପା ହସନ୍ତି । ତଥାପି ଆମିଷ ଛୁଅନ୍ତି ନାହିଁ, କାହିଁକି ଏପରି ହେଲା ?

—ଯେପରି ହୁଏ ଗୋ ଅତସୀ ! ଓଲଟା ଗଙ୍ଗା ବି ଦେଖାଯାଏ । ଆମ ଜେଜେ ମାଳା ଗଡ଼ାଉଥିଲେ । ଶୁଣିଛି, ପଞ୍ଚାବନ ବର୍ଷ ଯାଏ ଆଇଁଷ ତ ଦୂରର କଥା', ପିଆଜ ରସୁଣ ଖାଉ ନ ଥିଲେ । ଆମ ବାଡ଼ି ପୋଖରୀର ନାଲିପାଟିଆ ଦଶ-ସେରିଆ ଭାକୁଡ଼ ମାଛର ପାଟି ପାକୁ ପାକୁ ଦେଖି ସେ ଦିନେ ଲୋଭେଇଗଲେ ।

ଥରେ ଚାଖିଲେ । ସେଇଠୁ ଚାଲିଲା ତ । ମାଛ, ବିବିଧ ପ୍ରକାର ମାଂସ; କୁକୁଡ଼ା ବି ତ୍ୟାଜ୍ୟ ଗଲା ନାହିଁ । ଡିମ୍ବର ପୋଚ, ଅମ୍ଲେଟ ତ ମାମୁଲି, ହଳ ଦିନର ଜଳଖିଆ । ଇଲିସି ଶୁଖୁଆକୁ ଅଧିକ ପସନ୍ଦ କରନ୍ତି । ମାଳା କୋଥଳି କୁଆଡ଼େ ଗଲା କିନ୍ତୁ ତୁଣ୍ଡରେ କହନ୍ତି 'ହରି ହରି' । ମଲାବେଳକୁ ସେ ହରିନାମ ତୁଣ୍ଡରେ ଧରିଥିଲେ ।

ଅବଶ୍ୟ ସେ ମୁକ୍ତିଲାଭ କରିଥିବେ । ଇଏ ତ ଅନେକ ଦିନ ତଳର କଥା । କିନ୍ତୁ ତମ ବାପା, ଅର୍ଥାତ୍ ମୋ ଶ୍ୱଶୁରଙ୍କ କଥା ଶୁଣି ମୁଁ ଭାବୁଛି—ଧେତ୍, କହିବି ନାହିଁ ।

—ମୋ ରାଣ, କହ କହ ।

—ଇଲ୍ଥିକ୍ ! ମୋତେ ବାଧ୍ୟ କର ନା ଅତସୀ ! କହିଲେ ତୁମେ ରାଗିବ, ଅଭିମାନ କରିବ, ନୋହିଲେ ମୋ ପାଖରୁ ଆହୁରି ଘୃଣାରେ ତେଣିକି ଘୁଞ୍ଚିଯିବ । କାନ୍ଥ ଭିତରୁ ସାହାବାଣୀ ମୁହଁ କାଢ଼ିଲେ ବି ଉଣିବ ନାହିଁ ।

ଅତସୀ ମଶାରି ଭିତରୁ କାନ୍ଥଆଡ଼େ କଡ଼େଇ ଚାହିଁ ଅନ୍ଧାରରେ ଆଖି ବୁଜିଲା । ରୁଦ୍ଧ ଦାଉ ଦାଉ । ସେ ଅସିତ ଆଡ଼କୁ ଲାଗିଆସି ତାକୁ ଆଲିଙ୍ଗନ କଲା । ତାର ମୁହଁରେ ବୋକ ଦେଇ କହିଲା, ସୁନାଟି ପରି, କହ । ମୁଁ ରାଗିବି ନାହିଁ, ଅଭିମାନ କରିବି ନାହିଁ, ଆଉ ଘୁଞ୍ଚିଯିବି ନାହିଁ ।

ଅସିତ କହିଲା, ରାଣୀ ବାରିକାଣୀ ତମ ବୋଉଙ୍କର ନଖ କାଟେ । ଗୋଡ଼ରେ ଅଲତା ଲଗାଏ । କେତେ ଦୁଃଖସୁଖ ହେଉଥିବ । ମାଗିକରି ଶାଢ଼ି ନେଉଥିବ, ପଇସା କଉଡ଼ି ବି ନେଉଥିବ । ସବୁବେଳେ ତା ଦେହରେ ଠାକୁରାଣୀ ଅବତରନ୍ତି ନାହିଁ । ରାଣୀ ମନକଲେ, କେଉଁଠି କଅଣ ନ୍ୟାସ୍ତ ଦେଖିଲେ, କହିପୋଛି କରି ସେ ଠାକୁରାଣୀଙ୍କୁ ଡାକେ ।

ସତ କଥା ! କେବଳ ଠାକୁରାଣୀ ଗାତରେ ନିଜ ମନକୁ ଅର୍ପି ତା ଦେହରେ ଆସ୍ଥା ନିଅନ୍ତି । ତା ପାଇଁରେ ରଙ୍ଗ ଆଉ ରକ୍ତ ଶୋଷି ଖାଆନ୍ତି । କେମିତି ତେଲୁଣୀ କହିଲା ପରି ! ରାଣୀ ଏକା ମୋ ବୋଉର କାହିଁକି, ସବୁ ଝିଅ ବୋହୂ-ମା'ମାନଙ୍କର ସେବା କରେ । ଠାକୁରାଣୀଙ୍କ କଥା ପଚାରିଲେ ସେ ହସେ ଓ କହେ ତାଙ୍କ କଥା ମତେ କି ଜଣା ହାଆନ୍ତାଣିମାନେ ? ତାଙ୍କ କଥା ସେ ଜାଣନ୍ତି । ମୁଁ ତାଙ୍କର ସେବା କରେ । ଗାଁରେ ଏତେ ଲୋକ ଥାଆନ୍ତି କାହିଁକି ଯେ ମା' ମୋତେ ଶ୍ରଦ୍ଧା କରନ୍ତି, ମୋଠେଇଁ ଅବତରି ମୋତେ ଲୋକହସା କରନ୍ତି ସେ କଥା ତାଙ୍କୁ ଜଣା !

ମୋ ଜୀବନ ଯଦି ସେ ଶୋଷିନିଅନ୍ତେ ଗୋ ସାନ୍ତାଣୀ ମୁଁ ଝାହିଗଲି ପାଇ-ଯାଆନ୍ତି । ଏତେ କଳବଳ, ଏତେ ହଟହଟା, ଲୋକହସା ହୁଅନ୍ତି ନାହିଁ । ହାଣ୍ଡିରେ ପେଜ ନାହିଁ, ଦେହ ଘୋଡ଼ାଇବାକୁ ଦରିଦ୍ର ଲୁଗା ବକଟେ ନାହିଁ । ଠାକୁରାଣୀ ମତେ ଆହୁରି ଦହିଗଞ୍ଜ କରିବାକୁ ଗୋଟାକ ପରେ ଗୋଟାଏ ପିଲା ଆମର ନଥିଲା ଘରକୁ ଠେଲି ଦେଉଛନ୍ତି । ପୁଅଟାଏ ହେଲେଣି ।

ରାଣୀ ବାଉରାଣୀର ଆଖିରେ ଲୁହ ଭରେ । କି ଶୋଭା ରୂପ ସେ ପାଇଥିଲା ! ଭ୍ରୂଲତା ଦିଓଟି ଅତି ସୁନ୍ଦର । ତା' ଆଖିର ଲୁହ ତା ମୁହଁକୁ ବେଶି ସୁନ୍ଦର କରେ । ବୋଉ, ଖୁଡ଼ୀ ଓ ଅନ୍ୟମାନଙ୍କର ମନ ଅନ୍ୟମାନଙ୍କର ମନ କିଣିନିଏ ତା ରୂପ, ଢଙ୍ଗ ଓ କଥା ।

ସେମାନଙ୍କ ମନ ଭିତରେ ଭୟ ଯେ ଲୁଚକାଳି ଖେଳୁ ନ ଥିବ, ଏକଥା କିଏ କହିବ ? ସାତ ଦିନ ତଳେ ସେଇ ରାଣୀ ଠାକୁରାଣୀ ହେଇଥିଲା । ସମସ୍ତେ ତା ଆଗରେ ଓଳଗି ହେଉଥିଲେ । ତା ଦେହର ଫୁଲକୁ ପାଦୁକ କରି ପାଉଥିଲେ । ତା, ଅଇଁଠା କି ହାତବୁଡ଼ା ପଣା-ପାଣିକୁ ଅମୃତ ପରି ମଣୁଥିଲେ ।

ସେଇ ରାଣୀ ତ ସ୍ୱେ, ନଖ କାଟୁଛି, ଗୋଡ଼ରେ ଅଳତା ଓ ହାତରେ ମଞ୍ଜୁଅତି ଦେଉଛି, ମୁଣ୍ଡରୁ ପାଚିଲା ବାଳ ଓପାଡ଼ି ସାଉଁଳି ଦେଉଛି । ମଜଗ ଛଡ଼େଇବାକୁ ଗୋଡ଼, ହାତ, ପିଠି ଘଷି ମୋଡ଼ି ଦେଉଛି । ମନା ମାନୁ ନାହିଁ, ଓଲଟି କହୁଛି, କେଡ଼େ ଧୀର କଅଁଳ ମନକିଣା କଥା, ମୁଁ ବାଉରି ଝିଅ, ସେବା କରିବା ମୋ କାମ, ମୋ ଧରମ ।

କହିଲ ଭଲ, ତା କାମ ଦେଖିଲେ, ତା କଥା ଶୁଣିଲେ କିଏ ଖୁସି ନ ହେବ ? ମାଇପେ ମାଣେ ନ ଦେଇ ସେରେ ଦଅନ୍ତି । ତା ସଙ୍ଗରେ ପନିପରିବା ତେଲଲୁଣ । ପାଇସାଏ ନ ଦେଇ ଅଣାଏ ଦଅନ୍ତି । ପୁରୁଣା ଲୁଗା ନ ଦେଇ ନୂଆ ଲୁଗା ଦଅନ୍ତି । ଯାହା ଦଅ କି ନ ଦଅ, ସେ ଖୁସି । ତା ଶ୍ରେଷ୍ଠ ପାଟିର ପାତଳ ନାଲିଆ ଓଠରେ ଅଳପ ମନସନ୍ତୋଷିଆ ହସ । ଆଖିର ଉଜଳ ଚାହାଣି ଧୀରେ ଧୀରେ ଚାରିଆଡ଼େ ବୁଲିଯାଏ ।

ବୋଉ ଏଇଆ କହେ । ପୁଣି କହେ, ରାଣୀର ଚାହାଣି ଲୋକଙ୍କ ମନରୁ ସବୁ ମଇଳା ଓଟେଇ ନିଏ, ବାରଘର ସେ ହୁଏ । ଚାଲିଯାଏ ଗୁଣ୍ଡୁଣି ହାତୀ ପରି । ମୁଣ୍ଡ ଉପରେ ଟେକେଇ, ହାତେ ଓଢ଼ଣା । ଆଖି ଏ କଡ଼ ସେ କଡ଼ ହୁଏ ନାହିଁ ।

—ତୁମ ବୋଉ ତାକୁ ଖୁବ୍ ଭଲ ପାଉଥିଲେ, ଅତସୀ ?

ମୋ ବୋଉ ସମସ୍ତଙ୍କୁ ସ୍ନେହ କରେ । କେହି ତାର ଶତ୍ରୁ ନାହାନ୍ତି । ରାଣୀକୁ ସେ ଅତି ଭଲ ପାଉଥିଲା । ପିଠା-ପଣା ହୋଇଥିଲେ ରାଣୀ ଯଦି ଆସିଥିବ ତ, ସେ ନାହିଁ ନାହିଁ କଲେ ବି ପାଖରେ ବସି ତାକୁ ଖୁଆଏ । ରଙ୍ଗିଆ ପାଇଁ ଓ ରାଣୀର ପିଲାଙ୍କ ପାଇଁ ଦ' ପୁଷ୍ଟା ଏଣ୍ଡୁରି, କାକରା ଆରିସା ପିଠା ବାନ୍ଧିଦିଏ ।

ଦୁନିଆଯାକର ଲଜ ସେ ରାଣୀଠେଇଁ ! ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ସେ କାଖ କରେ, କୋଳ କରେ । ପିଲା ମୁହଁ ଏଣେ ତେଣେ କଲେ ଖାଇବାକୁ ଅନ ଦିଏ । କେଡ଼େ ଖୁସି ହେ ହୁଏ । ଆଉ ପିଲାଏ ! ମୁଁ କୁଆଡ଼େ ପିଲାଦିନେ ରାଣୀର ଅନ ଖାଇଛି । ଥରେ ନୁହେଁ, ଅନେକ ଥର । ତା ବଡ଼ ପୁଅ ମୋ'ଠୁ ତିନି ବରଷ ସାନ ।

—ତେବେ ତ ତମ ଦେହରେ ରାଣୀ ବାଗକାଣୀର ରକତ ପଶିଛି, ଅତସୀ ! ହାଡ଼ୁବାଇ ଠାକୁରାଣୀଙ୍କ ଅଂଶ ତମଠେଇଁ ଅଛି !

—ସେମିତି ଭାବିଲେ ଆମ ଗାଁର କେତେ କେତେ ପିଲା, ପୁଅ ଓ ଝିଅଙ୍କ ଦେହରେ ତାର ରକତ ଓ ଠାକୁରାଣୀଙ୍କ ଅଂଶ ଥିବ । ବାହ୍ମଣୀ, କରଣ, ଖଣ୍ଡେଇତା ଗୁଡ଼ିଆ, ବଢ଼େଇ ଇତ୍ୟାଦି ସବୁ ପିଲା । ଆମ ସମସ୍ତଙ୍କୁ ସେ ତା କ୍ଷୀରର ଧାରରେ ବାନ୍ଧି ଏକା ରକ୍ତର ଭାଇଭଉଣୀ କରେଇଛି ।

ବୋଉ କହେ, ସ୍ୱର୍ଣ୍ଣୀର ଅନନରେ ଠାକୁରାଣୀ ଏତେ ଛୀର ପଠୁଥିଲା, ସତେ କି ସେ ଗୋଟେ ଦୁଧିଆଳୀ ଗାଈ । ବୋଉ ତାକୁ ସତେ ଭଲ ପାଉଥିଲେ । ମନରେ ତାର କିଛିଏ ଭକ୍ତି ଓ କିଛିଏ ଭୟ ଯେ ଲୁଚି ଛପି ରହି ନ ଥିଲା, ଏକଥା କିଏ ଜାଣେ ? ସ୍ୱର୍ଣ୍ଣୀର ମରଣ ପରେ ଓ ରଙ୍ଗର ନୂଆ ସ୍ୱଶଳା ଆସିଲା ପରେ, ସ୍ୱର୍ଣ୍ଣୀ ବାବଦରେ ଲୋକେ ନାନା କଥା କହିଲେ । ବୋଉ ସବୁ ଶୁଣେ, ତୁନି ହୋଇ ରହେ ।

ଅସିତ କହିଲା, ତୁମ ବାପାଙ୍କର ପରିବର୍ତ୍ତନର କାରଣ ଏବେ ମୁଁ ବୁଝିପାରିଲି ।

ଅତସୀ ପଚାରିଲା, କଅଣ, ଶୁଣେ ?

— କହୁଛି, ରାଗିବ ନାହିଁ । ମଙ୍ଗୁଲୀ ବୁଢ଼ୀ ସ୍ୱର୍ଣ୍ଣୀ ବାଳକାଣ୍ଣୀକୁ ଯେଉଁ ଔଷଧ ଦେଇଥିଲା, ମେଇଟା ଗୋଟାଏ ଗଛ । ତା ନାମ ବି କହି ଦେଇଥିବ । ଅତି ସ୍ନେହ ଓ ଆଦର କରି ତମ ବୋଉ ଅର୍ଥାତ୍ ମୋ ଶାଶୁ, ସ୍ୱର୍ଣ୍ଣୀଠୁଁ ସେ ଗଛର ନାମ ଜାଣିଥିବେ । ଯୋଗାଡ଼ କରିଥିବେ ଓ···ଆଉ କହିବି ନାହିଁ ।

କଅଣ କହୁ କହୁ ଅସିତ ତାର ବାକ୍ୟର ଶେଷ ଅଂଶ ଢୋକିନେଇ ନୀରବ ରହିଲା । ଏହା ଅନୁମାନ କରିବାକୁ ଅତସୀକୁ ସମୟ ଲାଗିଲା, ଦୁହେଁ ନୀରବ । ରାତି ଅଧ ହେଲାଣି । ମୁଣ୍ଡ ପାଖରେ ମଶାରି ଆରପଟେ ରଖା ହୋଇଥିବା ଟି-ପଏ ଉପରେ ଗ୍ରେଟ ରିଷ୍ଟ ଓ୍ୱାଚର ଟିକ୍ ଟିକ୍ ଶବ୍ଦ କାନରେ ବାଜୁଛି । ବାହାରେ ପବନର ସାଇଁ ସାଇଁ । ନିଶା ଚଢ଼ୁଛି । ନୀରବ ହଣିଥିଲା କଥା କହୁଛି । ଭୟଙ୍କରିଆ ଲାଗୁଛି । ସମସ୍ତେ କହନ୍ତି, ଭୂତପ୍ରେତଙ୍କର ବିଚରଣ କରିବାର ବେଳ ଏଇ ନିଶୀଥ, ଗ୍ରୀଡ ଦାଉଁ ଦାଉଁ ପଡ଼ୁଛି । ରାତ୍ରିର ନୀରବତା ସତେ କି ଭୂତପ୍ରେତଙ୍କର ଜନନୀ ।

ହୁଁ-ହୁଁ-ହୁଁ । ସାହାଣୀବାର ପ୍ରେତନୀ କାହାକୁ ଜବାବ ଦେଉଛି । ଠକ୍-ଠକ୍ ଠକ୍ । କୋଟା ଠକ୍ ଠକ୍ କରି ଘର ଆଗରେ କିଏ ଚାଲିଯାଉଛି । ସାହାବ ହୋଇଥିବ ! ଛୁ । ହେଇଟି ବନ୍ଧୁକ ଫୁଟିଲାଣି । ଅହା, ସାହାବାଣୀ ମଲା । ଛୁ-

ଛ । ଖାନସାମା ମଲ ପରି, ହାଃ-ହାଃ-ହାଃ । ଦୂରରୁ ସାହେବ ଅଧା ପାଗଳିଆ ହସ ଶୁଭୁଛି । ଉଁ-ଉଁ-ଉଁ । ସାହେବାଣୀ ପ୍ରାଣ ଯିବା ଆଗରୁ ସେ ବିକଳ ହୋଇ କାନ୍ଦୁଛି ଯେ କାନ୍ଦପାରୁ ନାହିଁ । ଘୁଉଁ ଘୁଉଁ-ଘୁଁ, ସକେଇ ସକେଇ କାନ୍ଦୁଛି । ବନ୍ଦ ହେଲା । ମଶଗଲ ବିଚାରା । ଅତି ଦୂରରେ କିଏ ଗୋଙ୍ଗିଆ ଗୋଙ୍ଗି ହେଉଛନ୍ତି । ମଦୁଆ ଅଧା-ପାଗଳ ସାହେବଙ୍କୁ ଧରିବାକୁ ଲୋକେ ଧାଇଁଛନ୍ତି, ହଁ ।

— ଶୁଭୁଛି କି ? ଅତସୀ ଫୁସ୍ ଫୁସ୍ କରି ପଚାରିଲା ।

— ଅସିତ ଗୁନ ଗୁନ ଉତ୍ତର ଦେଲା, ସବୁ ଶୁଭୁଛି । ଅତି ପିଲାଦିନୁ ଥରେ ନୁହେଁ ସହସ୍ର ଥର, ସେମାନଙ୍କର ସ୍ୱର ଶୁଣିଛି ! କଥାଭାଷା, ହସ ତାମସା ଓ କାନ୍ଦ-ବୋବାଳିଆ ଶବଦ ମୋ କାନରେ ବାଜୁଛି । ସେମାନଙ୍କର ଦଉଡ଼ା ଦଉଡ଼ି, କଜିଆ, ଧରାପରା, ନାଚ ମୁଁ ଦେଖିଛି ଗୋ ଅତସୀ ! ବିଶ୍ୱାସ କର, ସେମାନେ ଅଛନ୍ତି । ଏଇ ଦୁନିଆରେ, ଆମ୍ଭମାନଙ୍କ ପାଖରେ, ଦେଖା-ଅଦେଖାରେ ଜଣା-ଅଜଣାରେ କାରବାର ହୁଅନ୍ତି, ଡର ନା, ଶୁଣ । ସେମାନେ ମଣିଷର ଅନିଷ୍ଟ କରନ୍ତି ନାହିଁ । କେଜାଣି କଦବା ହାବୁଡ଼ିଗଲେ—

ଡର ମାଡ଼ୁଛି ।

— ଭୟ ନାହିଁ । ଘରର କବାଟ ବନ୍ଦ ଅଛି । କୋଣରେ ବାଘ ଗୁଳ ଝୁଲୁଛି । ଲୁହାର ପଦାର୍ଥମାନ ଏ ଘରେ ପୁଣ ରହିଛି । ଦେହରେ ବସନ ନ ଥିଲା ଲୋକକୁ ସେମାନେ ଡରନ୍ତି, ତୁମକୁ ନିଶ୍ଚୟ ଡରିବେ । ତଥାପି ଡରୁଛ ? ଥରୁଛ ? ଆଚ୍ଛା, ଗୋଟିଏ କଥା କର । ତମ ମୁଣ୍ଡକୁ ମୋ ଛାତି ଉପରେ ରଖ ।

ହଁ, ହେଲା, ଆଉ କ ଡର ? ଶୁଅ ଏଥର ।

ରେଜେଇ ଭିତରେ ଅସିତର ହାତପାପୁଲି ଅତସୀର ଦେହ ଆଉଁସୁଛି । ସ୍ୱାମୀଙ୍କର ଛାତିର ଦୁକ୍ ଦୁକ୍ କାନରେ ବାଜୁଛି, ଦୁକ୍-ଦୁକ୍ ଦୁକ୍ । ଦୁହିଁଙ୍କର ଏକକାଳୀନ ଶ୍ୱାସପ୍ରଶ୍ୱାସ ସୁଁ-ସୁଉଁ ସୁଁ-ସୁଉଁ । ବାହାରୁ ଶୁଣାଯାଉଛି, ଠକ୍ ଠକ୍ ଠକ୍ । ହାଃ ହାଃ । ଉଁ-ଉଁ-ଉଁ, ଖେଁ ଖେଁ ଖେଁ । ସ୍ୱାଁକ୍ ସ୍ୱାଁକ୍ ସ୍ୱାକ୍ । ଉଢ଼, ଉଢ଼, ଉଢ଼, ଉଢ଼ । ହେଃ, ହେଃ ହେଃ ହେଁ, ଧପ ଧପ୍ ଧପ୍ ଧପ୍ । କ୍ୱାଁ କ୍ୱାଁ । ପୁଣି ସାଇଁ ସାଇଁ ପବନର ଚଳଣ । କିଏ ପୁଣି, ତାଳି ମାରୁଛି ।

ସ୍ୱାମୀଙ୍କର ଶ୍ରାଦ୍ଧ ଉପରେ ତାର ମସ୍ତକ । ଦେହରେ ତାଙ୍କର ଅମୃତ ସ୍ପର୍ଶ, ସବଦୁଃଖହରା ପରଶ । ଆଉ ତାର ମନରେ ଭୟ ବା ଭାବନା ରହିବ କାହିଁକି ?

ସେମାନେ ଅଛନ୍ତି ଅତସୀ, ମଣିଷର ପାଖେ ପାଖେ ଅଛନ୍ତି । ଯେତେ ଯେଉଁଠି କବରଖାନା ଅଛି, ଖ୍ରୀଷ୍ଟାନ ହେଉନ୍ତୁ କି ମୁସଲମାନ ହେଉନ୍ତୁ, ସବୁ ମୃତଙ୍କର ଭୂତମାନେ ପୃଥିବୀ ପ୍ରଳୟ ହେବାଯାଏ ସେଇପରି ଥିବେ । ହିନ୍ଦୁମାନଙ୍କର ବାବାଜି ସନ୍ନ୍ୟାସୀ ଯେଉଁମାନେ ପୋଡା ନ ହୋଇ ସମାଧିରେ ପଶିଛନ୍ତି, ଯେଉଁମାନେ ହଇଜା, ବସନ୍ତ ଇତ୍ୟାଦି ରୋଗରେ ମରନ୍ତି, ଯାହାଙ୍କର ମଲା ଦେହ ମୋଡା ନ ହୋଇ ପୋତା ହୁଏ, ସେମାନଙ୍କର ଭୂତ ଓ ପୋଡ଼ା ହୋଇ ହେଲେ ବି ଅମୋକ୍ଷ ଆତ୍ମାର ପ୍ରେତମାନେ ସୃଷ୍ଟି ଆରମ୍ଭରୁ ରହିଛନ୍ତି । ଏହି ଦୁନିଆରେ ରହିବେ ।

ଶୁଣ ଅତସୀ, ଭୂତପ୍ରେତ ଯଦି ଥିବେ, ଥିବାର ସମ୍ଭାବନା ତ ଅଛି, ଲକ୍ଷ ଲକ୍ଷ ବର୍ଷ ପୂର୍ବେ, ଯେବଠୁଁ ଏଇ ମଣିଷଜାତି ଏଇ ମଣିଷର ରୂପ ଧରି ଏଦୁନିଅରେ ଆତଯାତ ହେଲେଣି, ସେବଠୁଁ ସେମାନେ ନାନା ରୂପ, ନାନା ବେଶରେ କାରବାର ହେଉଥିବେ ।

ଏ ଯୁଗରେ ମଣିଷ ପାପ କରୁଛି, ଆଉ ସେ ଯୁଗରେ ମଣିଷ ପାପ କରୁ ନ ଥିଲା, ଏ ଧାରଣା ଠିକ୍ ନୁହେଁ, ଅତସୀ ! ମଣିଷ ରୂପ ଧରିଲା ଦିନଠାରୁ ସେହି ଦୂର ଅତୀତ, ଲକ୍ଷଲକ୍ଷ ବର୍ଷ ପୂର୍ବରୁ ଆରମ୍ଭ କରି ମଣିଷ ଏବଯାଏ ସାମାଜିକ ନିୟମ ଓ ନିଜ ଚଳନର ସମାଜ ଓ ଧର୍ମର ନୀତି ଗଢ଼ିଛି । ନିୟମ ଓ ନୀତି ଭାଙ୍ଗିଲା ନାମ ହିଁ ଦୁଷ୍କର୍ମ । ଦୁଷ୍କର୍ମ ସେ ପାପ । ଲୋକ ଦେଖିଥିବା ପାପ ହେଉ, ଅବା ନିଜ ବ୍ୟକ୍ତି ଆଉ କେହି ନ ଜାଣିଥିବା, ନ ଦେଖିଥିବା ପାପ ହେଉ, ଲକ୍ଷରେ ପାଞ୍ଚ ସାତ ଜଣଙ୍କୁ ବାଦ୍ ଦେଲେ ଅନ୍ୟମାନେ କିଛି କିଛି କରନ୍ତି । କେତେ ଅନୁତାପ କରନ୍ତି, କେତେ ନ କରନ୍ତି !

ନୂତନ ଧର୍ମ ଖ୍ରୀଷ୍ଟଧର୍ମ ଓ ମୁସଲମାନ ଧର୍ମ ପ୍ରକାରେ ପାପାତ୍ମା ହେଉ ବା ପୁଣ୍ୟାତ୍ମା ହେଉ, ସବୁ ମଣିଷଙ୍କ ପ୍ରେତ ଏ ଦୁନିଆରେ ଅପେକ୍ଷା କରି ରହିଛନ୍ତି । ପ୍ରଳୟ ଯାଏ ଅପେକ୍ଷା କରି ରହିଥିବେ । ସବୁ ଭୂତପ୍ରେତ ଏକାଠି ହୋଇ ଯଦି

କେବେ ଗୋଟିଏ ରାତିରେ ଉଠି ମଣିଷମାନଙ୍କୁ ଆକ୍ରମଣ କରିବେ, ରାତି ପାହିଲାବେଳକୁ ସମସ୍ତେ ନିପାତ ହୋଇଯାଇଥିବେ । ଖାଲି ମଲା ଦେହଗୁଡ଼ାକ ପଡ଼ିଥିବ । ସବୁ ମଣିଷ ଭୂତ, ପ୍ରେତ, ଡାଆଣୀ, ଚିରୁଗୁଣୀ, ମଶାଣିଚଣ୍ଡୀ ହୋଇଯାଇଥିବେ ।

—ସତେ ତ !

ଭୂତପ୍ରେତ ଥାଇପାରନ୍ତି, ଥିବାର ତ ସମ୍ଭାବନା ରହିଛି, ଏଇ ଶୁଣି ପୁଣି କେତେ ପ୍ରକାର ବିକଟାଳ ରଡ଼ି ସେମାନେ ଗୁଣ୍ଡିଲେଣି । ତେବେ, ମଣିଷକୁ ସେମାନେ ଆକ୍ରମଣ କରନ୍ତି ନାହିଁ ବୋଲି ମୋର ଧାରଣା । ତାଙ୍କ କାମ ସେମାନେ ଝିଁରୁଥାଆନ୍ତି । ଅବେଳରେ ନିଗ୍ରୁଟିଆ ଜାଗାରେ, କେବେ କେମିତି ମଣିଷ ସେମାନଙ୍କୁ ଦେଖିଲା ପରି ବୋଧ କରୁଥିବ । ସେମାନଙ୍କର ରଡ଼ି ଓ କୁହାଟ ଶୁଣିଲା ପରି ମଣୁଥିବ । ନିଜେ ନିଜେ ମଣିଷ ଡରେ, ସେଇଠୁ ସେ ମରେ ଓ ଭୂତ କି ପ୍ରେତାତ୍ମା ହୁଏ ।

କେବଳ ମଣିଷ ଭୂତ ହୁଅନ୍ତି, ଏ ଧାରଣା ଏକାଥରେ ଭୁଲ । ଯେଉଁମାନେ ଭୂତପ୍ରେତ ଦେଖିଛନ୍ତି, ନ ଦେଖିଥିଲେ ବି ବନ୍ଧୁବାନ୍ଧବ, ଜଣାଅଜଣା ବାଟୋଇ, ଥିଲା ନ ଥିଲା ଅଲକ୍ଷଣ କି ବେଶି ଚଳନିଆ ଅତିଥିମାନଙ୍କ ମୁହଁରୁ ତାଙ୍କର ଦେଖିଲା ଘଟଣା ଶୁଣିଛନ୍ତି ଅତସୀ, ମୋ ପରିକା । ମୁଁ ଶୁଣିଛି ଶହେ, ଦେଖିଥିବି, ରଖ ମନେ ପକାଏଁ, ହେବ ଅନ୍ତତଃ ସତର ଥର । ତୁମର ଶୁଣିବାକୁ ଆଗ୍ରହ ଥିଲେ, ଧୈର୍ଯ୍ୟ ଥିଲେ, ଠିକେ ଠିକେ ଗୋଟିଏ ଗୋଟିଏ କରି ସବୁ କହିବି । ଆଜି ରାତିଟା ପାହୁ ପଛକେ ଚିନ୍ତା ନାହିଁ । ସେମାନେ ଜାଣନ୍ତି ଯେ ପଶୁପକ୍ଷୀ, ଟେବୁଲ ଚେୟାର, ମଟରଗାଡ଼ି, ବଳଦଗାଡ଼ି, ସାଇକେଲ, ହାଣ୍ଡି କୁଣ୍ଡେଇ, ବିଡ଼ି ସିଗାରେଟ, ଘଣ୍ଟା, ଚଷମା, ଜୋତା, କଲମ ଇତ୍ୟାଦି ସବୁପ୍ରକାର ଜୀବ ଓ ପଦାର୍ଥ ଭୂତପ୍ରେତ ହୁଅନ୍ତି । ବିଶ୍ୱାସ କର ଅତସୀ, ଭୂତ ପ୍ରେତ ଯଦି ସତ୍ୟ ହୋଇଥିବେ ଏହା ନିରାଟ ସତ୍ୟ ! ମୁଁ ଶୁଣିଛି, ନିଜ ଆଖିରେ ବହୁବାର ଦେଖିଛି ।

ଅତସୀ ହସିଉଠିଲା । ଅସିତର ଛାତି ଉପରୁ ମୁଣ୍ଡ ଉଠାଇ କଡ଼େଇ ଶୋଇଲା । ଖସି ପଡ଼ିଥିବା ବସନକୁ ଦେହ ଉପରକୁ ଟାଣିଲା । କହିଲା —ତୁମେ

ମୋତେ ଠକୁଛ କି ? ଯଦି ସତ ହୋଇଥାଏ ତେବେ ତୁମର ଦେଖିଲା ଶୁଣିଲା କଥା ମୋତେ କହୁନ, ଏତେ ଭୁଲାଇ ଭୁଲାଇ କହୁଛ କାହିଁକି ?

—ସବୁ କଥା ତୁମକୁ କହିବି, ଦେହ ନ ଥିଲା ଭୂତପ୍ରେତ ଓ ମଶାଣିଚଣ୍ଡୀ-ମାନଙ୍କ କଥା ଓ ମଣିଷ ଦେହରେ ଅବତରିଲା ଦେବଦେବୀଙ୍କ କଥା । କିନ୍ତୁ, ଗୋଟିଏ କଥା ମୋ ମନରେ ଛଟପଟ ହେଉଛି । ମଙ୍ଗୁଲୀ ବୁଢ଼ୀ, ମଶାଣିଚଣ୍ଡୀ ରୂପ ତାର ବଦଳିଯାଉ, ସେ ମୁକ୍ତ ହୋଇ ମଣିଷ ମହଲକୁ ଫେରିଆସୁ, ଯାହାକୁ ଯେଉଁ ଗଛ ଦେଇଥିଲା, ଯାହା ସେଇ ଗଛ ନିଶ୍ଚୟ ତୁମର ବୋଉଙ୍କୁ ଦେଇଥିବ ।

ତୁମ ବୋଉ ତୁମକୁ ଅତି ସ୍ନେହ କରନ୍ତି । ତୁମେ ଅଳି କଲେ ସେ ଗଛର ନାମ କହିଦେବେ । ମୋତେ କହିବ, ମୁଁ ଜଙ୍ଗଲ ଅଫିସର । ପାହାଡ଼ ଗଡ଼ାଣିରେ ସେଇ ଗଛ ଲଗାଇବି, ପ୍ଲାଣ୍ଟେସନ କରାଇବି ।

ବୁଝିଲ ଅତସୀ, ସେଇ ଗଛ ଦେଶରେ ପ୍ରଚୁର ଉତ୍ପାଦନ କରାହେବ । ଦେଶରେ ତ ଯାହା ବ୍ୟବହାର କରା ହେବ, ସେଥିପାଇଁ ସରକାର ଅନେକ ଟଙ୍କା ପାଇବେ । ନିଲାମ ଟଙ୍କା, କ'ଣ ବୁଝିଲଟି ? ବାକି ଗଛ ବିଦେଶକୁ ରପ୍ତାନି କରି ଯଥେଷ୍ଟ ବିଦେଶୀ ପାଣ୍ଠି ଅର୍ଜନ କରା ହେବ ।

ଅତସୀର ରାଗିବାକୁ ମନହେଲା ।

ଅତସୀର ବାପା ପିଲାଦିନେ ତାକୁ ଓ ଅନ୍ୟାନ୍ୟ ପିଲାଙ୍କୁ ବୁଝାଇ କହନ୍ତି, ଶୁଣରେ ପିଲାଏ—ମଣିଷ ଜନ୍ମ ପାଇଲେ ମନରେ ରାଗରୋଷ, ମାନାଭିମାନ ବସା ବାନ୍ଧି ରହିଥାଆନ୍ତି । ଖାଲି ମଣିଷ କାହିଁକି, ଜୀବଜନ୍ତୁଙ୍କଠେଇଁ ବି ରାଗରୋଷ ଥାଏ । ରାଗ ହେ ବ୍ରହ୍ମଚଣ୍ଡାଳ । ମଣିଷ ତାକୁ ଧୈର୍ଯ୍ୟର ଶିକୁଳିରେ ବାନ୍ଧି ରଖିଥାଏ । ସେ ଶିକୁଳି କାହାର ଟାଣ, କାହାର ପତଳା । କାହାର ଲମ୍ବ ଓ କାହାର ଛୋଟ । କାହାର ମନର ଖୁଣ୍ଟରେ ଟାଣ ହୋଇ ବନ୍ଧା ହୋଇଥାଏ, କାହାର ହୁଗୁଳାହୋଇ । ଧୈର୍ଯ୍ୟର ଶିକୁଳି ହୁଗୁଳାକଲେ, ଟାଣି ହେଲେ, ଛିଣ୍ଡିଲେ, ରାଗରାକ୍ଷସ ଚଢ଼ିକି ବସେ । ସେଇ ରାଗ ଯେ ରାକ୍ଷସ, ଭୂତପ୍ରେତ, ମଶାଣିଚଣ୍ଡୀ ।

ତୁମେ ଆମେ ଦେଖିପାରୁ ନାହୁଁ ସିନା ପିଲାଏ, ଅତସୀର ବାପା କହନ୍ତି, ସେଇ ରାଗରାକ୍ଷସ ଯେ ଭୂତ, ପ୍ରେତ, ମଶାଣିଚଣ୍ଡୀ । ତାଆର ଗୋଟା ଗୋଟା ଶିଙ୍ଘ ।

ସେ କେଉଁଠି । ତା ଦେହସାର ନାଗଫେଣିଆ କଣ୍ଟା, ଯେ ଫୋଡ଼େ । ତା ପାଟି ଅଜଗର ସାପର ଅଁ ପଣ । ଯେ ଧରେ, ଧୀରେ ଧୀରେ ଗିଳେ । ହାତଗୋଡ଼ର ନଖଗୁଡ଼ାକ ବାଘନଖ ପରି । ସେ ବଦାରେ ! କେଣ୍ଟା କେଣ୍ଟା କରେ । ତା ଆଖିରେ ପ୍ରଳୟ ନିଆଁ ଜଳେ, ସେ ପୋଡ଼ି ପାଉଁଶ କରେ ।

ଶୁଣିଥା ପିଲାଏ, ମନେ ରଖିଥା, ସେଇ ଭୟଙ୍କର ଭୂତ ତୁମର, ମୋର ଓ ଅନ୍ୟମାନଙ୍କର ମନ ମଧରେ ଶୋଇଛି । ତାର ଚହଟିକା ଛନ୍ଦ କୁକୁର ଛନ୍ଦ ପରି ସବୁବେଳେ ଭୁଙ୍କୁଛି । ଆଖିରେ ନିଆଁ ଜାଳି ସେ ଚାହିଁଛି, ଝାଉଁ ଝାଉଁ ହେଉଛି ।

ଅତସୀ ମନେ ପକାଇଲା । ଥରେ ନୁହେଁ, କେତେ ଥର, ତା ବାପା ଧମନ୍ତରୀଙ୍କୁ ଡକାଇ କହୁନ୍ତି, ମନର ରାଗ-ରାକ୍ଷସକୁ ଖୋଲିବ ନାହିଁ, ହଲାଇ ଉଠାଇବ ନାହିଁଟି । ସେ ଆଗ ତମ ନିଜକୁ ଗ୍ରାସି ବଦାରି, ପୋଡ଼ିଜାଳି କଷ୍ଟ ଦେବ । ସେଇଠୁ, ଅନ୍ୟକୁ. ଯାହାର ରାଗ-ରାକ୍ଷସ ରେରେକାର କରି ଆବେଇ ଆସିଥିବ । କାହାରି ଲାଭ ହେବ ନାହିଁ, ସମସ୍ତଙ୍କର କ୍ଷତି ହେବରେ ପିଲାଏ !

ରାଗବେଶର ଭୟଙ୍କର ଭୂତ ଉଠିବାକୁ ଛଟପଟ ହେଲେ ଟିକଏ ଆଖି ବୁଜିବ । ମନେ ମନେ ଜଗତ୍‌ଜନନୀ ମା ଦୁର୍ଗାଙ୍କ ନାମ ବାରମ୍ବାର ସ୍ମରଣ କରିବ । ଭିତରର ହେଉ, କି ବାହାରର ହେଉ, ଭୂତପ୍ରେତଗୁଡ଼ା ଛୁଡ଼ି ପଳାଇବେ । ଭୟ ଭାଙ୍ଗିବ । ଶାନ୍ତି ବିରାଜିବ, ବିବେକ ବିପଥଗାମୀ ହେବ ନାହିଁ । ମନେରଖିଥା ରେ ପିଲାଏ ଆଜିଠୁ ଅଭ୍ୟାସ କର ।

ବାପା ଆସି ଆଗରେ ଠିଆ ହେଉଛନ୍ତି । ମୁଣ୍ଡରେ ହାତରଖି ପିଲାଦିନର କଥା ମନେପକାଇ ଦେଉଛନ୍ତି । ଅତସୀ ଦୁର୍ଗାନାମ ସ୍ମରଣ କରୁଛି । ତା'ର ଅଙ୍ଗଟିଆ ପ୍ରକୃତି ଟିକଏ ପ୍ରତିବାଦ କରୁଛି । ଚେଙ୍ଗି କହୁଛି, ତମ ଜୋଇଁ ସେ ପରମଶିବ । ମୋ' ବାପା-ବୋଉଙ୍କୁ ଉପହାସ କରି କଥା କହିବେ ? ମୁଁ ଏହା ସହିବି ନାହିଁ । ମୋ ବାପା-ବୋଉଙ୍କୁ ଯେ ଅପମାନ ଦେଉଛନ୍ତି, ମୁଁ ରାଗିବି, ନିଶ୍ଚେ ରାଗିବି ।

ବୋଉ ବି ଆଗକୁ ଆସୁଛି । ବୁଝାଇ କହୁଛି, ରାଗନା ମ । ଶୁଣ, ଅସିତ କ'ଣ କହୁଛି । ସେ ତୋର ପର ନୁହେଁ, ସେ ତୋର ସର୍ବସ୍ୱ । ଟିକଏ ମଜା କରି କଥଣ କହୁଛି, ଶୁଣ । ଜବାବ ଦେନା, ଅଗ୍ନିଗୁଣ୍ଡ ପାଆ ନା । ସେ ଯଦି ଭୁଲ କରେ,

ତା ନିଜ ଭୁଲ ସେ ବଳେ ବୁଝିବ । ମନକୁ ମନ ଲଜିତ ହେବ । ପୁଣି ଗୋଳେଇ ପୋଳେଇ ହୋଇ ଆମକୁ ସୁରତା କରିବ । ତୋ ପାଖରେ ଶରଣ ପଶିବ । ଦେଖିବୁ ରହ ଲେ ଅତସୀ, ସେ ଜଣେ ସ୍ନେହ-ଆଦର କରିବ । ଗେଲ କରି ନେହୁରା ହେବ ।

ଅତସୀ କହୁଛ, ନାହିଁ ନାହିଁ ବୋଉ, ତୁ ଜାଣୁନା । ସେ ସବୁ ମଣିଷ । କିଛି ମୁଁ କହେନାହିଁ ସିନା, ତାଙ୍କ କଥାରୁ ମୋ ମନରେ ସନ୍ଦେହ ଜାଗେ ଯେ ସେ ମୋ ଆଗରେ ମିଛ କହନ୍ତି—କପଟ କରନ୍ତି । ଭଲେଇ ହୁଅନ୍ତି, ଯେତେବେଳେ ମୁଁ ତାଙ୍କର ଲୋଡ଼ା ହେତେବେଳେ ।

ଭାବନା ପୁଣି ଛୁ ଛୁ କଲା ଅତସୀକୁ । ସେ ମୁହଁ ତଳକୁ କରି ତୁନି ରହିଲା ।

ବାପ ମା ଗ୍ଲଲଗଲେ, ହସି ହସି ଖଡ଼ି ଆସିଲେ । ତୁନି ତୁନି କାନରେ କହିଲେ ମିଶିପଶୁଡ଼ା ହେଇଥା ଲୋ ଅତସୀ ! ମିଛୁଆ ଓ କପଟୀ । ପିଲାଲୋକ ତୁ, କେମିତି ଜାଣିବୁ ? ସେମାନଙ୍କୁ ମିଛୁଆ, କପଟୀ, ଅସ୍ନେହୀ ବୋଲି ପର ଆଗରେ କହିବୁ ନାହିଁ, ନିଜ ମନର କଥା ନିଜ କାନକୁ ବି ଶୁଣାଇବୁ ନାହିଁ ।

ଅରେ, ଭୁଲ କହିଦେଲୁ ଲୋ ଅତସୀ ! ମନର ସନ୍ଦେହ ମନରେ ରହୁ । ତୁଣ୍ଡକୁ ନ ଆଣିଲେ ଭଲ । ଖସିଲା ବାଘ ଫିଟିଲା କେଶ ପୁଣି ଯିଛହୁଏ, ପୁଣି ବାନ୍ଧହୁଏ । କିନ୍ତୁ, ତୁଣ୍ଡରୁ ଖସିଲା ଭାଷା ଅଣବାହୁଡ଼ା ଲୋ ମା ! ସେଇ ଖସିଲା ଭାଷାର କାୟା ଶୂନ୍ୟରେ ଭାସେ । ବଢ଼ି ବଢ଼ି ଫୁଲି ଫୁଲି ଯାଏ । ଦିନେ ପୁଣି ଅଜାଣତରେ ଆସେ । ତୁମକୁ ଝାସେ, ତୁମକୁ ଗ୍ରାସେ, ହି ହି ହସେ ।

ତୁମରି ଉତ୍ତେଜନାରେ ଦିନେ ଅଳପ ଉନ୍ମୁମ ହୋଇ ଓଠରୁ ଖସିପଡ଼ିଥିବା ଭାଷାକୁ ଦୁନିଆ ଲୋକେ ଉପହାସର ଇନ୍ଧନରେ ତତାନ୍ତି ଲୋ ମା ! ତାର ରୂପ ବଦଳେ, ସେ ପାଚ ପାଚ ନାଲି ହୁଏ । ତା'ଆରି ଧାସରେ ତମ ମନ ପୋଡ଼ି କଳା ଅଙ୍ଗାର ପାଲଟେ ।

ଏତେ କଥାରୁ କଅଣ ମିଳିବ ? ନିଜ ମନରୁ କାଳସାପ କାଢ଼ି ପର'କୁ ଛୁଡ଼ିବ, ଦିନେ ପୁଣି ସେଇ ଆସି ତମ ଗୋ'ଡ଼ରେ ଛନ୍ଦି ହେବ, ତୁମକୁ ଦଂଶିବ ଲୋ ଅତସୀ ! ଦେଖା ପରଖା ଗୁରୁ ବଚନ, ସାର ବଚନ, ଭୁଲିବୁ ନାହିଁ ।

—ରଗିବୁ ନାହିଁ ?

—ନାହିଁ । ହସିବୁ । ସେଇ ହସ ଯେ ରଗଠୁଁ ବଳିବ । ସେଇ ହସର ହାତଗୋଡ଼ ଅଛି ଲୋ ଅତସୀ ! ଯେ ବଧାଗୋଇଠା ମାରେ । ଅଭଦ୍ରକୁ ଭଦ୍ର କରେ । ବାହାପିଆକୁ କାବୁ କରେ । ଆଲୋ ଅତସୀ, ଏମିତି ଅଲାଜୁକୀ କାହିଁକି ହୋଇଛୁ ? ଛି !

—ଆରେ, ମୁଁ କଅଣ କରିବ ?

—ସେମାନେ ସେଇଆ ଯେ, ନିଜକୁ ଏତେ଼ ଶସ୍ତା କଲେ ତନେ କାଲେ ସେମାନେ ଛି କରିଦେବେ । ମଣିଷ ଗୋଟିକେ ପ୍ରକୃତ ଗୋଟିଏ । ହେଲେ ବି ସେଇ କଉଁକୁଣିଆଗୁଡ଼ା କଅଣ କିଛି ନୂଆ ଦେଖିବାକୁ, ନୂଆ ଚାଖିବାକୁ, ଉହ୍ଲଳ ବ୍ୟାକୁଳ ହୁଅନ୍ତି । ଦେହ ଗୋଟାଏ ହେଲେ ବି ମନ ଓ ସଂଯମ ତାକୁ ନୂଆ କରିପାରେ । ନିତ ନୂତ, ବୁଢୀ ହୋଇ ମରିବା ଯାଏ । ଆଲୋ ଶୁଣିବୁ, ମୋର ଗୋଟିଏ ଭାଇ ହୋଇଛି । ଠାକୁରେ ତାକୁ ଦୀର୍ଘାୟୁ କରନ୍ତୁ । ସେଇ ଟିକି ଭାଇଟି ମୋର ଏଗାର ନମ୍ବର ସେ ତା ବୃଦ୍ଧାସ୍ତ ଉଣ୍ଟକାଠ'ରୁ ଦଶ ମାସ ସାନ । ଯାଉଛି ଲୋ, ମୋ ଜୋଇଁ ଉପରେ ରଗିବୁ ନାହିଁ । ସେ ସୁନାପିଲା ଖଣ୍ଡେ ।

—ଶୁଣ ମ, ଶୁଣ ମ ଖୁଡ଼ୀ !

ହସି ହସିକା ଖୁଡ଼ୀ ଚାଲିଗଲେ । ଦୋହଲି ଦୋହଲି । ଚାରି ମାସ ଭିତରେ ସେ ଆଉ ଥରେ ମା ହେବେ ବୋଲି ଦାଦ ତାଙ୍କୁ ଓ ପିଲାମାନଙ୍କୁ ଆଣି ବୋଉ ପାଖରେ ଘରେ ଛାଡ଼ିଦେଇ ଯାଇଛନ୍ତି ।

ବୋଉ ଓ ଖୁଡ଼ୀ ଚିଠି ଲେଖିଥିଲେ ।

ସପନ ଦେଖିଲୁ କି ? ଆଖିପତା ମାଡ଼ି ହୋଇଗଲା । ନିଦ ଘାରିଲାଣି । ସ୍ବାଙ୍କୁ ଆଜି ନିଦ ହେବ ନାହିଁ । ଗପ ଶୁଣିବାକୁ, ଗପ କରିବାକୁ, ସେ ପଣ କରିଛନ୍ତି । ରାତି ପୁହାଇବେ, ଏପରି ଖିଆଲ ଘନେ ଘନେ ତାଙ୍କ ମନକୁ ଆସେ । ମୋତେ ସେ ତାଙ୍କର ଝେଲଣା କରିଛନ୍ତି ।

ଖୁଡ଼ୀ ନମାର ସପନେଇ ଗଲେ, ନିଜକୁ ଶସ୍ତା କଲେ ଯଦେ ସେ 'ଛୁ' ଭଣ ଦେବେ । ଖୁଡ଼ୀ ଏ ଦେଶକୁ ଆସି ନାହାନ୍ତି । ଦେଖି ନାହାନ୍ତି । ଗୋଲଗାଲିଆ, ସ୍ବାସ୍ଥ୍ୟବନ୍ତ, ଗୋରା ତକତକ, ସୁନ୍ଦର ଅଧଲଙ୍ଗୁଳୀ ବନର ଫୁଲ ! ସେମାନେ ଶସ୍ତା ନ ହେଲେ ବି ସେମାନଙ୍କର ମନମୋହିଲା ଆଖିଲଖିଲ ରୂପ ମହଙ୍ଗା । ନୂଦେହ ଶସ୍ତା ବି ନୁହେ । ପାହାଡ଼ ପଥର, ଗଛ ଲଟା, ବଣଫୁଲ ପରି ବଞ୍ଚି ହୋଇ ପଡ଼ିଛୁ । ମନ ଓଟାରେ ।

— କାହାକୁ ଡାକୁଛ ଅତସୀ ?

ଅତସୀ ବୁଝିଲା ସେ ମୁହୂର୍ତ୍ତିକର ଅନ୍ୟମନସ୍କତା ପାଇଁ ସେ ଧରାଇଲା ପଡ଼ିଲା । ସପନ ଦେଖିଲା । ମନର ଡାକ ଅଜାଣତରେ ତାର ତୁଣ୍ଡକୁ ଆସିଲା । ସ୍ୱାମୀଙ୍କର କାନରେ ପଶିଲା । ଏ ସବୁ ତୁଣ୍ଡପିଶାଚୀ ଓ ତାର ଯାଆଁଳା ଭଉଣୀ କର୍ଣ୍ଣପିଶାଚୀର କାଣ୍ଡ !

ଅତସୀ ଚେଇଁ ଉଠିଲା । ଜାଗ୍ରତ ହେଲା । ପିଶାଚୀ ଦର୍ପେ ଡର ପଳାଇଲେ । ସେ ମିଛ କହିବ ନାହିଁ । ସତ କଥା କହିହେବ ନାହିଁ, ନ କହିଲେ ନ ଚଳେ ।

ତାଙ୍କର ଯେଉଁ ହାତଟି ତା'ପିଠି ଆଉଁସୁ ଥିଲା, ସ୍ନାୟୁରେ ମରମତତା, ଚରମ ତଡ଼ା ପୁଲକର ତଡ଼ିତପ୍ରବାହ ଛୁଟାଇଥିଲା, ସେ ହାତ ଧାଉଁଲାନି କାହିଁକି ? ଅଟକିଲା କାହିଁକି ? ସେ ହାତ କଥା କହୁଥିଲା । ନୀରବ ହେଲା କାହିଁକି ? ମନ ଧ୍ୟାନ ଖସି ପଳାଇଲା କି ବାଲିଗୁଡ଼ାମାଳ ତଳ ପାହାଡ଼ ସେପାଖ କେଉଁ ଅଜଣା ଗ୍ରାମର ବାଙ୍କୁଲି ବାଟକୁ ! ଅଗନାଗ୍ନି ଅରଣ୍ୟ ମଝିରେ ଫୁଟିଥିବା ଅଗଣନ ଚର୍ଚ୍ଚିତ, ଚଳନ୍ତି ଫୁଲଫଳର ହଲଦୋହଲ ପହଁରଲା ଗନ୍ଧ ଅନୁସରିବାକୁ ? ସତେ, ଏଡ଼େ ସାହସ ? ସେ ତାଙ୍କୁ ଫେରାଇ ଆଣିବ । ନିଜଠାରେ ନିବଡ଼, ନିବିଡ଼ ଓ ନିବସ୍ତ୍ର କରାଇବ । କିଏ କାହାର ଖେଳନା, ସେଇ ପ୍ରଶ୍ନର ସମାଧାନ ସେ କରିବେ ।

ଅତସୀ କହିଲା, ଶୋଇପଡ଼ ନାହିଁ । କହ ଦେଖିବେ, ସତେ ଯଦି ସେ ଗଦର ନାମ ଧାମ କେହି ଜାଣିଥାଏ, ତାକୁ ଆଣି ଦେଇବ କାହିଁକି ? ମତେ ଖାଇବାକୁ ଦେବ ? ଗଦଫଦ ନ ଖାଇ ମଧ୍ୟ ମୁଁ ତମର ଚରଣ ତଳର ଅନୁଗତ ଦାସୀ ହୋଇ ରହିପାରିବ, ଏଥିରେ ମୋର ବିଶ୍ୱାସ ଅଛି ।

ଅସିତ ହସିଲା, ଅତସୀ ଅନୁମାନ କରୁଛୁ । ମୋ ଔଷଧୀକୁ ନେଇ ଯଦି କହୁଛ, ନାହିଁ ମ, ତୁମକୁ ଖୋଜୁନ ନାହିଁ । ବରଂ ନଜେ ଟିକିଏ ଯା' ବୁଝିବ । ମୋର ଉଦ୍ଦେଶ୍ୟ ଭିନ୍ନ । ଗଛ ପ୍ଲାଣ୍ଟେସନ କରି, ଅମଳ କରି, ଧୋଇ ଶୁଖାଇ ପରିଷ୍କାର କରି ତା'କୁ ଚୂର୍ଣ୍ଣ କରିବାକୁ ହେବ । ସେଇ ଚୂର୍ଣ୍ଣକୁ ମେସିନ୍ ସାହାଯ୍ୟରେ ପିଲ୍ କରିବାକୁ ହେବ ଓ ପିଲ୍‌ର ନାମ ଦେବାକୁ ହେବ ।

ଅତି ସୁନ୍ଦର ନାମଟିଏ ବାଛ । ଆଜଠୁ ମୁଁ ତାର ବିଜ୍ଞାପନ ଛାପିଦେଇ ପାରେ । ଏ ବଟିକାରୁ ପତି ଓ ପତ୍ନୀ ଥରେ ମାତ୍ର ଗୋଟିଏ କରି ସେବନ କଲେ ସେମାନେ ଆଜୀବନ ପରସ୍ପର ପ୍ରତି ଅନୁରକ୍ତ ରହିବେ । ସେମାନଙ୍କ ମଧ୍ୟରେ କୌଣସି କାରଣରୁ କେବେ କଦାପି ଅବୁଝାମଣା ରହିବ ନାହିଁ । ଛାଡ଼ପତ୍ର ଉଠୁଜିବ ନାହିଁ । ପରୀକ୍ଷା ପ୍ରାର୍ଥନୀୟ, ମୂଲ୍ୟ, ଗୋଟିଏ ବଟିକା ମୋଟେ ଦଶ ଟଙ୍କା ।

ଅତସୀ ହିଁ ହିଁ ହୋଇ ହସିଉଠିଲା । କହିଲା, ଅତି ଚଢ଼ା ଦାମ୍ କରିଦେଉଛ । ଗରିବ-ଦୁଃଖୀ କିଣିପାରିବେ ନାହିଁ । ସେମାନଙ୍କର ଅଶାନ୍ତିଆ ସଂସାରରେ ଝଗଡ଼ା କଜିଆ ଲାଗେ ବୋଲି ମୋର ଧାରଣା ।

—ତୁମର କଥା ମୁଁ ସ୍ୱୀକାର କରୁଛି । କେବଳ ଲାଭ କଥା ଭାବିଲେ ହେବ ନାହିଁ, ଅତସୀ ! ଦଶ ଓ ଦେଶର ଉପକାର ସେପରି ହେବ, ସେ କଥା ମଧ୍ୟ ବିଚାର କରିବାକୁ ହେବ । ମୁଁ ଭାବୁଛି, ଗୋଟିଏ ବଟିକାର ମୂଲ୍ୟ ଏକ ଟଙ୍କା ରଖିବ । ଆଉ ଅଧିକ ଲୋଭ ହେବ ନାହିଁ । ପୃଥିବୀ ସାରା ବିଭିନ୍ନ ଦେଶକୁ ଏ ଔଷଧ ରପ୍ତାନି କରିବା । ଚାହିଦା ପୂରଣ କରିବା ଆମ ପକ୍ଷରେ କଷ୍ଟକର ହେବ । ଆମର ଏହି ବଟିକାର ନାମ ତୁମକୁ ସ୍ଥିର କରିବାକୁ ପଡ଼ିବ । ଗଛର ନାମଟା କୌଶଳରେ ଦିଅ ।

ଅତସୀ ଟିକିଏ ନୀରବ ରହି କହିଲା, ବୋଉ ପାଖକୁ ମୁଁ ଲେଖିପାରିବି ନାହିଁ । ତୁମେ ଲେଖ ଯେ ତମର ସାହସ ଆପଣ ଜଣାପଡ଼ିବ । ମୁଁ ଲେଖିଲେ ସେ ଭାବିବ, କୋଉଁ ଝିଅକୁ ଭଲ ପାଉ ନାହିଁ । ତା' ମନରେ ଏପରି ସନ୍ଦେହ ହେଲେ, ତା'ମନର ଅବସ୍ଥା କଅଣ ହେବ, ମୁଁ ଅନୁମାନ କରିପାରୁଛି । ତୁମ ନାମରେ ଯେମେ ବୃଥାରେ ଅପବାଦର ନାଗରା ବାଜିବ, ମୁଁ ଏହା ସହିପାରିବି ନାହିଁ । ତୁମେ ହିଁ ଲେଖ ।

ଅଧଖୋଲା ଝରକା ବାଟେ ହେମାଳ ପଶିଆସୁଛି । ମୋଟା ରେଜେଇ ଓ ତଳର ଗଦିକେଜ କୋଳ ମାରିଯାଉଛି । ଅସିତର ଅଭ୍ୟାସ, ସବୁ କବାଟ ଝରକା ବନ୍ଦ କଲେ ତାକୁ ନିଦ ହୁଏ ନାହିଁ । ସେ ମୁକ୍ତ ବାୟୁ ଚାହେ । ଅତସୀର ପିଲାଦିନରୁ ଅଭ୍ୟାସ ଯେ କବାଟ ଝରକା ବନ୍ଦ ନ ଥିଲେ ତାକୁ ନିଦ ହୁଏ ନାହିଁ । ମନ ଚଞ୍ଚଳ ହୁଏ । କବାଟ ଝରକା ଦେହରେ କେଉଁଠି ଟିକଏ ଫାଙ୍କ ଥିଲେ, ଅତସୀ ମୋଟା କାଗଜର ପଟି ଦେବ । ଅସିତ ପାଖକୁ ବିଦେଶକୁ ଆସିଲା ପରଠୁଁ ଅତସୀର ଅଭ୍ୟାସ ବଦଳି ଆସୁଛି । ତାର ଗୋଟାଏ ମନ କଣ ! ଅଭ୍ୟାସର ମୂଲ୍ୟ ବା କଣ ! ଅସିତର ମନ, ଚଳନ ଓ ଅଭ୍ୟାସକୁ ସେ ନିଜର କରିବାକୁ ଚେଷ୍ଟା କରୁଛି ।

ଚେଷ୍ଟା ହିଁ କରୁଛି ।

ମଣିଷ ଗୋଟିକେ ପ୍ରକୃତି ଗୋଟାଏ । ପରପୁଅର ହାତରେ ହାତ ବାନ୍ଧି, ଲୁଗାକୁ ଲୁଗା ଗଣ୍ଠି ପକାଇ ମନ୍ତ୍ର ପଢ଼ିଦେଲେ ଯେ ଦୁଇଟା ଦେହର ଜୀବନ ମନ, ଚଳନ ଓ ପ୍ରକୃତି ଏକ ହୋଇଯିବ, ଏପରି ନୁହେଁ ତ । ପରସ୍ପରର ମନ ବୁଝି, ନିଜ ନିଜର କେତେ କାମନାକୁ ଦମନ କରି, ଚଳନକୁ ଦଳନ କରି, ଭାବନାକୁ ବାନ୍ଧନ କରି, ସହନଶୀଳତାର ସଫଳତା ଜାଣି, ଦିଓଟି ଯୋଡ଼ିଲା ଜୀବନକୁ ଉଜ୍ଜ୍ୱଳ କରିବାର ବ୍ୟାକୁଳ ଉଦ୍ୟମ, ଦାମ୍ପତ୍ୟ ଜୀବନକୁ ଶୋଭନ, ଲୋଭନ ଓ ମୋହନ କରେ ଲୋ ଅତସୀ ! ଏଇ ସବୁ କଥା ମନେ ରଖିଥିବୁ । ଅସିତ ଭଲ ପିଲା ଯେ, ନିଜେ ସତର୍କ ହେଲେ ସବୁ ଭଲ । ନିଜେ ଯଦି ଓଲମ ପଣରେ ଅସତର୍କ ହେବୁ, ଭଲ ପୁଣି ସଲ ହେବ, ମନେପକା ମାଳଅପାର କଥା ।

ଗୁଣଟି ସନ୍ତାନର ଜନନୀ, ଅତସୀର ପିଉସୀ ଅମ୍ବାଳିକା, ହସହସ ହୋଇ ଆଜକୁ ଆସିଲେ । ବିଦା ବନ୍ଧ ଆଗରୁ ପାଖରେ ବସି ଆଖିରୁ ଲୁହ ପୋଛୁ ସେ କାନରେ ଏଇ ଉପଦେଶ ଦେଇଥିଲେ । ପଥରବସା କାନଫୁଲ ହଳେ ପିନ୍ଧାଇ ଦେଇଥିଲେ । ସେଇ ସୁନ୍ଦର ଫୁଲ ହଳକ ଅତସୀ ବାକ୍ସରୁ କାଢ଼ି କାନରେ ପୁଣି ନାଇଛି ।

ସେଇ ଆଜି ଅମ୍ବାଳିକା ଅପାଙ୍କ କଥା ମନେପକାଇ ଦେଇଛି । ସେ ସ୍ୱର୍ଗରେ ଅଛନ୍ତି । ଯାହା କହନ୍ତି, ପିଉସୀ ତାକୁ ମୁଣ୍ଡରେ ଟେକି ଧରିଛନ୍ତି ।

ଅନ୍ୟମାନେ ଅମ୍ବାଳିକାକୁ ଗ୍ରେମଣ୍ଟ, ଫୁଲେଇ, ଫାଙ୍କଲ, ଡବଡବି, ନେହଗେସୀ ଇତ୍ୟାଦି ନାମରେ ଅଭିହିତ କରନ୍ତୁ ପଛେ, ତାଙ୍କର ସେଥିରେ କ୍ଷତି ଥାଏ ?

ବାପଘରେ ସେ କେଡ଼େ ଆନନ୍ଦରେ ବଢ଼ିଥିଲେ । ଗ୍ରାମରେ ଧନ୍ୟ ଧନ୍ୟ ପ୍ରଶଂସା ପାଉଥିଲେ । ସେ ଅତି ସୁନ୍ଦରୀ ଥିଲେ; କିନ୍ତୁ ତାଙ୍କର ବିଚକ୍ଷଣ ବୁଦ୍ଧି ଥିଲା । ଗ୍ରାମ ଚଟଶାଳୀରୁ ପାଠ ଶେଷ କରି ଘରେ ସିନା ରହିଲେ, ପଢ଼ାରୁ ମନ ଗୁଞ୍ଜିଲେ ନାହିଁ । ନିଜ ଚେଷ୍ଟାରେ ସେ ଇଂରେଜୀ, ବଙ୍ଗଳା ଓ ହିନ୍ଦୀ ପଢ଼ି ଶିଖିଲେ । ଘର କାମରେ ନିପୁଣା, ଦଶ ବର୍ଷ ତଳେ ସେ ଜଣେ କବିମଙ୍କୁ ବିବାହ କରିଥିଲେ ।

ପିଉସା ସର୍ବେଶ୍ୱରଙ୍କର ଉନ୍ନତି ଆରମ୍ଭ ହେଲା ଅମ୍ବାଳିକା ଅପାଙ୍କର ପାଣିଗ୍ରହଣ କଲା ପରଠାରୁ । ସେ ଆଇ. ଏ. ପାସ୍ କଲେ, ବି. ଏ. ପାସ୍ କଲେ । ସବଡ଼ିପୋଟି ହେଲେ, କେବଳ ଡିପୋଟି ହେଲେଣି । ତେଣିକି ତେଣିକି ଉପରକୁ ଉଠୁଛନ୍ତି । ସ୍ୱକୀୟ ଜୀବନରେ ଆଉ କେତେ ଉପରକୁ ସେ ଉଠିବେ ବୋଲି ଆଶା କରନ୍ତୁ ନ କରନ୍ତୁ, ଅମ୍ବାଅପା ଆଶା କରିଛନ୍ତି । ବିଶ୍ୱାସ କରନ୍ତି, ସେ କଥା ସେ କହନ୍ତି ।

ଅମ୍ବାଅପା ନିଜେ ବି ଆଗେଇ ଯାଇଛନ୍ତି । ଘରେ ଘରେ ପାଠପଢ଼ି ମାଷ୍ଟର ରଖି ପରୀକ୍ଷା ଦେଇ ମାଟ୍ରିକ ପାସ୍ କଲେ । ସେଇଠୁ ଆଇ. ଏ. ବସୁଛନ୍ତି, ପାଞ୍ଚ ବର୍ଷ ଲାଗୁ ପଛେ, ବି. ଏ. ପରୀକ୍ଷା ଦେବେ । ବଡ଼ ଝିଅକୁ ସାତ ବର୍ଷ ହେଲାଣି । ତା ତଳେ ଦୁଇ ପୁଅ ସେ ଗୋଟିକୁ ପାଞ୍ଚ ଓ ଆରଟାକୁ ତିନି ବର୍ଷ । ଆଉ ପିଲା ଯେପରି ନ ହେବେ ତାର ବ୍ୟବସ୍ଥା ସେ ନିଜେ କରିସାରିଛନ୍ତି । ଏଇ ତିନୋଟି ପିଲାଙ୍କୁ ମଣିଷ କଲେ ଢେର୍ ହେବ ବୋଲି ସେ କହନ୍ତି ।

ସତେ, ଅମ୍ବାଅପା ଦିନକୁ ଦିନ କେମିତି ବଦଳିଗଲେ । ପାତଳିଆ ଝିଅ ଖଣ୍ଡେ, ମୁଣ୍ଡରୁ ପାଦଯାଏ ଓଢ଼ଣା ଥିଲା । ଏବେ ସେ ମୋଟା ନ ହେଲେ ବି ମୋଟାଳିଆ ହେଲେଣି । ମୁହଁ ଗୋଲିଆ ହେଲାଣି, ଫେସନ୍ କରି ଆଖିରେ ସୁନାଫ୍ରେମ୍‌ର ଚଷମା । ଦେହରେ ଅଧିକ ଗହଣା ନାହିଁ । ହାତରେ ଦୁ'ପଟି କରି କାଚ ବା ହାତରେ ରିଷ୍ଟୱାଚ । ଦେହର ରଙ୍ଗ ବଦଳିଗଲାଣି । ସବୁବେଳେ ଧୋବଧାଉଳିଆ ବେଶ । ଅତି ପରିଷ୍କାର ଦେହର ଧଳା ପାତଳ ବ୍ଲାଉଜ ଗ୍ରୁଡ ଉପରେ ଉଞ୍ଚଉଞ୍ଚିକା ।

ମୁର୍ହିରେ ବାଂଧନା ପାଉଡ଼ର ଅଳପ ପରଷ । ଉଙ୍ଗ ବଢ଼ାଏ, ପାଉଡ଼ର ବୋଲନ୍ତୁ ବୋଲି ଜାଣିଥୁଏ ନାହିଁ । ମୁଣ୍ଡରେ ଦାଉ ଦାଉ ଦଶେ ସିନ୍ଦୂର । ଓଠରେ ବୋଧହୁଏ ଗୋଲାପୀ ପରଷ ।

ପିଉସା ସବୁବେଳେ ଅମ୍ମା ଅମ୍ମା ବୋଲି ଡାକ ଛାଡ଼ନ୍ତି । ବୋଉ ଉପନ୍ୟାସ କରି କହନ୍ତି, ଯାଆ ଲୋ, ଟେଡଣେ ତମ ଖଣ୍ଡୁଙ୍କର ହଂସା ଉଡ଼ିଗଲାଣି, ଅମ୍ମା ଅମ୍ମା ଡାକ ଛାଡ଼ିଲେଣି । ଅଲାଜୁକପଣକୁ ସଣଛନ୍ତି ତ ଦୋପଟିବ ରୁ ! ତୁମେ ତାଙ୍କୁ ଓଷଧ କରିଛ କି ଅମ୍ମା ଦେଇ ?

ଅମ୍ମାଅପା ହସିଲେ. କହିଲେ ଅତସୀ ପାଖରେ ଅଛ । କାଲିକା ଛୁଆଟୀ, ମୋ ଜଙ୍ଗ ଉପରେ କେତେ ହଗିଛି ମୁତିଛି । ଘୁଠ ପାଇଲେ ତା ମଙ୍ଗନ, ନଇଲେ ତମ କଥାର ଠିକଣା ଜବାବ ଦେଇପାରିଥାଆନ୍ତି । ଏଠକ କହୁଛି. ମତେ ତୁମେ ଯ ନ୍ଦା ଜାନ ଜାନ କରି ଶିଖେଇଥିଲ, ବର୍ଷ ବର୍ଷ ଲାଗି, ସେଥିରୁ ଅଳପ କାମରେ ଲାଗିଲା । ବାଳଯାକ ଭୁଲିବାକୁ ପଡ଼ିଲା, ମୁଁ ନଜେ ତ ଓଷଧ; ଆଉ କାହୁଠୁ ଓଷଧ ଆଣିବ କାହିଁକି ? ତମ ବାହାର ଓଷଧର ଗୁଣ କି ନଶା ଦନେ ଯଲାଏ ରହିବ, ମୁଁ ମନ୍ତ୍ରର କରିଛୁ ।

—ତମ ମାଳଅପାଙ୍କୁ ସେ ମନ୍ତ୍ରର ଶିଖେଇ ଦେଉନ ? ତାଙ୍କ ବର ଗଙ୍ଗାଧର ମୋକଷିବାରୁ । କେଡ଼େ ଭଲ ଥିଲେ ଜାଣ ତ, କେଉଁ କେବେ ଅନୁମାନ କଲୁ ନ ଥିଲେ ସେ ସେ ଏଡ଼େ ଚୁପ୍ ସଇତାନ୍ । ପୋଲିସ ଦାରୋଗାରୁ ଆଜ୍ଞାଯାଏ ସେ ଗୋଷ୍ଠି । ପାହାଚ ଉପରକୁ ଉଠିପାରିଲେ ନାହିଁ । ସ୍ୱଭାବ ଚରିବ ଓଲଟି ପଡ଼ିଲା ।

ଗ୍ରାମ ପିଲାର ବାପ । କୁଆଡ଼ର ବୁଲାବୁଲା, ଖାନଙ୍ଗୀଟାକୁ ପୁଣି ସ୍ନେହ କଲେ ! ଆହା, ମାଳଙ୍କୁ, ପୁଣି ତା ପିଲାଙ୍କୁ ହତାଦର କରି ପିଠିରେ ବଧା ଗୋଛାଠା ସେ ସଇତାନ୍ ବସାଇଲା । ମାଳବଳା ଛୁଆଙ୍କୁ ଧରି ଗାଁରେ । ଆଉ ସେ ଅଲାଜୁକ ଗଙ୍ଗାଧର, କାଳାଚୋତଣ୍ଡି ଘୋଡ଼ାମୁହିଁକୁ ପାଖରେ ରଖିଛୁ । ପିଲାଙ୍କ ପାଇଁ ଟଙ୍କା ପଠାଉ ନାହିଁ ।

କାନ୍ଧ କାନ୍ଧ ମାଳ ଛଟି ଲେଷିଥିଲେ ।

ମୋ ସୁନାଝଉଡ଼କା ମାଲା, ମୁହଁ ଦେଖିଲେ ପୁନେଇଁ ଜହ୍ନକୁ ଛୁ କରବ । ଚାଲି ଯାଉଥିଲେ ବାଛୁ ପାରବ ନାହିଁ । କଥା କହିଲେ ଏ କାନରୁ ସେ କାନ ଶୁଭବ ନାହିଁ । ଦହ ମୁଣ୍ଡରେ ଚନ୍ଦ୍ର-ସୂର୍ଯ୍ୟଙ୍କର ଅଲୁଅ ବାଜେ ନାହିଁ । ସେଇ ମୋର ମାଳକୁ ଅଲକ୍ଷଣାଟା ଏତେ କଷ୍ଟ ଦେଲ ! ଏତେ ଦହଗଞ୍ଜ କଲ ! ଦନେ ମାଳକୁ ଯେ ମୁଣ୍ଡରେ ବସାଇଥିଲ, ସେଇ ପୁଣି ଓଲଟି ପଡ଼ିଲ !

ବୋଉ କହିଁ କହିଁ ହୋ ହୋ କାନ୍ଦି ଉଠିଲ ।

ମାଲବକାଙ୍କର ସ୍ନେହ ଓ ଦୁର୍ଦ୍ଦଶା କଥା ଅତସୀର ମନେପଡ଼ିଲ । ତାଙ୍କର ଝାପସା ରୂପ ଆଗରେ ଠିଆହେଲ । ଆଖିରେ ଛଳ ଛଳ ଲୁହ । ଅନ୍ଧାରର ଗୁଡ ଅଁଳାଇ ସେ କରୁଣ ସ୍ୱରରେ କହୁଛନ୍ତି, ମୁଁ କେବେ ତାଙ୍କର ସେବା ଯତ୍ନରେ ଝୁଟି କର ଥିଲ । ପିଲଗୁଡ଼ାକୁ ଆଡ଼େଇ ଦେଇ ଦନରାତ ମନପ୍ରାଣ ଦେଇ ମୁଁ ତାଙ୍କୁ ସୁଖୀ କରବାକୁ ଚେଷ୍ଟା କରଥିଲ । କେବେ ତାଙ୍କର ଅବାଧ ହୋଇନାହିଁ । କେଉଁ କଥାରେ ପ୍ରତବାଦ କରନାହିଁ । ତାଙ୍କର ରାଗରୋଷକୁ ମୁଁ ଛଳ କରନାହିଁ । ନଜକୁ ଭୁଲ କପଟ ସେ ସୁଖୀ ହେବେ, ସେଇ ଚନ୍ତାରେ ମୁଁ ବୁଡ଼ି ରହୁଥାଏ । ତଥାପି, ତାଙ୍କର ବ୍ରତ ପିଲର ମା ମୁଁ, ମୋତେ ଗୋଡ଼ରେ ଆଡ଼େଇଦେଲେ ?

କ କୌଶଳରେ କେଜାଣି ଯେଇ ରାକ୍ଷସୀ ତାଙ୍କୁ ଓଷଦ କରଚୁ ! ତାଙ୍କର ଧନମାନ ଯଶ ଗୌରବକୁ ଶୋଷି ଖାଇଚୁ, ରକତ ଶୋଷୁଚୁ । କାଲେ ଜୀବନ ଶୋଷିଦେବ । ସେତକ ମୋର ଡର ଲେ ଅତସୀ, ସେତକ ତ ମୋର ଡର । ମା ମଙ୍ଗଳାଙ୍କ ପାଖରେ ଦନରାତ ମୁଁ ପ୍ରାର୍ଥନା କରୁଚୁ, ମୋତେ, ମୋ ପିଲଙ୍କୁ ତୋ ପିଉସା ନ ପଚ୍ଛରନ୍ତୁ ପଛେ, ସେ ଜୀବନ ଧର ରହନ୍ତୁ । ତାଙ୍କ ଅଗରେ ମୋର ଜୀବନ ଯାଉ । ବଞ୍ଚିରହିଚୁ ଏହି ଆଶାରେ ସେ ଯେଉଁ ଭୂତ ତାଙ୍କ ମୁଣ୍ଡରେ ବସିଚୁ, ଯେଉଁ ପ୍ରେତନୀ ତାଙ୍କୁ ଗ୍ରାସିଚୁ, ଯେଉଁ ଅପଦେବତା ତାଙ୍କ ଭିତରେ ପଶିଚୁ, ସମସ୍ତେ ଦନେ ତାଙ୍କୁ ଛାଡ଼ି ପଳାଇବେ । ସେ ମୁକ୍ତ ହେବେ । ସେ ପୁଣି ମୋ ପାଖକୁ ଫେର ଆସିବେ, ମୋର ହେବେ ।

ମା ମଙ୍ଗଳାଙ୍କ ପୂଜା କରୁଚୁ, ଏଇଆ ଜଣାଉଚୁ । ଆନ୍ତର ଜଣାଉଚୁ, ମୋର ଝିଅ ଅତସୀ, ଯାହାକୁ ମୁଁ କୋଳରେ ପୁରାଇ ଗୁଡରେ ଜାକ ଧିଅରେ ବାଇଆ ଧୂଅ କରୁଥିଲ, ସେ ସୁଖରେ ରହୁ । ମୋ କୋଳିଁ ଅସିତ ସାର୍ଯ୍ୟାୟୁ ହେଉ । ତୋ ବାହାକୁ

ଯାଇପାରିଲି ନାହିଁ । ମନରେ ଦୁଃଖ କରିବୁ ନାହିଁ । ବଞ୍ଚିଥିବା ଯାଏ ଆଶା ଅଛୁ, ଦିନେ ଯିବ, ତମ ବୁଢ଼ୀଙ୍କୁ ଦେଖି ତଷ୍ଟୁ ପ୍ରତିଷ୍ଠା କରିବ ।

ଅତସୀର ମୁଦିଲା ଆଖିକୋଣରୁ ଦୁଇ ଧାର ଲୁହ ବହିଆସିଲା । ମାଲଅପା ଓ ଅମ୍ମାଅପାଙ୍କ କଥା ମନେପଡ଼ିଲା । ମାଲ ଅପାଙ୍କର ଲୁହ ଠୋପାରେଭିଜା ଚିଠିଟି ସେ ସାଇତି ରଖିଛି, ସ୍ୱାମୀ ତାକୁ ପଢ଼ି ଦୁଃଖ କରିଛନ୍ତି ।

ଏବଯାଏ ମାଲଅପାଙ୍କର ଦୁଃଖ ଫେରିନାହିଁ । ଅମ୍ମାଅପା ମନ୍ତ୍ର ଜାଣନ୍ତି । ପିଉସାଙ୍କୁ ମନ୍ତ୍ର କରି ବାନ୍ଧି ରଖିଛନ୍ତି । ଭୂତପ୍ରେତ, ଅପଦେବତା ସାନ ପିଉସାଙ୍କ ଦେହ ମନ ଛୁଇଁପାରିବେ ନାହିଁ ।

କାହୁଁ ଶିଖିଲେ ସେ ମନ୍ତ୍ର ? ବଡ଼ ପିଉସାଙ୍କୁ ସେଇ କାଳୀକୋଡୋଙ୍ଗୀ ଯୋଗିନୀ ଔଷଧ ଖୋଇଛି । ମନ୍ତ୍ର କରି ତାଙ୍କ ଦେହରେ ଭୂତପ୍ରେତ, ଅପଦେବତା ଆଶ୍ରା କରେଇଛି, ରକ୍ତ ଶୋଷି ଖାଉଛି ।

— ମନ୍ତ୍ର, ଔଷଧ, ଭୂତ, ପ୍ରେତ, ଅପଦେବତା !

ଯେତେ ଗୁପି ରଖିବାକୁ ଚେଷ୍ଟା କଲେ ମଧ୍ୟ ଅତସୀ ତାର ଥରଥର ଗୁଡ଼ିଡ଼ କୋହ ଅଟକାଇ ପାରିଲା ନାହିଁ । ଗୁଡ଼ି ଦୋହଲାଇ ରୁଦ୍ଧଶ୍ୱାସ ନାକପୁଡ଼ା ଥଣ୍ଡାଇ ଦେହ ରହିକା ପଦାକୁ ଛୁଟି ଆସିଲା, ଶବଦ ହେଲା ।

ଅସିତ ବିଚଳିତ ହେଲା । କିଛି ନ କହି ସେ ହାତ ପାପୁଲିରେ ଅତସୀର ମୁହଁ ସାଉଁଳିଲା । ହାତରେ ତତଲା ଲୁହର ପରଶ । ମୁହୂର୍ତ୍ତେ ସେ ନିର୍ବାକ ହୋଇ ରହିଲା । ଅତସୀ କାନ୍ଦୁଛି, ରହସ୍ୟର କଥାକୁ ସତ ମଣି ସେ ଅଭିମାନ କରୁଛି ? କଡ଼ରେ ପଡ଼ିଥିବା ସମ୍ବଲପୁରି ମୋଟା ଶାଢ଼ିଟି ହାତରେ ଟାଣି ଦେହଟିକୁ ଆବୃତ କଲାଣି । ଖୁନ୍ ଖୁନ୍ ହୋଇ ଗୋଡ଼ ଦୁଇଟି ଲମ୍ବାଇ ମୋଟା ଶାଢ଼ିର ଆବରଣ ତଳେ ନିଜକୁ ଛପାଇ ଦେଲାଣି, ଯେଉଁ ତାର ଦୁର୍ଭେଦ୍ୟ ଦୁର୍ଗ !

—ତୁମେ କାନ୍ଦୁଛ ଅତସୀ, ଏତେ ସ୍ୱତରେ ଆଖିରୁ ଲୁହ ବହୁଛି, ମୁଁ ପାଖରେ ଥାଉଣୁ ?

ନାକପୁଡ଼ା ଅଗ୍ରଇ ଗ୍ରୁଡ ନଲର ଶେଷ କୋହ୍ନ ପଡାକୁ ଛୁଟିଲ । ଅତସୀ ପକୃତିସ୍ଥ ହେଲ । କହିଲ, ମୋ ମାଲଅପାର ଦୁଃଖଦୁର୍ଦ୍ଦଶା କଥା ମନେ ପଡ଼ିଗଲ । ଅଜାଣତରେ କାନ୍ଦ ମାଡ଼ିଲ । ତୁମେ ତ ସବୁକଥା ଜାଣିଛ । ଯେଉଁ ଅଲକ୍ଷଣୀ ଡାଆଣୀ ମୋ ଦେବତା ପରିକା ପିଉସାଙ୍କୁ ମନ୍ତ୍ରର କରି ବାନ୍ଧିରଖିଛି, ଯିଏ ତାଙ୍କୁ ଔଷଧ ଖୋଇ ଅମଣିଷ କରେଇଛି, ପିଉସାଙ୍କ ମୁଣ୍ଡରେ ଭୂତ ଚଢ଼ାଇଛି, ପ୍ରେମକୁ ଆଣି ତାଙ୍କର ମଣିଷପଣିଆକୁ ଶୋଷେଇଚି କେଉଁ ଅପଦେବତାକୁ ଆଣି ମୋ ପିଉସାଙ୍କ ଭିତରେ ରଖିଚି, ସେଇ ଅଲକ୍ଷଣୀକୁ ଥରେ ଦେଖିଲେ ଗ୍ରୁଞ୍ଜୁଣୀ ମାଡ଼ରେ ତା' ମୁହଁ ଭାଙ୍ଗିଦିଅନ୍ତି, ପିଟି ପିଟି ତାକୁ ଲଙ୍ଘା କରିଦିଅନ୍ତି ।

—ଅତି ଦୁଃଖରେ ତୁମେ ଉତ୍ତେଜିତ ହୋଇପଡ଼ିଛ, ଅତସୀ ! ମୁଁ ବିଶ୍ୱାସ କରୁଛି ଯେ ଅନେକ ପ୍ରକାର ରୋଗର ଅମୋଘ ଔଷଧ ହେଉଛି ଝାଡ଼ୁ । ଡାଆଣୀ, ଚିରଗୁଣୀ, ଭୂତ, ପ୍ରେତ, ହାଡ଼ିବାଣ, ବ୍ରହ୍ମରାକ୍ଷସ, ମଶାଣିଚଣ୍ଡୀ ଏମାନଙ୍କୁ ଦୂରେଇ ରଖିବାକୁ ମାଆମାନେ ପିଲାମାନଙ୍କ ଦେହରେ ଗ୍ରୁଞ୍ଜୁଣୀରୁ ଟିକିଏ ଛିଣ୍ଡାଇ ବାନ୍ଧିଦିଅନ୍ତି । ଗ୍ରୁଞ୍ଜୁଣୀ ନାରୀମାନଙ୍କର ବାଣ କମାଣଠୁଁ ବଳି ଅଧିକ କାର୍ଯ୍ୟକାରୀ ଅସ୍ତ୍ର ।

କିନ୍ତୁ ମନେ ରଖିବା ଉଚିତ ଯେ ଏ ଅସ୍ତ୍ର ସବୁଠି ମିଳେ ଓ ଅତି ଶସ୍ତାରେ ମିଳେ । ଯାହା ଉପରେ ପ୍ରୟୋଗ କରିବାକୁ ମନ କରିଛ, ତାଙ୍କ ପାଖରେ ବି ହେ'ବ୍ରୁଶ ବଡ଼ା ଥିବ । ଆମ ଜଙ୍ଗଲମାନଙ୍କରେ ଯେଉଁ ଫୁଲଗ୍ରୁଞ୍ଜୁଣୀ ମିଳୁଛି, ତହିଁରୁ ଅଧିକାଂଶ କଲିକତା, ମାନ୍ଦ୍ରାଜ ଓ ବମ୍ବେ ଚାଲାନ୍ ହେଉଛି । ଶୁଣିଲି, ସେଠ'ରୁ ଜ'ହାଜରେ ଚଢ଼ାଇ ବିଦେଶକୁ ରପ୍ତାନି କରାହେଉଛି । ଅତି ଆନନ୍ଦର କଥା ଯେ କେବଳ ଓଡ଼ିଶା ବାହାରର ମାଇପେ କାହିଁକି, ବିଦେଶର ମାଇପେ ମଧ୍ୟ ଗ୍ରୁଞ୍ଜୁଣୀର କରାମତି ବୁଝିଲେଣି । ଘରେ ଓ ବାହାରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଏହା ଲୋଡ଼ା ।

—ଶୁଣ ମ, ଏତେ ରାତିରେ କିଏ ଗୋଟାଏ ଘୋଡ଼ାଚଢ଼ି ରାସ୍ତା ଉପରେ ଯାଉଛି କି କଅଣ !

ଅସିତ ନୀରବ ହେଲ । ସତେ, ଗୋଟାଏ ଘୋଡ଼ାର ଦଉଡ଼ିବା ଶବ୍ଦ ସରି ଶୁଭୁଛି । ଦୂରେଇ ଗଲା, ଅତି ଦୂରରୁ କିଏ ହସିଉଠିଲଣି । କୋଠିପାଖ ଜଙ୍ଗଲରୁ

ଢାନ୍ଦାର ଢାନ୍ଦଣା ଶୁଭିଲଣି । ଆଉ ତ କେତେ ପ୍ରକାର ସ୍ୱର ଶବ୍ଦ ! ରହି ରହିକା ଦୂରରୁ ଓ ପାଖରୁ ଆସୁଛି । ଚୂଚୁନ୍ଦ୍ରା ଦୁଇଟା ଚୁଁ ଚୁଁ ହୋଇ ଘରଭିତରେ କାହୁଁ କଡ଼େ ଧାଁଉଛନ୍ତି ।

—ତୁମେ ଡେଣେ ଭାବନ୍ତଅ ନାହିଁ, ଅତସୀ ! ସେମାନଙ୍କର ଯିବାଆସିବା, ଖେଳ କୌତୁକ, ପେଟପାଟଣା, ରାଗରୋଷ, ପ୍ରେମ ଓ ଅଭିମାନର ସମସ୍ତ ତ ଏହି । ସେମାନେ ଅଛନ୍ତି ଓ ଚିରଦିନ ଥିବେ । ତୁମର ଡରିବାର କାରଣ ନାହିଁ । ତୁମର ଚାରିଟା ଆବରଣ—ଘର, ମଶାରି, ଚେରେଜେଇ । ଆରେ ଆଉ ଗୋଟାଏ ଅଛି, ଏଇ ମୋଟା ସମ୍ବଲପୁରୀ ଶାଢ଼ି । ଯାହା କହି ପଛେ, ସେଇଟା ମୁଁ ଓ ତମର ମଧ୍ୟରେ ଗୋଟାଏ ଅଭେଦ୍ୟ ଚୀନା ପାଚେରି ପରି ରହିଛି । ନହି, ତୁମେ ସେ ପାଚେରି ପକାଇଛ । ମୋ କହିବାର କଥା, ଏଇ ଯେ ତୁମ ଉପର ଏତେ ଆବରଣ ରହିଛି, ସବୁ ଅଭେଦ୍ୟ, ସେମାନେ ପାଖରେ ପଶିପାରିବେ ନାହିଁ ।

କିନ୍ତୁ, ଏକ ଜାତିର ଡାଆଣୀ ଅଛନ୍ତି, ସେମାନେ ମନ୍ତ୍ର ଜାଣନ୍ତି କି ନାହିଁ ମୁଁ କହିପାରିବି ନାହିଁ, ତେବେ ସେମାନେ କୌଣସି ପ୍ରତିରୋଧ ମାନନ୍ତି ନାହିଁ । ଲୁଚି ଲୁଚି ଆସନ୍ତି, ରକ୍ତ ଶୋଷନ୍ତି, ଜାଣି ହୁଏ ନାହିଁ ।

ଅତସୀ ପୁନା ଭାବି ସ୍ୱମସ୍ୱମେଇ କଡ଼େଇ ଶୋଇଲା । ପଚାରିଲା, ସେମାନେ କେଉଁଠି ରହନ୍ତି, କପରି ଆସନ୍ତି ?

—ସେମାନେ ଖଟ, ଚଉକି, ଶେଜ, ଚେରେଜେଇ, ମଶାରିର ଖଣ୍ଡି ଇତ୍ୟାଦିରେ ରହନ୍ତି । ତୁମେ ସେମାନଙ୍କୁ ଗୁଆରପୋକ ବୋଲି କହ । ସେମାନଙ୍କର ବଂଶ ନିପାତ କରିବାକୁ ବହୁ ଚେଷ୍ଟା କରି ବିଫଳ ହୁଅ । ମୁଁ ଅନୁମାନ କରୁଛି, ରାଣୀ ବାଘକାଣୀ ନାମରେ ସେଇମାନେ ତା ବରଠୁଁ ଓ ରାଣୀଠୁଁ ରକ୍ତ ଶୋଷୁଥିଲେ, ବିଛଣାରେ ଦାଗ ଲାଗୁଥିଲା ।

ଅତସୀ ପାର୍ଶ୍ୱ ପରିବର୍ତ୍ତି ପଚାରିଲା, ତାହେଲେ ତୁମର ବିଶ୍ୱାସ ଯେ ଭୂତ, ପ୍ରେତ, ଡାଆଣୀ, ଚିରୁଗୁଣୀ, ଅପଦେବତା ନାହାନ୍ତି ? ତେବେ ଏତେ ଲୋକ ଡରନ୍ତି କାହିଁକି ? କେତେ ଲୋକଙ୍କର ଦୁଇ ମୂର୍ଚ୍ଛା ଛୁଟେ । କେତେକଙ୍କର ରକ୍ତବାନ୍ତି ହୁଏ । କେତେକଙ୍କର କିଛି ହୁଏ ନାହିଁ, ଖାଲି ମୂର୍ଚ୍ଛା ହୋଇପଡ଼ନ୍ତି ଓ ମରନ୍ତି । ବାହାରେ ଏସବୁ ନାଟଚାମସା, ହସକାନ୍ଦ, ଦଉଡ଼ଧାପଡ଼ କାହିଁକି ?

—ମୋର ସେମାନଙ୍କର ଥିବା ଅସ୍ତିତ୍ୱରେ ବିଶ୍ୱାସ ଥାଉ କି ନ ଥାଉ ଦୁନିଆରେ ଅନେକଙ୍କର ବିଶ୍ୱାସ ଅଛି । ମୋର ବିଶ୍ୱାସ ଟଳିଉ ପଡ଼ି ମାତ୍ରିଆସେ, ପୁଣି ଫେରିଯାଏ । ଲକ୍ଷ୍ମୀ ପରି ଉଠେ, ପୁଣି କମ୍ପିତ ହୋଇ ପଡ଼େ । ପର ମୁହଁରୁ ତା'ର ଦେଖିଲା ଘଟଣା ବା ଶୁଣିଲା ଘଟଣା ଶୁଣିଲେ ତରରେ ଗ୍ରନ୍ଥ ଧଡ଼ପଡ଼ ହୁଏ । ତେବେ ଅନେକ ପ୍ରଶ୍ନ ମନରେ ଜାଗେ, ଯାହାର ଉତ୍ତର ପାଏ ନାହିଁ । ନିଜେ ଆଖିରେ ଦେଖିଲା କଥା ଓ ଅନ୍ୟେ କହିଥିଲା କଥା ମୁଁ କହୁଛି ଶୁଣ । ଡରିବ ନାହିଁ ତ ?

—ତୁମେ ପାଖରେ ଅଛ, ଡରିବ କାହିଁକି ?

—ତୁମେ ନିଜେ ଦୂରେଇ ଯାଉଛ । ଦୁହିଁଙ୍କ ମଝିରେ ବାଡ଼ ପକାଉଛ । ଡର ମାଡ଼ିଲେ ମୋ ଦୋଷ ଦେବ ନାହିଁ । କହୁଛି ଶୁଣ, ମନଦେଇ ଶୁଣ ।

ଅଚଳା ପାଖେଇ ଆସିଲା । ଦୁଇଟି ଦେହର ମଝିରେ ରହିଲା ଲମ୍ବାରବାଡ଼ି: କିନ୍ତୁ ଦୁଇଟି ମନ ଓ ଜୀବନକୁ ଦୂରେଇ ରଖିଲା ଦୁଇଟି ଦେହ । ଅମିତର ଗ୍ରୀବା ଉପରେ ବାହୁ ପକାଇ ଅନ୍ଧାର ଭିତରେ ତାର ଚିବୁକରେ ଚୁମ୍ବନ କରି କହିଲା, ଆଉ ଡର ଭୟ ମୋ ମନରେ ପଶିବ ନାହିଁ, କହ ।

ଅମିତ କିଛି ସମୟ ନୀରବ ରହିଲା । ଭାବୁଥିଲା ସବୁ କେଉଁଠୁ ସେ ଆରମ୍ଭ କରିବ, ଭୂତପ୍ରେତ ଧାରଣା ଆଦୌ ନାହିଁ ଅନ୍ତୁ, ନାହିଁ ।

ସେ କହିଲା, ଆତଯାତ ହୋଇ ଏ ଦୁନିଆରେ ନାଟ କରୁଥିବା ମଣିଷ ଦେହ, ଜୀବଜନ୍ତୁ, କୀଟପତଙ୍ଗ—ସଭିଙ୍କର ଦେହ, ନା, ତରୁଲତା, ତୃଣ ଓ ନଦୀ ସବୁତର ଦେହ ବିଲୀନ ହେଲେ, ମଣିଷର ଧାରଣାରେ ସେସବୁ ପ୍ରେତ ହୁଅନ୍ତି । କେଉଁମାନେ ବିଶ୍ୱାସ କରନ୍ତି ଯେ ପ୍ରେତମାନେ ପ୍ରଳୟ ଯାଏ (ଅବଶ୍ୟ ମଣିଷର ପ୍ରେତା ଅପେକ୍ଷା କରି ରହନ୍ତି । ଆଉ କେଉଁମାନେ ବିଶ୍ୱାସ କରନ୍ତି ଯେ ପ୍ରେତପଣ ପ୍ରେତରାଜ୍ୟରେ ସେମାନଙ୍କର ଅପୂର୍ଣ୍ଣ ଆଶା ପୂରଣ ପାଇଁ ଛଟପଟ ହୋଇ ଦୁଃଖ କଷ୍ଟ ସହନ୍ତି । ବ୍ୟର୍ଥମନୋରଥ ହେଲା ପରେ ପୁଣି ମଣିଷ ଦେହ ଧରି ଜନମ ଲଭନ୍ତି । କେଉଁମାନେ ସ୍ୱର୍ଗକୁ ଯାଇ ସୁଖଭୋଗ କରି ସୁକର୍ମର ଫଳ ଶେଷ ହେଲା ପରେ ପୁଣି ମର୍ତ୍ତ୍ୟପୁରକୁ ମଣିଷ ହୋଇ ଫେରିଆସନ୍ତି ।

ଅତଏବ, ସବୁଠାରେ ମହାଜନୀ କାରବାର । ଦେଏଣ ନେଏଣ ବେପାର । ମୂଳ ଓ ସୁଧ । କେବଳ ଆଖିରେ ଦିଶୁଥିବା ଦୁନିଆରେ ନୁହଁ, ଆଖିକୁ ଦେଖା ନ ଯାଉଥିବା ସ୍ଥୂଳ ଦୁନିଆ ବାହାରେ । ପ୍ରେତପୁରରେ, ସୂକ୍ଷ୍ମଦେଶ ସ୍ୱର୍ଗପୁରରେ, ସୂକ୍ଷ୍ମତର ଦେଶ ବିଷ୍ଣୁଲୋକରେ, ଏମିତି ସପ୍ତଲୋକରେ ଚାଲିଛି । ଆମ ଭିତରେ ଯେଉଁ 'ମୁଁ' ବୋଲି ଦେହଟାକୁ କିଏ ଅଛି, ସେ କେଉଁଠୁଁ ଆଇଚ ପୁଣି କୁଆଡ଼େ ଯିବ, ଅଥବା ସେ କେଉଁଠୁ ଆସିନାହିଁ କି କୁଆଡ଼େ ଯିବନାହିଁ. ଯେଉଁଠି ସେଇଠି, କେଜାଣି ବା ସେ ସବୁବେଳେ ସବୁଠି ଅଛି, ହୁଏତ ସେ ମୋଟେ ନାହିଁ, ଏକଥା କିଏ ସ୍ଥିର କରି କହିପାରିବ ?

—ଏଣୁ ତେଣୁ କଅଣ ବକୁଛ ମ, ମୁଁ ବୁଝିପାରୁ ନାହିଁ ।

—ମୁଁ କଅଣ ନିଜେ ବୁଝିଛି କି ? ବୁଝିଥିଲେ ଭୂତପ୍ରେତଙ୍କ କଥା ଶୁଣିବାକୁ କହିବାକୁ ମନ ବଳାନ୍ତା ନାହିଁ । ମଣିଷ ଓ ଅନ୍ୟାନ୍ୟ ଜୀବଜନ୍ତୁ, ଗଛ ବୃକ୍ଷ, ପାଣି ପବନର 'ମୁଁ'ମାନଙ୍କୁ ନିଜେ ଆଖିରେ ଦେଖିପାରନ୍ତି, ମନରେ ଅନୁଭବ କରିପାରନ୍ତି । ଅବା, କେତେଜଣଙ୍କ 'ମୁଁ'ର—ଅସ୍ତିତ୍ୱ ନାହିଁ ବୋଲି ଜାଣିପାରନ୍ତି ଓ ଅନୁଭବ କରନ୍ତି । ଯେଉଁମାନେ 'ମୁଁ'ମାନଙ୍କର ଅସ୍ତିତ୍ୱ ଉପରେ ବିଶ୍ୱାସ କରନ୍ତି ବୋଲି କହନ୍ତି, ସେମାନେ ତାଙ୍କର ବିଶ୍ୱାସକୁ ହିଁ ବିଶ୍ୱାସ କରନ୍ତି ।

ଆମ ରେଡ଼ିଓ ଟ୍ରାନ୍‌ଜିଷ୍ଟରର ଯନ୍ତ୍ର ବିଗିଡ଼ିଛି । ସେଇଥିପାଇଁ ସେ ମରିପଡ଼ିଛି । ଯେତେ ମୋଡ଼ିଲେ ବୋଲ ମାନୁନାହିଁ । କଥା କହୁନାହିଁ, କି ଗୀତ ବୋଲୁ ନାହିଁ । ଯେତେବେଳେ ତା ଦେହ ଠିକ୍ ଥିଲା, ଯେଉଁଠିକି ନେଲେ ସେଠି ଓ ଯେଉଁଠି ରଖିଲେ ସେଠି ମହମ୍ମଦ ରଫି ଓ ଲତା ମଙ୍ଗେସକରଙ୍କ ଗୀତ ଶୁଣାଉଥିଲା । କେତେ ରାଗରାଗିଣୀ କେତେ କେତେ ଗାୟକ ଗାୟିକାଙ୍କର ଗୀତ, ହସତାମସା, ନେତାନ ମନ୍ତ୍ରୀମାନଙ୍କର ବକ୍ତୃତା ଶୁଣାଉଥିଲା ।

ସେମାନେ ରେଡ଼ିଓ ଭିତରେ ନ ଥିଲେ । ସେମାନେ କଟକ, ପୁରୀ, ଫୁଲବାଣୀ ବା ଆଉ କେଉଁଠି, ଯେଉଁଠି ଆମେ ରେଡ଼ିଓ ବଜାଉ, ସେଠାରେ ନ ଥିଲେ । ସେମାନେ ଆଉ କେଉଁଠି କେବେ ଗାଇଥିଲେ, କହିଥିଲେ । ଯାହାକୁ ଟେପ୍ ରେକର୍ଡ଼ର ଯନ୍ତ୍ର ସାହାଯ୍ୟରେ ଆଗରୁ ରେକର୍ଡ଼ କରି ରଖାଯାଇଥିଲା । ଆମେ

ଶୁଣିଲାବେଳେ ଶହ ଶହ କୋଶ ଦୂରରେ, କାହିଁ କେଉଁଠି, ରେକର୍ଡ଼ କରି ଯାଇଥିବା ଶବ୍ଦକୁ ବିଜୁଳିଶକ୍ତି ସାହାଯ୍ୟରେ ସାରା ବିଶ୍ୱରେ ଚହଟାଇ ଦେଉଥିଲେ । ଟେଲିଓ ଯନ୍ତ୍ର ସେଉଁଠି ଧରି ଯାହା ଶୁଣିବାକୁ ଆରମ୍ଭ କରି ଦେଲେ ସେଥିରେ ଶୁଣା ଯାଉଥିଲା ।

ସେମିତି ଏ ଦେହ । କେତେପ୍ରକାର ଯନ୍ତ୍ରର ସମଷ୍ଟି । ଯାର ଭିତରେ ସର୍ବଦା ଚହଟି ରହିଥିବା ବିରାଟ ଶକ୍ତିର କଣିକାର ତେଜ ଯେ ଯନ୍ତ୍ର ଧରେ ଓ କର୍ମ କରେ । ଦେଖେ, ଶୁଣେ, ଶୁଙ୍ଘେ, ବାସନା ବାରେ, ସ୍ପର୍ଶ ଅନୁଭବ କରେ । ସବୁପ୍ରକାର ଅନୁଭୂତିକୁ ଗ୍ରହଣ କରି ମୁଣ୍ଡ ଭିତରେ ଥିବା ମସ୍ତିଷ୍କର ଗ୍ରହଣକାରୀ ଓ ନିର୍ଦ୍ଦେଶକାରୀ ଶକ୍ତି ସେ ମନ, ଯେ ଦେହର ବିଭିନ୍ନ ଅଙ୍ଗକୁ ସେମାନଙ୍କର କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦିଏ ।

ସେମାନେ କାର୍ଯ୍ୟ କରନ୍ତି । କଳଗୁଡ଼ିକ ବିଗିଡ଼ିଲେ, ଦେହ ଅଚଳ ହେଲେ ସେ ପଡ଼େ । ଅକାମୀ ହୁଏ, ଅର୍ଥାତ୍ ମରେ । ସ୍ଥାନ, କାଳ, ପାତ୍ର ସେଉଁ ଅନନ୍ତ ବିରାଟ ଶକ୍ତି ଭିତରେ ହିଁ ରହନ୍ତି, ସେ ଶକ୍ତି ସେମିତି ଥାଏ । ସେଇ ଶକ୍ତି ହିଁ ସମସ୍ତଙ୍କ ଭିତରେ 'ମୁଁ' । ସେ ଅନେକ, ପୁଣି ସବୁ ମିଶି ଏକ । ଦେହ ଗଲେ ସେ ଦେହର 'ମୁଁ' ତାର ସ୍ୱତନ୍ତ୍ର କାର୍ଯ୍ୟକାରୀ ଶକ୍ତିକୁ ହରାଏ । ତାର ଆଉ ସ୍ୱାଧୀନତା ନାହିଁ ଯେ, ମଣିଷର ମରଣ ପରେ ସେ ଭୂତ, ପ୍ରେତ, ଡାହାଣୀ, ଚିରୁଗୁଣୀ ହେଇ ରହିବ ।

—ରହ, ତୁମେ କଅଣ ଗୁଡ଼ାଏ ଗପିଲ ମୁଁ ବୁଝିପାରିଲି ନାହିଁ । ତମର ଚାରଗୁଡ଼ଲିଆ କଥା ମୁଁ ବୁଝିବାକୁ ବି ଚାହୁଁନାହିଁ । ତୁମେ ସେତେ ଭୂତ ପ୍ରେତ ନିଜେ ଦେଖିଛ, ସେଇ କଥା ସିଧା କହିବ ମୁଁ ଶୁଣିବି । ସିଧା ନ ଦେଖିଛ ତ କହ, ମୁଁ ଶୋଇବି । ପଥର, ନଈ, ଗଛ, ସାଇକଲ୍ ଏସବୁ ଭୂତ ହୁଅନ୍ତି କହି ମତେ ଠକୁଛ କାହିଁକି ? ତମର ତେବେ ଧାରଣା ସେ ସେମାନେ ନାହାନ୍ତି ?

ଆରେ ଆରେ, କାଲି ଆଗରେ ମୂଳା ଘେରେଇଲି ପରି ହେଲା, ଅଡ଼ପୀ ! ଅନ୍ଧ ଆଗରେ ଦର୍ପଣ ଦେଖାଇଲା ପରି ହେଲା । ସେମାନେ ନାହାନ୍ତି ଏକଥା ମୁଁ କହୁନାହିଁ । ମୋର ବିଶ୍ୱାସର ଦୋହଲିପଣ ପ୍ରକାଶ କଲି । ମଣିଷର ସ୍ଥୂଳ ଦେହ ସଙ୍ଗେ ତା'ଦେହରେ ଓତପ୍ରୋତ ଭାବରେ ଜଡ଼ିତ ହୋଇ ସିଧା ଆଉଗୁଡ଼ାଏ

ଦେହ ଅର୍ଥାତ୍. ସୂକ୍ଷ୍ମ, ସୂକ୍ଷ୍ମତର ଓ ସୂକ୍ଷ୍ମତମ ଦେହମାନ ଥିବ ତ ଭୂତପ୍ରେତ ଇତ୍ୟାଦି ନ ଥିବେ କାହିଁକି ? ବିଶ୍ୱାସ ହିଁ ଆଣିଥାଏ ଭୂତ ପ୍ରେତ !

ମୋର ଦୋହଲା ଦୋଳଖେଳା ବିଶ୍ୱାସ କେତେ ଥର ଭୂତପ୍ରେତ ଦେଖି ଦେଖି ପୁଣି ଦେଖିନାହିଁ । ଅନ୍ୟମାନେ ଦେଖିଛନ୍ତି । ତାଙ୍କୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ ସେମାନେ ଉତ୍ତର ଦେଉଁଣୁ ଝୁରନ୍ତି ଓ କହନ୍ତି—ସତେ ତ, ମୁଁ ସେସବୁ କଥା ଚିନ୍ତାକରି ନ ଥିଲି ସେତେବେଳେ ! ପ୍ରକୃତରେ ସେମାନେ ଭୂତ ଦେଖିଛନ୍ତି କି ନାହିଁ ସେ ବିଷୟରେ ସନ୍ଦେହ ନ ହୋଇପଡ଼ନ୍ତି । ସେମାନଙ୍କର ବିଶ୍ୱାସ ଦୋହଲି ଉଠେ ।

—ତମ କଥାରୁ ଏବେ ବୁଝିଲି ଗୋ, ସେମାନେ ନାହାନ୍ତି । ଆମେ ଖାଲି ମିଛରେ ଡରୁଁ ଓ ମରୁ । ସାହାବାଣୀର ଭୂତ କେବଳ ମୋର ଡର, କିନ୍ତୁ···

ଅଳସୀ ନୀରବ ହେଲା । ଅମିତର ଛାତି ଉପରୁ ବାହୁ ଉଠାଇ ଚିତ୍ ହୋଇ ଶୋଇଲା । ଦୀର୍ଘଶ୍ୱାସ ଛାଡ଼ି କାନ ପାରିଲା । ବାହାରୁ ଆସୁଥିବା ଶବ୍ଦଗୁଡ଼ିକ କାନରେ ବାଜିଲା । ଉତ୍ତରର ବଚନ 'କିନ୍ତୁ' ପଦଟି ମନ ଭିତରେ ବିବିଧ ଭୟଙ୍କର ରୂପମାନ ସର୍ଜନା କଲା । ଛାତି ଥରିଗଲା । ଗେରେକେଇ ସାମାନ୍ୟ ଟେକି ସେ କାନ୍ଥ ଆଡ଼କୁ ବୁଲିଲା । ଅନ୍ଧାର ଭିତରେ ମଶାରି କନା ପଡ଼ି ହଲାଉଛି । ଧୋବ ଫର୍ଫର୍ କାନ୍ଥ ଦେହରେ କାହାର ଖଣ୍ଡିଆ ମୁହଁ ଦିଶିଯାଉଛି । ସେ ଯେପରି କହି ଉଠୁଛି, ବିଶ୍ୱାସ ହେବ ନାହିଁ ? ହେଇ ଦେଖ୍, ମୁଁ ଅଛି, ମୁଁ ଯାଉଚି ତୋ ପାଖକୁ ।

ଅଳସୀ ଆଖି ବୁଜି ଅମିତ ପାଖକୁ ଲାଗିଆସିଲା । ଅମିତ କହିଲା, ପ୍ରହ୍ଲାଦର ବିଶ୍ୱାସ ଓ ଏକନିଷ୍ଠ ଭକ୍ତି ସ୍ତମ୍ଭଦେହରୁ ନରସିଂହଙ୍କୁ କାଢ଼ିଲା । ହିରଣ୍ୟକଶିପୁକୁ ସେ ବିଦାରି ମାରିଥିଲେ । ଏ ଘଟଣା ମୋଟେ ଥରଟିଏ ଘଟିଥିଲା କେଉଁ ଅତୀତ ଯୁଗରେ । ଆଉ କେବେ ଘଟିବାର ଜଣାଶୁଣା ନାହିଁ । ଯମର ଭଉଣୀ ଯମୁନା ନଦୀ ହୋଇ ପ୍ରବାହିତ ହେଲା । ଅହଲ୍ୟା ଶାପଗ୍ରସ୍ତ ହୋଇ ପଥର ପାଲଟିଥିଲେ । ପୁଣି, ଭଗବାନ ରାମଚନ୍ଦ୍ରଙ୍କର ପଦସ୍ପର୍ଶ ପାଇ ନିଜ ରୂପ ଧରିଲେ । ମାରିଚ ସ୍ୱର୍ଣ୍ଣମୃଗର ରୂପ ଧରି ରାମଙ୍କୁ ନିଜର ଅନ୍ୱେଷଣ କରାଇଲା । ନାଳ ସମୁଦ୍ରରେ ପଥର ଭସାଇ ଲଙ୍କାଗଡ଼କୁ ସେତୁ ବନ୍ଧାଇଲେ । ରତ୍ନାକର ଦସ୍ୟୁ ଋଷିଦ୍ରଷ୍ଟା ହେଲେ । ପୁଣି,

ହୁଙ୍କରୁ ବାହାର ହେଲେ ବଲ୍ମୀକ ମହାମୁନି । ସୂର୍ଯ୍ୟ, ଧର୍ମ, ପବନ, ଇନ୍ଦ୍ର, ଅଶ୍ୱିନୀ କୁମାର ନରରୂପ ଧରି ମହାସତୀ କୁନ୍ତୀଙ୍କୁ ସ୍ନେହ କରି ପୁତ୍ରବତୀ କରାଇଲେ । ସ୍ୱୟଂ ଅଗ୍ନି ଶ୍ୱାନରୂପ ଧରି ଧର୍ମରାଜ ଯୁଧିଷ୍ଠିରଙ୍କ ସଙ୍ଗେ ହିମାଳୟ ଉପରକୁ ଉଠିଥିଲେ । ଏସବୁ ଘଟଣା କେବେ କେଉଁଠି ଘଟିଥିଲା, ତାହା ସେହି ପୁରାଣକର୍ତ୍ତାମାନଙ୍କୁ ଗୋଚର, ଆଉ ଏବେ ଘଟୁନାହିଁ ।

—ନ ଘଟିଲେ ନାହିଁ, ଘଟିଥିଲା ବୋଲି ଆମେ ପୁରାଣ ପଢ଼ିଲାବେଳେ ବିଶ୍ୱାସ କରୁ । ଶୁଣ ମ, ଗାମରେ ରଜବେଳକୁ ରାମନବମୀ ଯାତ ହୁଏ । ଶହ ଶହ ନାରୀ ପୁରୁଷ ବସି ରାତ ଅନିଦ୍ରା ହୋଇ ଦେଖନ୍ତି । ଦେଖି ଦେଖି ମାଇପେ ନିଜକୁ ଭୁଲିଯାଆନ୍ତି । ମନେ କରନ୍ତି, ସେମାନେ ରାମ ସୀତାଙ୍କ ସମୟରେ, ତାଙ୍କରି ପାଖେ ପାଖେ ଅଛନ୍ତି । ଯେତେବେଳେ ଲକ୍ଷ୍ମଣ ଶକ୍ତି ଭେଦ ହୁଏ, ଲକ୍ଷ୍ମଣଙ୍କର ମରଣ ହୋଇ ସେ ତଳେ ପଡ଼ନ୍ତି ରାମଙ୍କର ବିଳାପ ଶୁଣି କାହା ଆଖିରୁ ଲୁହ ନ ଝରେ କୁହ ତ ?

—ତୁମ ଆଖିରୁ ?

—ହେଉ ପାଇଲା ଦିନରୁ, ବୁଝିବାର ଶକ୍ତି ହେଲା ଦିନରୁ ଲକ୍ଷ୍ମଣ ଶକ୍ତିଭେଦ ଦେଖି ମୁଁ କଇଁ କଇଁ ହୋଇ କାନ୍ଦଉଠେ । ଆଗରୁ ମୁଁ ଜାଣିଥାଏ, ହନୁମାନ ଗନ୍ଧମାର୍ଦ୍ଦନ ପର୍ବତ ଆଣିବେ । ବିଶଲ୍ୟକରଣୀ ଗଛର ପତ୍ରରସ ଲକ୍ଷ୍ମଣଙ୍କ କ୍ଷତସ୍ଥାନରେ ଦିଆହେବ । ସେ ସଙ୍ଗେ ସଙ୍ଗେ ବଞ୍ଚିଉଠିବେ । ତଥାପି, ରାମଚନ୍ଦ୍ରଙ୍କ ଆଖିକୁ ଲୁହ ଆସେ । ପୁଣି ଲକ୍ଷ୍ମଣ ଜୀଇଁ ଉଠିଲେ ରାମଚନ୍ଦ୍ରଙ୍କ ଓଠକୁ ହସ ଆସେ । ବିଗତ ଘଟଣା ଘଟିଲା ପରି ଲାଗେ ।

—ଏବେ ବୁଝିଲି ଅତସୀ, ଘଟିଲା ଘଟଣାଗୁଡ଼ିକର ମଧ୍ୟ ଭୂତପ୍ରେତ ଅଛନ୍ତି ! ନ ଘଟୁ ପଛେ, ଅତୀତ ଯୁଗର ଶକ୍ତିଶାଳୀ କବିମାନଙ୍କର କଳ୍ପନାରେ ଯେଉଁ ଚରିତ୍ରଗୁଡ଼ିକ ଜୀବନ୍ତ ହୋଇ ନାଚୁଥିଲେ, ସେହି କପୋଳକଳ୍ପିତ ଚରିତ୍ରଗୁଡ଼ିକର ବି ଭୂତପ୍ରେତ ଅଛନ୍ତି । ମଣିଷର ବିସ୍ମୟ, ଲୋଭ, ଆଶା, କୌତୂହଳ ଏବଂ ବିଶ୍ୱାସ, ସେଇ ସବୁ ଅବାସ୍ତବ ଚରିତ୍ର ଓ ଘଟଣାଗୁଡ଼ିକୁ ଜୀବନ୍ତ କରି ଆଗରେ ଥୁଅନ୍ତି । ନିଜର ବିଶ୍ୱାସ ଭିତରେ ମଣିଷ ନିଜେ ହଜିଯାଏ ।

ସେ ଚଳଚଣ ଦେଖେ ! ହସେ, କାନ୍ଦେ, ଭୟଗ୍ରସ୍ତ ହୁଏ । କ୍ରୋଧରେ ଜଳିଉଠେ । ଲୋଭୀପରି ହୋଇ ଅବାସ୍ତବ ଚରିତ୍ର ପଛରେ ଧାଏଁ । ହତାଶ ହୋଇ ଫେରେ, ସବୁ ପୁଣି ଭୁଲିଯାଏ ।

ସାହାବାଣୀର ପ୍ରେତମାନଙ୍କ ଭିତରୁ ବାହାରିବା ଅସମ୍ଭବ ନୁହେଁ । ରାଣୀ ଜାଣକାଣୀ ପ୍ରେତ ମଶାଣିଚଣ୍ଡୀ ହୋଇ ଆମର ବଙ୍ଗଳା ବାହାରେ ବୁଲୁଥିବାର ସମ୍ଭାବନା ଅଛି । ସମସ୍ତେ ସେମାନେ ଆଗ ମନରୁ ଜନ୍ମନ୍ତି । ମୂର୍ତ୍ତିକ ମଧ୍ୟରେ ପଦାକୁ ଛୁଟନ୍ତି, ସେଇଠୁ ସେମାନେ ଆଖି ଆଗରେ ଠିଆହୁଅନ୍ତି ।

ଆରେ, ତୁମେ ଶୀତରେ ଥରୁଛ କି ଭୟରେ ଥରୁଛ ମ ?

ଅସିତ ଅତସୀର ଦେହ ଉପରେ ହାତ ପକାଇଲା । ଅତସୀ ଗୁନ୍ନ ଗୁନ କହିଲା, ପୁଣି ସେହି ସାହାବାଣୀର ପ୍ରେତମାନଙ୍କ ଭିତରୁ ମୁହଁ କାଢୁଥିଲା । ଶୁଣୁଛନ୍ତି ଘୋଡ଼ାଚଢ଼ାର ଶବଦ ? ସାହେବର ଭୂତ ବାହାରେ ଘୋଡ଼ା ଚଢ଼ି ଧାଉଁଛି, ସାହାବାଣୀକୁ ଖୋଜୁଛି ।

– ଅସିତ କହିଲା, ସବୁ ସତ । ସେମାନେ ତୁମର ମୁଣ୍ଡ ଭିତରେ ବସା ବାନ୍ଧି ରହିଛନ୍ତି, ଆଗ ସେଇଠୁ ବାହାରି ପଦାକୁ ଆସୁଛନ୍ତି ।

ତୁମେ ମନେ ମନେ ଦୁର୍ଗା ନାମ ସ୍ମରଣ କର । ତମ ମନ ଭିତରୁ ଘରଦ୍ୱାର ଛାଡ଼ି ସେମାନେ ପଳାଇବେ ଆଉ ଆସିବେ ନାହିଁ ।

ମୋ କଥାର ସତ୍ୟତା ଏବେ ବୁଝିଲ ତ ? ଘୋଡ଼ାଭୂତ ନ ଥିଲେ ସାହାବଭୂତ ଚଢ଼ନ୍ତା କାହା ଉପରେ ? ପୋଷାକଭୂତ ନ ଥିଲେ ବସ୍ତ୍ର ପିନ୍ଧନ୍ତା କଅଣ ? ବନ୍ଧୁକ ଓ ଠେଙ୍ଗାଭୂତ, ସିଗାରେଟ ଓ ପିକାଭୂତ ସବୁ ଅଛନ୍ତି ।

ତୁମେ ଦୁର୍ଗା ନାମ ସ୍ମରଣ କର । ସବୁ ପ୍ରକାର ଭୂତପ୍ରେତ ତମ ମନରୁ ଖସି ପଳାଇବେ । ପିଲାଟିଏ ମା ପେଟରେ ରହିଲା ଦିନରୁ, ସେ ଜାଣୁ କି ନ ଜାଣୁ, ଭୂତପ୍ରେତଙ୍କ ସଙ୍ଗେ ଆଗ ତାର ଚିହ୍ନାପରିଚ ହୁଏ । ସେଇଠୁ ସେ ଜନମ ଲଭେ ।

ଅତସୀ ସନ୍ଦେହରେ ପଡ଼ିଲା । ଭୂତପ୍ରେତ ମଣିଷର ମୁଣ୍ଡ ଭିତରେ ଅଛନ୍ତି, ପେଟରେ ଅଛନ୍ତି, ପୁଣି ସେମାନେ ପଦାକୁ ବାହାରି ବାହାର ଦୁନିଆରେ ନାଟ କରନ୍ତି ?

ପୂର୍ବଜନ୍ମର କର୍ମଫଳ ଓ ଦେବଦେବୀଙ୍କ ଦୟାରୁ ମା ପେଟରେ ସନ୍ତାନ ଜନ୍ମେ । ସେଠାରେ କି ତାକୁ ଭୂତପ୍ରେତଙ୍କ ସଙ୍ଗେ ସଂଗ୍ରାମ କରିବାକୁ ପଡ଼େ ? ହୋଇଥିବ । ଜନ୍ମ ମାସର ସନ୍ତାନଟି ତାର ଶାଶୁଘର ଗ୍ରାମରେ ପେଟରୁ ଓହ୍ଲାଇ ପଡ଼ିଲା । ଶାଶୁ କହିଲେ, ଅଜାଣତରେ ବୋହୂ ମୋର ଶିବରାତ୍ରି ରେ ମହାଦେବଙ୍କ ମନ୍ଦିର ଭିତରେ ପଶିଲା । ଯୋଗିନୀମାନେ ପିଲା ସି ଫଳଟାକୁ ଛଡ଼େଇ ଖାଇଲେ । ଅତସୀ ଦଶଦିନ କାଳ ଯନ୍ତ୍ରଣାରେ ପଡ଼ି ଛଟପଟ ହୋଇଥିଲା ।

ଡାକ୍ତର ଔଷଧ ଦେଇଥିଲେ, ଉଠିବାକୁ ମନା କରିଥିଲେ ।

ଅତସୀ ମନେ ମନେ ଦୁର୍ଗାନାମ ସ୍ମରଣ କଲା ।

ଅସିତ କିଛିକ୍ଷଣ ନୀରବ ରହି ପୁଣି କହିଲା, ମୁଁ ଜାଣେ, ତୁମେ ଦୁର୍ଗାଙ୍କର ନାମ ସ୍ମରଣ କରୁଛ । ଏଥର ତୁମ ମନ ଭିତରୁ ଭୂତପ୍ରେତଙ୍କର ଧାରଣା ଛାଡ଼ି ପଳାଇବ । ବାହାରେ ସେମାନେ ଯେତେ ଉତ୍ପାତ କଲେ ବି ତୁମ ପାଖରୁ ଦୂରେଇ ରହିବେ । ଦୁର୍ଗାନାମ ସ୍ମରଣ କରିବା ମାତ୍ରେ ଦୟାମୟୀ ଦଶଭୂଜା ମାତାଙ୍କର ମନ ଭିତରେ ଆବିର୍ଭାବ ହେବ । ତାଙ୍କର ଅଭୟ ଚରଣ ତଳେ ତୁମର ମନ, ତୁମର ମୃଣ୍ମୟଦେହ ମଥା ନୋଇଁବ । ସେଠି ଭୂତପ୍ରେତଙ୍କର ସ୍ଥାନ ନାହିଁ । ଚଣ୍ଡୀଚାମୁଣ୍ଡୀ ଦୂରରେ ଥିବେ । ସେମାନଙ୍କର ସବୁ ବିକଟାଳ ରୂପ ସତ୍ତ୍ୱେ ସେମାନେ ଡର ଡରକା ତୁମକୁ କଣେଇଁ କଣେଇଁ ଚାହୁଁଥିବେ ।

ତୁମର ଅଚଳା ଭକ୍ତି ଅତି ଶକ୍ତିମନ୍ତ ଓ ଅଟଳ ବିଶ୍ୱାସ ଅଜେୟ ଆଶ୍ରୟ । ଦୁହେଁ ହାତ ଧରାଧରି ହୋଇ ତୁମର ଅତି ନମ୍ର ଓ ନିରମାଖୀ ପ୍ରତୀତି 'ମୁଁ'ର ଚାରିପାଖେ ଘୂରି ବୁଲୁଥିବେ । ଭୟ ଓ ଭ୍ରାନ୍ତି ଯେଉଁମାନଙ୍କର ସନ୍ତାନ ସନ୍ତତି, ସବୁ ଭୂତ ପ୍ରେତ, ଚଣ୍ଡୀ ଚାମୁଣ୍ଡୀ ଓ ଅପଦେବତା, ସେମାନେ ଭକ୍ତି ଓ ବିଶ୍ୱାସଙ୍କ ପାଖେ ପଶନ୍ତି ନାହିଁ, ଭୟରେ ଅପସରି ରହନ୍ତି ।

—ସତେ ଗୋ, ଦୁର୍ଗାନାମ ସ୍ମରଣ କରନ୍ତେ ମା ଆସି ଆଗରେ ଠିଆ ହେଲେ । କି ସୁନ୍ଦର ରୂପ ! ଦଶ ଭୂଜରେ ଦଶଟି ଆୟୁଧ, ସିଂହବାହନ, ପଦତଳେ ମହିଷାସୁର, ଦୁଇ ପାଖେ କାର୍ତ୍ତିକ ଓ ଗଣେଶ । ସୁନା ଓ ମୋତିମାଣିକ୍ୟରେ ଗଢ଼

ଅଲଙ୍କାର ସବ ଙ୍ଗରେ ଶୋଭାପାଉଛି, ଝଟକ ଉଠୁଛି । ମାତାଙ୍କର ହସ ହସ ମୁହଁ କେଡ଼େ ଶୋଭକର !

—ଅବକଳ ସୁନ୍ଦରୀଟୌକ, ବନୋଦବହ୍ୱାସ୍ତ ଅବାଟୌଧୁସ୍ତ ବଜାରର ଦେବୀମୂର୍ତ୍ତି ପଣ ଲୁଷେଁ କ ଅତସୀ ? ଧନ୍ୟ ସେ ମହାତ୍ମା ଯାହାଙ୍କର ଅଚଳା ଭକ୍ତି, ଅଟଳ ବଶ୍ୱାସ, ମହାଶୂନ୍ୟ ଭିତରୁ ସବୁ ସୌନ୍ଦର୍ଯ୍ୟ, ଶକ୍ତି ଓ ମଣିଷର ସବୁ ଆଶା ଆକାଙ୍‌କ୍ଷା ପୂରଣର ଉତ୍ସକୁ ଏକାଠି କର ଜଗତ୍‌ଜନନୀ ଦୁର୍ଗାଙ୍କୁ ଆଣି ମଣିଷ ଆଗରେ ଉଭା କରାଇଲେ । ଆଶାୟୀ ବଶ୍ୱାସୀ ମନର ସବୁ ଆଶ୍ୱାସନାର ସେ ଜନନୀ ।

କେତେ ଶତ ବର୍ଷ ଅତୀତ ହେଲଣି । ଧନ୍ୟ ଧନ୍ୟ ସେ ଶିଳ୍ପୀମାନେ, ଯେଉଁମାନେ ଦୁର୍ଗାଙ୍କର ସେହି ମୂର୍ତ୍ତିକୁ ମନରେ ଧାରଣା କର, କାଦୁଅ ମାଟି ଓ ରଙ୍ଗ ସାହାଯ୍ୟରେ ଜୀବନ୍ତ କର ଠିଆ କରାନ୍ତି ସେମାନେ ବି ଧନ୍ୟ । ଯେଉଁମାନେ ଭକ୍ତି ଓ ବଶ୍ୱାସରେ ସେହି ଜୀବନ୍ତ ପ୍ରତିମାଗୁଡ଼ିକୁ ମନମଧ୍ୟରେ ଅଟକାଇ ରଖନ୍ତି, ସ୍ମରଣମାତ୍ରେ ଦର୍ଶନ କର ସବୁ ଭୟ-ଭ୍ରାନ୍ତି, ଦୁଃଖଶୋକ, ଦୂର କରନ୍ତି ସେମାନେ ବି ଧନ୍ୟ !

ଏସବୁ ମନର ପ୍ରତିଷ୍ଠା, ଅତସୀ ! ମଣିଷର ମନ ସବୁ ସର୍ଜନା କରେ । ନଜର ସୃଷ୍ଟି ଭିତରେ ସେ ନଜେ ହଜଯାଏ । ଯେଉଁମାନେ ଏସବୁ ଦେବଦେବୀ ବଶ୍ୱାସ ନ କର କେବଳ ଗୋଟିଏ ଶକ୍ତି ଭଗବାନଙ୍କୁ ବଶ୍ୱାସ କରନ୍ତି, ସେମାନଙ୍କ ପାଖରେ ଦୁର୍ଗା, ଚଣ୍ଡୀ, ଶିବ, କୃଷ୍ଣ, ରାମଙ୍କର ରୂପ ବା ମୂର୍ତ୍ତିର କୌଣସି ଅର୍ଥନାହିଁ । ତେବେ ଆମର ତ ବଶ୍ୱାସ ଅଛି । ଆମ ଦେବତା ଆମର ପାଖେ ପାଖେ ଅଛନ୍ତି । ସ୍ମରଣା କଲେ ଆଗକୁ ଆସୁଛନ୍ତି, ଯେଉଁ ରୂପରେ ସେ ଆସନ୍ତୁ ।

ସତେ ଗୋ ଅତସୀ, ଆମର ବଶ୍ୱାସ ଅଛି ! ସେଇ ବଶ୍ୱାସ ବସ୍ମୟ ଓ ଭୟରୁ ଜନମିଛି । ଆଜି ନୁହେଁ, ସହସ୍ର ସହସ୍ର ବର୍ଷ ପୁରୁଣା ଆମର ସେ ବଶ୍ୱାସ ।

ସୂର୍ଯ୍ୟ, ଚନ୍ଦ୍ର, ପାଣି, ପବନ, ଅଗ୍ନି, ପର୍ବତ, ସିଂହ, ବାଘ, ମୟୂର, ସାପ ସମସ୍ତଙ୍କୁ ଆମେ ଦେବତା କର ପୂଜୁଛୁ । ଏସବୁ ଆଖିକୁ ଦଶେ । ଏମାନଙ୍କର ପ୍ରତାପ ଆମେ ଅନୁଭବ କରୁ । ଆଖିରେ ନ ଦଶିଲ ଭୟଗୁଡ଼ିକୁ ବି ଆମେ ଆଗ ମାନ ନଉଁ । ସେଇଠୁ ସେ ସବୁକୁ କାଳ୍ପନକ ରୂପ ଦେଉଁ । ସେ ସବୁ ରୂପ ମନରେ

ଆଙ୍କି ହୋଇ ଛପି ରହେ । ଠିକ୍ ବେଳରେ ରୂପ ଧରି ସେମାନେ ମୁଣ୍ଡ ଟେକି ଉଠନ୍ତି । ଆଗ ମନ ଆଗରେ ନାଚ କରନ୍ତି, ସେଇଠୁ ଆଖି ଆଗକୁ ଆସନ୍ତି ।

ଆମର ବିଶ୍ୱାସ ଯେ ଭସ୍ମର ଅନ୍ୟ ନାମ । ସେ ଭସ୍ମ ଆମ ମୁଣ୍ଡ ଭିତରର ଡହ୍ନରେ ବିଭୂତି ବସାକରି ସହସ୍ର ରୂପରେ ରହିଛି । ଏତିକି କହିଲେ ଯଥେଷ୍ଟ ହେବ ନାହିଁ । ସହସ୍ର ରୂପରେ ସେଇ ଭସ୍ମ ଆମର ରକ୍ତର ପ୍ରବାହରେ ମିଶିଛି । ଏଥିପାଇଁ ଦାୟୀ ହେଉଛ ତୁମେ ମାଆମାନେ ! ସାରା ଜୀବନ ଆମକୁ ଡରୁଆ ଛେଳୁଆ କରି ଛେଳିମେଣ୍ଢା କରି ରଖିଛ । ତୁମେ ମାଇପିପଲ—

ଅତସୀ ଅଭିମାନ କଲା । କାନ୍ଦିବାକୁ ତାର ମନହେଲା । ସେ ଜାଣିଥିଲା, ତାର ସ୍ୱାମୀ ଭଲମନ୍ଦ କଥା ପାଇଁ ତାର ଦୋଷ କେବେ ଦେବେ ନାହିଁ । ପିନ୍ଧିଲା ଲୁଗାରେ ଖୁମ୍ପା ଲାଗିଲେ ସେ ଦିଅନ୍ତି କଣ୍ଟା ଓ ଖୁଣ୍ଟାର ଦୋଷ । ହାତରୁ ଖସି ଗ୍ଲାସ୍ ପ୍ଲେଟ ଭାଙ୍ଗିଲେ ସେ ଦିଅନ୍ତି ଅବାଗିଆ ଗ୍ଲାସ୍ ପ୍ଲେଟର ଦୋଷ । ଏବେ ଜଣାପଡ଼ିଲା । ବାପା, ଡାକ୍ତ, ଭାଇ ଓ ଅନ୍ୟାନ୍ୟ ସବୁ ମରଦଙ୍କ ପରି ସେ ବି ମାଇପଙ୍କ ଦୋଷ ଦେଲେଣି, ନକର୍ତ୍ତବ୍ୟ ବୋଲି ପିନା । ସ୍ୱାଙ୍କ ରକ୍ତରେ ଭସ୍ମରେ ଭସ୍ମ ମିଶିଲା, ସେଥିକୁ ମାଇପଙ୍କ ଦୋଷ କାହିଁକି ହେବ ?

ପ୍ରକାଶ୍ୟରେ ଅତସୀ ପଚାରିଲା, କହେ, କାହିଁକି ମାଇପଙ୍କ ମୁଣ୍ଡରେ ଦୋଷ ଲଦୁଛ ? ମା'ମାନେ ପିଲାମାନଙ୍କୁ ଦଶ ମାସ ପେଟରେ ଧରି ଜନ୍ମଦେଲେ । ଦେହର ରସ ଖୋଇ କୋଡ଼ରେ କାଖରେ ଧରି ବଢ଼ାଇ ମଣିଷ କଲେ । ସେମାନେ ଭାଗ୍ୟଦୋଷରୁ ଡରୁଆ ହେଲେ ବୋଲି ତୁମେ କହିବ ?

—ତୁମ ମନରେ କେଉଁଠୁ ଛଳ ପଶିଲା, ଅତସୀ ? ମା, ଭଉଣୀ, ସ୍ତ୍ରୀ ଓ ଝିଅମାନଙ୍କର ଗୁଣ-ଅବଗୁଣ ବାଛି ଯେତେ କହିଲେ ବି ଆମେ ତାଙ୍କୁ ଭଲପାଉଁ । ସେଇମାନଙ୍କ ପାଇଁ ଗୃହସଂସାର । ସେଇମାନଙ୍କ ପାଇଁ ଆମେ ଜୀବନମୁର୍ଚ୍ଛା ପରିଶ୍ରମ କରୁ, ପ୍ରାଣ ଦେଉଁ ।

ଅତସୀ କହିଲା, ହଁ, ତୁମେମାନେ ଯେତେ କହିଲେ ଯେତେ ଅତ୍ୟାଚାର କଲେ, ଆମେମାନେ ତୁମକୁ ଭଲପାଉଁ । ଆଖି ଆଗରୁ ଟିକିଏ ଅନ୍ତର ହେଲେ ତୁମେ ଯେଉଁ ପାରଙ୍ଗମ ହୁଅ ପଛେ, ମନ ଦକ ଦକ, ପ୍ରାଣ ଛଟପଟ ହୁଏ । ତୁଣ୍ଡର କଥା ପିନା ଶୁଣିଲ, ମନର କଥା ଦେଖିବ କିପରି ?

ଅସିତ ଅତସୀକୁ ଆହୁରି ପାଖକୁ ଟାଣିନେଇ ଗେଲକଲା । ସ୍ନେହର ତୋଫାନ୍ ଥମିଲାରୁ ସେ କହିଲା, ମୁଁ ଜାଣେ, ତୁମେମାନେ ପୁଅ-ଝିଅଙ୍କୁ ଅତ୍ୟଧିକ ସ୍ନେହକର । ସେଥିପାଇଁ ଡର ଓ ଡରାଇ ରଖ । ଅଦେଖା ଭୂତପ୍ରେତଙ୍କୁ ତୁମେ ମା'ମାନେ ଆଗ ତୁମ ମନରୁ ଜନମ କରି ପିଲାମାନଙ୍କ ମୁଣ୍ଡ ଭିତରକୁ ଠେଲିଦିଅ । ସେଇ ମୁଣ୍ଡ ଭିତରେ ସେମାନେ ବଢନ୍ତି । ମଣିଷର ମନ ଦୁର୍ବଳ ହେଲେ, ତାର ବୁଦ୍ଧି, ବିବେକ ଓ ବିବେଚନା-ଶକ୍ତିକୁ ଭୟ ଗ୍ରାସିଲେ, ଭୂତପ୍ରେତମାନେ ମୁଣ୍ଡ ଭିତରୁ ଅର୍ଥାତ୍ ମନରୁ ବାହାରି ଆଗକୁ ଆସନ୍ତି ।

—ସେମାନେ ତେବେ ନାହାନ୍ତି ?

—ନାହାନ୍ତି ଯଦି ଆଖି ଆଗକୁ ଆସନ୍ତି କେମିତି ? ସାହାବାଣୀର ପ୍ରେତଟି ବାରମ୍ବାର ତୁମ କଡ଼-କାନ୍ଥରୁ ବାହାରି ମୁହଁ ଦେଖାଉଛି । ତୁମେ ନିଜେ ଦେଖିଲ । ମନଇଲେ ଆହୁରି କେତେ ଥର ଦେଖିବ । ସେ କିପରି ଓ କାହିଁକି ଆଗ ତୁମ ମନରେ ବସା ବାନ୍ଧିଲା, ସେଇଠୁ ଆଗକୁ ଆସିଲା, ସେଇ କଥା ମୁଁ ବୁଝାଇ କହୁଛି । ଶୁଣିବ ?

—କହ ।

—ମୂଳରୁ କହୁଛି ଶୁଣ । ବାହାଘର କେତେ ବର୍ଷ ହେଲାଣି ସେ ଔଢ଼ଠାମ୍ନାଁ ବୋହୂଟିର । ସେ ଯିଏ ହେଉ ସେ ବିଷୟ ଜାଣିବାକୁ ମନକରନା । ବୋହୂଟିଏ ତ, ନିଶ୍ଚୟ ସୁନ୍ଦର ଓ ସ୍ୱାସ୍ଥ୍ୟବତୀ ହୋଇଥିବ । ହିନ୍ଦୁ ଘରର କୁଳଲକ୍ଷ୍ମୀ କର୍ମକୁଶଳୀ, ଲଜ୍ଜାବତୀ, କୁହାର ବୋଲର । ସେ ଭକ୍ତିମତୀ । ସମସ୍ତଙ୍କର ସ୍ନେହ ଆଦରର ପିତୁଳାଟିଏ ।

ସ୍ୱାମୀ ସ୍ୱାସ୍ଥ୍ୟବାନ୍, କାର୍ଯ୍ୟଦକ୍ଷ । ଟିକେ ବୋହୂଟିକୁ ଦଣ୍ଡେ ନ ଦେଖିଲେ ବଣା । ଧନୀ, ମଧ୍ୟବିତ୍ତ, ଦରିଦ୍ର ଯେଉଁ ଘରର ହେଉ । ସାଙ୍ଗ ବୋହୂମାନେ ମା ହେଲେଣି, କିନ୍ତୁ ଏ ବୋହୂଟିର କାନି ଧରିଲା ନାହିଁ ।

—ଭାଗ୍ୟ !

—ହଁ, ଭାଗ୍ୟ । ପିଲା ହେବାର ବୟସ ଯାଇନାହିଁ । ତଥାପି ସମସ୍ତଙ୍କ ମନରେ ବ୍ୟାକୁଳତା ! ବଡ଼ ଡାକ୍ତରଙ୍କୁ ଦେଖାଇ ଦୁହିଁଙ୍କୁ ପରୀକ୍ଷା କରାଇ କାରଣ

ଜାଣି ବ୍ୟବସ୍ଥା କରିବାର ସୁଯୋଗ, ସୁବିଧା, ସମ୍ବଳ ନାହିଁ । ଥିଲେ ବି ଚିନ୍ତା ଓ ଲୋକଙ୍କ ସମାଲୋଚନା ଡର ସେତିକି କରାଇ ଦେଉନାହିଁ । ଏଣେ ମନ ହାଁପାଁ, ଅସ୍ଥିରା ଛଟପଟ ।

ପୂର୍ବ ପ୍ରଚଳିତ ଅଭ୍ୟାସ ପାଇଁ ଚେଷ୍ଟା ଅନ୍ୟମାନଙ୍କର ଉପରେପଡ଼ି ଦେବା ଉପଦେଶ ମାନିବାକୁ ହେବ । ବାରବ୍ରତ, ଯେତେ ଯେଉଁଠି ଠାକୁର-ଠାକୁରାଣୀ, ଚଣ୍ଡୀ-ଗୁମଣ୍ଡୀ, ରାମ, କୃଷ୍ଣ, ଶିବ, ହନୁମାନ, ଗାଈ-ବଳଦ, ଗରୁଡ଼, ସାଧୁ, ପୂଜା କରି, ଅତି ଭକ୍ତି ଓ ବିଶ୍ୱାସରେ ସେମାନଙ୍କର ବୁଝ ଖାଇ, ମନରେ ରଖି, ସେମାନଙ୍କର ଗୁଣ ସ୍ମରଣା କରି, ନିଜ ଚନ୍ଦାରେ ଚନ୍ଦନଟୀକ, ଗଳାରେ କୁଣ୍ଡାଇ, ବୋହୂକି ଆକୁଳ ପ୍ରାର୍ଥନା କରୁଛୁ— ପୁଅଟିଏ ଦିଅ । ତା ପାଇଁ ଅନ୍ୟମାନେ ବି ପୂଜା-ପ୍ରାର୍ଥନା, ଉପାସ-ବ୍ରତ କରି ଡାକ ଗ୍ରଡ଼ୁଛନ୍ତି— ବୋହୂ କୋଳରେ ପୁଅ ବଳଟେ ଦିଅ ।

ଅଜପୀ ଅସ୍ଥିରତା ଅନୁଭବ କଲା । ପୁଅଟିଏ ଦିଅ ବୋଲି ଯେ କେଉଁ ଦେବତାଙ୍କ ପାଖରେ ପ୍ରାର୍ଥନା ନ କଲେ ବି ମା ଖୁଡ଼ୀ, ଶାଶୁ, ଖୁଡ଼ୀଶାଶୂଙ୍କର ଆଜ୍ଞା ପାଳନ କରି ସେସବୁ ଦେବଦେବୀଙ୍କର ପୂଜା କରେ । ଯେଉଁଠି ଦେବଦେବୀ ଅବା ସେମାନଙ୍କର ମନ୍ଦିର, ଆସ୍ଥାନ ଦେଖିଲେ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଏ । ଏହା ତାର ବିଶ୍ୱାସ ହୋଇଛି ଯେ ଦେବତାମାନେ ଯେଉଁଠି ମଣିଷର ଭକ୍ତି ଥାଏ ସେଇଠି ଥାଆନ୍ତି । ମୁଣ୍ଡ ନୁଆଁଇଲେ ହାତ ଯୋଡ଼ିଲେ ଖରାପ କିଛି ହୁଏ ନାହିଁ ।

କେଉଁଠି ଗିର୍ଜା କି ମସଜିଦ୍ ଆଖିରେ ପଡ଼ିଲେ ଅଭ୍ୟାସବଶତଃ ଗ୍ଲଳ ଯାଉଁ ଯାଉଁ ମୁଣ୍ଡ ନୁଆଁଇଛି । ତା ପରେ ଭାବନା ଆସିଛି ମନକୁ, ଭୁଲ କଲି କି ? ମନ ଉତ୍ତର ଦେଇଛି, ନାହିଁ ନାହିଁ, ଠାକୁର ସବୁଠି ଅଛନ୍ତି । କେତେ ଜାଗାରେ କୁଖ୍ୟାତପୀରଙ୍କ ସମାଧି ଅଛି । ସିଲଣି ଭୋଗ ନେଇ ଲମ୍ବ ଲମ୍ବ ସାଷ୍ଟାଙ୍ଗ ପ୍ରଣାମ କରି ମା ମାଉସୀମାନେ ମନକାମନା ଜଣାଇଛନ୍ତି । ସତ୍ୟନାରାୟଣ ପାଲା କଲେ ପୀରଙ୍କର ପୂଜା କରାହୁଏ, ଏସବୁ ଜାଣି ସ୍ୱାମୀ ତାକୁ ଛଳେଇ କହୁଛନ୍ତି କି ?

ଅଜପୀ କହିଲା, ଉପାସ ବ୍ରତ ଓ ଦେବଦେବୀମାନଙ୍କ ପୂଜା ମୁଁ କରେ ବୋଲି ମତେ ଉପହାସ କରି, ଅଣ୍ଡାକରି କହୁଛ ? ପୁଅ ଝିଅ ମୁଁ କେବେ କେଉଁ ଠାକୁରଙ୍କୁ ଏବଯାଏ ମାଗି ନାହିଁ, ମନେପଡ଼େ ନାହିଁ ।

ଅସିତ କହିଲା, ଦେଖ କେମିତି ଅଡ଼ୁଆ ଲୋକ । କଥା ଆରମ୍ଭ କରୁଣୁ ନିଜ ଉପରକୁ ଟାଣିନେଇ ଅଭିମାନ କଲଣି ! କହୋ, ତୁମେ କଣ ମୋର ଅଚ୍ଛା ମଣିଷ ଯେ ମୁଁ ଉପହାସ କରିବ ? ସ୍ତ୍ରୀର ଭାଇଭଉଣୀ, ବାପ-ମା ଓ ଦାଦ-ଖୁଡ଼ୀଙ୍କର, ବାପ, ମା, ଦାଦ-ଖୁଡ଼ୀ ପିଉସା-ପିଉସୀମାନେ ଅଚ୍ଛା ମଣିଷ । ତୁମକୁ ମୁଁ ଯାହା କହୁଛି ··

—ତୁମ ନିଜ ଆଖିରେ ଦେଖିଥିବା ଭୂତପ୍ରେତଙ୍କ କଥା କହିବାକୁ କବାଡ଼୍ କରି ଏଣ୍ଡୁତେଣ୍ଡୁ କଣ କହୁଛ ? ମୁଁ ଶୁଣିବି ନାହିଁ । ମୋତେ ଏଣ୍ଡୁତେଣ୍ଡୁ କହି ଠକୁଛ ।

—ନିଜ କଥା ମୁଁ କହୁଛି ଯେ ! ଯେଉଁ ବୋହୂଙ୍କ କଥା ମୁଁ କହୁଥିଲି, ସିଏ ମୋ ମା ହୋଇପାରନ୍ତି, ତୁମର ମା, ଅବା ଆଉ କାହାର ମା ମାଉସୀ ବ ହୋଇପାରନ୍ତି ।

ଅତସୀର ମନର ଅଭିମାନର ଅବସାନ ହେଲା । ଅସିତର ଫୁଙ୍ଗୁଳା ଦେହରେ ବାହୁଲତା ଗୁଡ଼ାଇ ସେ ଗେହ୍ଲେଇ କହିଲା, ଜାଣିପାରୁ ନା କି ରାତି କେତେ ହେଲଣି । ନିଶା ଗର୍ଜୁଛି, କଥା ଲମ୍ବାଇଲେ ରାତି ପାହିବ । ଠିକେ ଠିକେ କହ, ସବୁ କହ, ମୁଁ ମନଦେଇ ଶୁଣୁଛି ।

ଅସିତ କହିଲା, ଫୁଲବାଡ଼ୀରେ ଶୀତଦିନର ରାତି ସହଜରେ ପାହେ ନାହିଁ । ଦେଖିବ ରହ, କାକର ସାଙ୍ଗକୁ କୁହୁଡ଼ି ମାଡ଼ିଆସିବ । ଘୋରଅନ୍ଧାର ହେବ । ମୁହଁକୁ ମୁହଁ ଦିଶିବ ନାହିଁ । କୁହୁଡ଼ି ଛାଡ଼ି ଖରାପଡ଼ିବ ନଅଟାରେ । ଆମର ସକାଳ ହେଉଛି ଦେଢ଼ଟାବେଳେ ହେବ ।

ଟିକି ବୋହୂଟି କଥା କହୁଥିଲି ପରା ! ଅବିକଳ ସେ ଚମ୍ପା ଫୁଲ । ସ୍ନେହ ପ୍ରେମର ପ୍ରତିମାଟି । ରାତି ନ ପାହୁଣୁ ସେ ବଚ୍ଛିଣାରୁ ଉଠି ପଦାକୁ ଯାଏ । କବାଟ ଖୋଲିବା ସଙ୍ଗେ ସଙ୍ଗେ ସଂସାରରେ ଯେତେ ଯେଉଁଠି ଲାଜ-ସରମ ଲୁଚି ଛପି ରହୁଥାଆନ୍ତି ସମସ୍ତେ ଧାଇଁଆସି ତାକୁ ବେଢ଼ାଇ ଧରନ୍ତି ।

—ଭୂତପ୍ରେତ କଥା କହୁଥିଲ ପରା ?

— କହୁଛୁ, ଲକପରମ ସେମାନଙ୍କର ମାଉସୀପୁଅଭାଇ । ଲୁଗାର ଆବରଣ ତଳେ ଟିକ ବୋହୂଟି ଯେମିତ ଲୁଚଛପି ଥାଏ । କୁହୁଡ଼ି ଅନ୍ଧାର ଭିତରେ ଯେପରି ବଣ ପାହାଡ଼, କୋଠାବାଡ଼ି, ମଣିଷ ଓ ପଶୁପକ୍ଷୀ ଛପି ରହନ୍ତି, ସେହିପରି ଟିକି ବୋହୂର ପେଟ ଭିତରେ ଟିକି ଛୁଆଟିଏ ଛପି ରହିଥାଏ ।

କେବଳ ଅନ୍ଧାର ନୁହେଁ, ମା ପେଟର ସେଇ ଅନ୍ଧାର ଭିତରେ ସବୁ ବିଶ୍ୱାସର ଦେବଦେବୀ, ଚଣ୍ଡୀରୁମଣ୍ଡୀ, ଭୂତପ୍ରେତ, ବ୍ରହ୍ମରାକ୍ଷସମାନେ ଛପି ଛପି ନାଚ କରୁଥାନ୍ତି । ଗଢ଼ି ଉଠୁଥିବା ମଣିଷ ପିଲାଟିର ବାହାରେ ଓ ଭିତରେ, ମା ମନର ଧାରଣାରେ ଅଗଣାଗଣ ଦେବଦେବୀ ଓ ପ୍ରେତଦଳ ବସାବାନ୍ଧି ରହିଥାନ୍ତି ।

ମାଆର ରକ୍ତରେ ଭୟ ଓ ଭକ୍ତି ଟେଳୁଛି । ସେଇ ରକ୍ତରେ ପିଲାର ପିଣ୍ଡ ଗଢ଼ିଉଠେ । ଯେଉଁ ଦଶ ମାସ ସେ ପେଟରେ ରହେ, ମା ଉପରେ କେତେ କଟକଣା ଜାରି—ଅନ୍ଧାରରେ ଏକା କେଉଁଠିକୁ ଯିବୁ ନାହିଁ ଲୋ ବୋହୂ । ଦିନ ବେଳେ ବି ଏକା ରହିବୁ ନାହିଁ, ସାବଧାନ, ଶିବମନ୍ଦିର ପାଖକୁ ଗଲେ ଦୋଷ ।

—ତୁମେ ଏସବୁ ମାଇପି କଥା କେଉଁଠୁ ଜାଣିଲ ମ ?

ମୁଁ ମୋ ବୋଉ ପେଟରୁ ଜନମିଛି, ସାତ ବର୍ଷ ଯାଏ ଯୁକ୍ତ କରି କ୍ଷୀର ଶୋଷିଛି । ମୁଁ ଆଖି ବୁଜି, କାନରେ ଠିପିଦେଇ ମଣିଷ ହୋଇନାହିଁ । ଶୁଣ, ସେଇ ପିଲାଟି ସଂସାରକୁ ଆସି କୁଆଁ କୁଆଁ ରଡ଼ି ଛାଡ଼ିଲା । ସମସ୍ତଙ୍କ ମନ ତାହାରି ପାଖରେ । ଅଜଣା ମାଇପିଟିଏ ଆସିଲେ କାଳେ ଦୃଷ୍ଟି ପଡ଼ିଯିବ ବୋଲି ପିଲାକୁ ଲୁଚେଇ ରଖ । କାନରେ ଘୋଡ଼ାଇ ରଖ । କେଉଁ ଅଜଣା ଡାଆଣୀ କାଳେ ରକ୍ତ ଶୋଷିନେବ, ସେଇଥିପାଇଁ ମନ୍ତୁରା ପାଣି ଛିଞ୍ଚ । ତେଉଁଶଥିମାନ ବାହୁରେ, ଅଣ୍ଟାରେ ମାଳ ମାଳ ବାନ୍ଧ, ସବୁ କେବଳ ଭୟର ଧାରଣା !

ସେଇ ଭୟ ଧାରଣା ଆମର ଅନ୍ଧବିଶ୍ୱାସର କୁହୁଡ଼ି ଭିତରେ ଏ ଦେଶର, ଆମ ସମାଜର ପିଲାମାନେ ବଢ଼ନ୍ତି । ଦେହ ଟିକେ ଇସ୍ କରି ହେଲେ ପ୍ରକୃତ କାରଣ ବୁଝିବାକୁ ଚେଷ୍ଟା ନ କରି କେଉଁ ଡାଆଣୀର ଦୃଷ୍ଟି ପଡ଼ିଲା, କେଉଁ ଭୂତପ୍ରେତ ଗ୍ରାସିଲା ବୋଲି ଝଡ଼ାଫୁଙ୍କା କର । ଅଶିକ୍ଷିତ ଗାଁ-ବଇଦର ମନ୍ତୁରା ପାଣି, ଚୂଟକା

ଔଷଧ ଦଅ । ହଳ ରଖେ ବା ହଳଡାଳ ରଖେ । ବଣ୍ଟଗଲେ ଗୁଣିଆ ଓ ଗାଁ-ବଇଦର ଜଗମଣ୍ଡ ବୋଲ ବଶ୍ୱାସ କର । ମାଇଲେ କେଉଁ ଅଜଣା ଡାହାଣୀ ଅବା ଭୂତପ୍ରେତ ଚଣ୍ଡୀସ୍ୱମଣ୍ଡୀର ଦୋଷ ଦଅ ।

—ମୁଁ ଜାଣେ ଗୋ । କେତେଥର ଦେଖିଛୁ । ଉଚାଣି ପିଲଙ୍କୁ ମଶା କାମୁଡ଼େ, ପୁରୁଣା ଖଟରୁ ଘୁରପୋକ ବାହାର ରାତ ଅନ୍ଧାରରେ ତା ଜର୍ଜଳା ଚମକୁ କାମୁଡ଼ି ରକ୍ତ ଶୋଷି ପିଅନ୍ତି । ସେ ଛଟପଟ ହୁଏ । ଭଡ଼ମୋଡ଼ ହୁଏ, ରାହା ଧର କାନ୍ଦେ, ଦୋଷ ହୁଏ ଡାଆଣୀର ।

ପିଲ ମୋଟାମୋଟି ହେବ, ଶୀଘ୍ର ବଢ଼ିବ ବୋଲ ଅତ ସ୍ନେହ ମା ଆଈମା ମାନେ ଟାଣେଆଉଟା ଛୀର ପେଟେ ପେଇଦଅନ୍ତି । ପିଲ ଢୋକେ ନାହିଁ ବୋଲ ନାକ ଚପିଦଅନ୍ତି । ସେ ଆଖି ଖୋଲି ଉଦ୍‌ମୁଠା ହୋଇ ଢୋକେ । ଦିନ୍ଙ୍କ ପର ପେଟ ଫୁଲଥାଏ ।

ପେଟ ମୋଡ଼େ । ଡ଼'ମ୍ବୁହ ଛୁଟେ, ଦୋଷ ହୁଏ କାହା ଦୃଷ୍ଟିର । କୋହଲେ, କେଉଁ ଚଣ୍ଡୀସ୍ୱମଣ୍ଡୀ, ଠାକୁରାଣୀ ଅପଦେବତାର । ଗାଁ ବଇଦ ଆସେ । ଗୁଣିଆ ଆସି ଝଡ଼ାଫୁଙ୍କା କରେ, ଠାକୁରାଣୀ ମାନାଣା କରାହୁଏ । ପିଲ ବଞ୍ଚିଲେ, କହିଲ, କୋହଲେ ନାହିଁ ।

—ତୁମେ ଏତେ କଥା ଜାଣିଛ, ଅତସୀ ! ତଥାପି ଭୂତପ୍ରେତଙ୍କୁ ବିଶ୍ୱାସ କରୁଛ ? ଗୁଣୀ ଡାଇଜାଣୀର ମନ୍ତ୍ର ଓ ଔଷଧର ଜଗମଣ୍ଡ ପ୍ରଚ୍ୟର କରୁଛ ? ଏତ ମିଛ କେହି ଜାଣେ ନାହିଁ । ଲୋକମୁଖରେ ପ୍ରଚ୍ୟରତ ସାହେବ ସାହାବାଣୀର ଗପ ବିଶ୍ୱାସ କରୁଛ ? ସାହାବାଣୀ ପୁଣି କାହୁରୁ ବାହାର ତୁମ ପାଖକୁ ଆସିବାର ଦେଖି ଭୟରେ ଛାନିଆ ହେଉଛ ?

ମୁଁ ତାର କାରଣ ଜାଣିଛୁ, ଅତସୀ ! ଅନ୍ଧବିଶ୍ୱାସ ଗୋଟିଏ ବେଗବତୀ ନଦୀ ପରି । ଯେପରି ବରଷା ହେଲେ କେତେ ଗ୍ରୋଟ ଗ୍ରୋଟ ଧାର ପାଣି ଗଡ଼ିଆସେ, ସେ ସବୁ ମିଶି ଆଉ ଟିକେ ବଡ଼ ଧାର ହୁଏ । କେତେ ଧାର ମିଶି ନାଳ । କେତେ ନାଳ ମିଶି ଘ୍ରୋଟ ନଦୀ । କେତେ ଘ୍ରୋଟ ନଦୀ ମିଶି ଶାଖାନଦୀ, ବଡ଼ ନଦୀ । ସେଇଠୁ ଅତ ବଡ଼ ନଦୀ ହୋଇ ସମୁଦ୍ରରେ ମିଶେ । ସେହିପରି ଆମ ଅନ୍ଧ ବିଶ୍ୱାସର ବଡ଼ ନଦୀ

ଯୁଗ ଯୁଗ ହୋଇ ରହିଛି, ସମସ୍ତଙ୍କ ମନରେ । କୁଟୁମ୍ବ, ସମାଜ ଓ ଦେଶର ମନରେ । ଆମେ ଯେତେ ପ୍ରତିବାଦ କଲେ କି ଅନ୍ଧବିଶ୍ୱାସର ଡୋର୍‌ରେ ଚଢ଼ି ହୋଇ ଚାଲିଛୁ ।

—ତଥାପି ମନ ମାନୁ ନାହିଁ ।

—ତୁମର, ମୋର, ଆମ ପରି ଆହୁ କେତେ ଜଣଙ୍କର ଧାରଣା ଟଳମଳ ନୌକା ପରି । ହଠିପଡ଼ି ଭସିଯାଉଛି । ବିଶ୍ୱାସ ହେଉନାହିଁ ପୁଣି, ଅନ୍ଧବିଶ୍ୱାସର ଅନ୍ଧାର ଯେ ଟି ଆସୁଛି, ମନ କହୁଛି, ହୋଇଥିବ ସତ ।

—ହଁ, ସେଇଆ ।

—ଶୁଣିବ, ମୁଁ ଯେତେବେଳେ ଦେଢ଼ବର୍ଷର ପିଲା । ଭୂତପ୍ରେତ, ଡାଆଣୀ, ପିଶାଚୁଣୀ, ଚଣ୍ଡୀଗ୍ରହଣୀ ଓ ଠାକୁରାଣୀମାନଙ୍କ ହାତରୁ ରକ୍ଷାପାଇ ଦେଢ଼ବର୍ଷର ହେଲଣି, କମ୍ କଥା ନୁହେଁ ! ସେଥିପାଇଁ ମୋ ବୋଉ ମନରେ ଗର୍ବ ଓ ଆନନ୍ଦ । ଠାକୁରାଣୀମାନଙ୍କୁ ସେ ଲାଞ୍ଚ ଦେଇଛି । ତଥାପି, ସେମାନଙ୍କର କୋପ ଦୂର ନ ହେଲେ ଗୁଣିଆ ଡକାଇ ଦଣ୍ଡ ଦିଆଇଛି । ଦେଢ଼ ବର୍ଷ ହେଲାଣି ଅଠର ମାସ । ମୋତେ କାଖ କରି ହାତରେ ଆମ ଗାମର ଆଉ କାହା ଘରକୁ ଯାଇଥିଲା । ବାଟରେ କେଉଁ ଡାଆଣୀର ଦୃଷ୍ଟି ପଡ଼ିଲା ଅବା କେଉଁ ପିଶାଚୁଣୀ କି ଠାକୁରାଣୀ ମୋତେ ଗ୍ରାସିଲା ।

ରାତକୁ ମତେ ଜର ହେଲା । ଦୁଇଦିନ କାଳ ଆଖି ଫିଟେଇ ନାହିଁ, ମୁଁ କୁଆଡ଼େ ଖାଲି ଛଟପଟ ହେଉଥାଏ । ଗୋଡ଼ ହାତ କାଠୁଥାଏ । ଏଣେ, ପେଟ ଫାମ୍ପିଥାଏ । ଘରେ ବାପା, ଦାଦା ନ ଥିଲେ । ବୁଢ଼ୀ, ଦରବୁଢ଼ୀ, ଜାଣିଲା ଶୁଣିଲା ପାଞ୍ଚ ସାତ ପିଲାଙ୍କର ଜନନୀମାନେ ମିଳିଲେ । ସମସ୍ତେ ଭବିଚିନ୍ତି ସ୍ଥିର କଲେ, କେଉଁ ପିଶାଚୁଣୀ ମତେ ଗ୍ରାସିଛି । ତାକୁ ନିଷ୍ଟୟ ତଡ଼ିବାକୁ ହେବ । ନୋହିଲେ ସେ ମୋତେ ଖାଇବ ।

ଅତସୀର ଓଠ ଚମକିଲା । ସେ ଅସିତକୁ ଚୁଲାଏ ଚମୁଟିଲା । ଥୁ କରି ଅଳପ ଛେପ ତା ଦେହରେ ପକାଇଲା । ଅନ୍ଧାରରେ ଅଣ୍ଡାଳି ଅସିତର କାନ

ଆସ୍ତେ ମୋଡ଼ିଲା । କହିଲି, ଛି, ଏପରି ଅଶୁଭ କଥା ତୁଣ୍ଡକୁ ଆଣୁଛ ? ବାଗେଇ କରି କଥା କହିପାରୁନ ?

ଅସିତ ପ୍ରେମମୟୀ ପତ୍ନୀର ଶାସନକୁ ବିନା ପ୍ରତିବାଦରେ ମାନିନେଲା । ଆନନ୍ଦରେ ଅଭିଭୂତ ହେଲା । ଭାବିଲା, ଅତସୀ ତାକୁ ଦେଢ଼ବରଷର ପିଲାଟି ପରି ଏଇ ମୁହୂର୍ତ୍ତରେ ଗ୍ରହଣ କରିଛି । ମନରେ ମାତୃତ୍ୱର ମମତା ଓ ଆଶଙ୍କା ତାର ଜାଗିଛି । ସେ ବିହ୍ୱଳ ହୋଇ ଅତସୀର ମୁହଁରେ ଚେଇଁ ରହିଲା । ଉତାଣି ପିଲା ପରି ମୁହଁ ତଳକୁ କରି କଅଣ ଖୋଜିବାକୁ ଲାଗିଲା, ପାଇଲା ପରି !

ଅତସୀ କହିଲା, ଉଁ, କହୁଥିବା କଥା ଅଧା କରନା । ପୁଣି କାନ ମୋଡ଼ିବି ଟି ! କହ, ମୋ ଗୁଣ ।

ଅତସୀ ସ୍ୱାମୀର ପିଠି ଆଉଁସିଲା । ପଚାରିଲା, ଦେଢ଼ ବରଷ ବୟସର ଘଟଣା ତୁମର ମନେ ଅଛି କିପରି ?

ଅସିତ ମୁହଁ ଟେକି ତକିଆ ଉପରେ ମୁଣ୍ଡ ରଖିଲା । ଦୀର୍ଘଶ୍ୱାସ ଛାଡ଼ି କହିଲା, କେତେ ଥର ବାପା ଓ ବୋଉଙ୍କ ମୁହଁରୁ ମୁଁ ମୋ ପିଲାଦିନର କଥା ଶୁଣିଛି । ଆପେ ଆପେ ମନେ ରହିଯାଇଛି । ପର ଜୀବନରେ କେତେ ସ୍ଥଳରେ ଏହିପରି ଘଟଣାମାନ ଦେଖିଛି, ଶୁଣିଛି ।

ମୋ ପିଲାଦିନର କଥା ସତେ ଦେଖିଲା ପରି ମନେ ହେଉଛି, ଅତସୀ ! ଜାଣିଲାରେ ଧରଣୀମାନେ ନିର୍ବୋଧ ଅନ୍ଧବିଶ୍ୱାସୀ, ଅଶିକ୍ଷିତା ହେଲେ ମଧ୍ୟ ସ୍ନେହମୟୀ । ସେମାନଙ୍କୁ ମୁଁ ଏଇ ଦୂର ଦେଶରେ ଅନ୍ଧାର ଘରେ ପ୍ରଣାମ କରୁଛି । ସେମାନେ ମୋର ଟିକି ଦେହରୁ ପିଶାଚୁଣୀକୁ ତଡ଼ିବାକୁ ଚେଷ୍ଟା କଲେ ।

ସେମାନଙ୍କର ସେତେବେଳର ବ୍ୟାକୁଳତା ମୁଁ ବେଶ୍ ଅନୁମାନ କରିପାରୁଛି । ଦେଖିବା, ଶୁଣିବା ଓ ଜାଣିବାର ଶକ୍ତି ମୋର ନ ଥିଲେ ବି ପର ଜୀବନରେ ମୁଁ ଯାହା ଶୁଣିଥିଲି, ସେତକ ମୋ ମନରେ ପ୍ରକୃତ ଘଟଣାର ନିଖୁଣ ଚିତ୍ର ଆଙ୍କି ରଖିଛି । ଧନ୍ୟ ସେ ସୃଷ୍ଟିକର୍ତ୍ତା, ଯିଏ ଏ ପ୍ରକୃତିକୁ ପରିପୂର୍ଣ୍ଣ କରି ଗଢ଼ିଛନ୍ତି ।

ପ୍ରକୃତି ନିୟମ ପ୍ରକାରେ ସବୁ କରିଛି ଓ କରୁଛି । ମୁଣ୍ଡ ଭିତରର ମସ୍ତିଷ୍କକୁ ଏପରି ଭାବରେ ସେ ଗଢ଼ିଛି ଯେ ତୁମେ ଜାଣ ବା ନ ଜାଣ, ତୁମର ଆଖି, କାନ,

ନାକ, ପାଟି ଓ ଦେହ, ଯାହା ସେବେ ଅନୁଭବ କରିଥିଲି, କି ନ କରିଥିଲି ଅଥଚ ଛୁଇଁ ଚାଲିଯାଇଥିଲା, ସବୁ ଯାଇ ମସ୍ତିଷ୍କର କେଉଁ ମ୍ନାୟୁ କୋଣରେ ସାଇତା ହୋଇ ରହେ, ଆଜୀବନ ରହେ ।

—କହ ମ, ସେଇଠୁ କଣ ହେଲା ? ତୁମେ ହିଁକି ପିଲାଟିଏ ହୋଇଥିଲ । କେଉଁ ଅଲକ୍ଷଣୀ ଡାଆଣୀ, କି ପିଶାଚୁଣୀ ଗ୍ରାସିଲା ··

—ହିଁକି ପିଲାଟି ଆଖି ଖୋସି ଦେଇଥିଲା । ଦେହରେ ତାତି ଯେ, ଝାଇଫାଟିବ । ଗୋଟାଗ୍ରୁଏଁ ଥରୁଥାଏ, ଘନ ଘନ ନିଶ୍ୱାସ ଗ୍ରୁଡ଼ୁଥାଏ । ମାଟିଖୋଲି ନ ଥାଏ । ତା ମା ଆକୁଳ ବ୍ୟାକୁଳ ହୋଇ ତାକୁ ଗ୍ରୁଡ଼ରେ କାକ ଧରିଥାଏ । ପାଟିରେ ଥନ ଦେବାକୁ ଚେଷ୍ଟା କରୁଥାଏ । ପିଶାଚୁଣୀ ଗ୍ରାସିଛି, ପିଲା କାହିଁକି ଥନ ଛୁଇଁବ ? ପିଶାଚୁଣୀ ତ ତାର ଜୀବନ ଶୋଷିବ ! ମା ମାଉସୀମାନେ ତାକୁ ଶାସନ କରି ତଡ଼ିବାକୁ ପଣ କଲେ ।

କିଏ ଧାଇଁଯାଇ ଉହ୍ଲେଇରେ ରଡ଼ନିଆଁ ଆଣିଲା । ଦେଖୁ ଦେଖୁ ପିଶାଚୁଣୀକୁ ତଡ଼ିବାର ସବୁ ଉପକରଣ ଯୋଗାଡ଼ କରିଦେଲେ, ଯଥା ନୁଖୁରି ବାଳ, ଗନ୍ଧକ ଗୁଣ୍ଡ, ଝୁଣା, ଗୋଗଳ, ହଳଦ, ଗସ୍ତଳ ଶିଙ୍ଗ ଗୁଣ୍ଡା, ଚୁଣ୍ଡା ଗ୍ରୁଖୁର୍ଣ୍ଣରୁ ଟିକିଏ, ଦଶା ଗ୍ରେଟ ଲୁହାକଣ୍ଟା, ଘୁଷୁରିଘୁଅରୁ ଟିକିଏ । ଏସବୁ ଜଣେ ଆଈବୁଢ଼ୀ ରଡ଼ନିଆଁରେ ପକାଇଦେଲା । ଜଣେ ମାଉସୀ, କି ବଡ଼ମା ଝଣ୍ଟିଆ କୁଲାରେ ନିଆଁକୁ ବିଞ୍ଚିଲେ । ଧୂଆଁ ଉପରକୁ ଉଠିଲା, କି ଫୁରଫୁଟିଆ ଦୁର୍ଗନ୍ଧ, ଅନୁମାନ କରିପାରୁଛି ଅତସୀ ?

—ନାକରେ ବାଜୁଛି ମ !

—ସେ ଗନ୍ଧ ସମ୍ଭାଳି ନ ପାରି ମାଇପେ ଘରୁ ବାହାରି ଦ୍ୱାରବନ୍ଧ ଡେଇଁ ନ କରେ ଲୁଗାଦେଇ ଅନାଇଁ ରହିଲେ । ଖଣ୍ଡିଆ କୁଲାରେ ବିଞ୍ଚି କେଉଁ ମାଉସୀ, ବଡ଼ମା, କି ଖୁଡ଼ୀ ସେ ଧୂଆଁକୁ ହିଁକିପିଲା ଓ ତା ମା ଆଡ଼କୁ ମୋଡ଼ିଦେଲେ । ଅବୁ ଫୁରଫୁଟିଆ ଗନ୍ଧର ଧୂଆଁରେ ଘର ପୂର୍ଣ୍ଣ ହେଲା । ହିଁକି ପିଲାଟି ଉଦମୁଦା ହୋଇ ମା କୋଳରେ ଛଟପଟ ହେବାକୁ ଲାଗିଲା । ମାଆର କଣ୍ଠରୁଦ୍ଧ ହୋଇଆସିଲା ।

ନିଶ୍ୱାସ ନେବା କଠିନ ହେଲା । ମୁଣ୍ଡ ଭ୍ରମିବାକୁ ଲାଗିଲା । ଆଖି ଆଗରେ କେବଳ ଗୁଡ଼ାଏ ଜୁଳୁଜୁଳିଆ ପୋକ ଉଡ଼ିଲା ପରି ଲାଗିଲେ ।

ଧୂଆଁର ସ୍ତମ୍ଭମାନ ଥର ଥର, ହଲି ହଲି, ଆକାର ବଢ଼ାଇ, ଆକାର ବଦଳାଇ, ଘରର ଛାତଆଡ଼େ ଟେକି, ଦରଜା ବାଟେ ପଦାକୁ ବାହାରି ଯାଉଥିଲା । ମାଆର ଦୃଷ୍ଟି ଆଗରେ ସେସବୁ ଧୂଆଁ କଳା ଆକାରବିଶିଷ୍ଟ ଗୁଡ଼ାଏ ପିଶାଚୁଣୀ ପରି ଦେଖା ଯାଉଥାନ୍ତି । ଆଖିରୁ ପାଣି ଝରୁଥାଏ, ମୂର୍ଚ୍ଛାଳିଆ ଲାଗୁଥାଏ । ଚେତନାଶକ୍ତି ହଜିଆସୁଥାଏ ।

ତାଙ୍କର କାନରେ ଘଡ଼ଘଡ଼ିର ଗର୍ଜନ ପରି କାହାର ରଡ଼ି ପଡ଼ିଲା । ସେ ଗର୍ଜନ ଅସ୍ୱାଭାବିକ ହେଲେ ବି ଅତି ପରିଚିତ ।

—କାହାର ସେ ଗର୍ଜନ ?

—ଦେବଦୂତଙ୍କର । ସେ ଆସି ଉପସ୍ଥିତ ହେଲେ, ଗର୍ଜିଉଠିଲେ । ତାଙ୍କୁ ଦେଖି ଓ ତାଙ୍କର ବ୍ୟାକୁଳ ଗର୍ଜନ ଶୁଣି ମାଉସୀ, ବଡ଼ମା, ଖୁଡ଼ୀ ଓ ଯାଉମାନେ ଆଡ଼େଇଗଲେ । ଦେବଦୂତ ଘରେ ପଶିଲେ । ଲୋଟାଏପାଣି ନିଆଁରେ ଢାଳିଲେ । ଉହ୍ନେଇକୁ ଟାଣି ପଦାକୁ ଫିଙ୍ଗିଲେ । ପିଲାଟିକୁ ମା କୋଳରୁ ନିଜ କୋଳକୁ ନେଇ ଦୁଆରକୁ ଆସିଲେ, ତାର ଜୀବନ କଣ୍ଠାଗତ ହୋଇଥିଲା ।

ମାଆର ହାତଧରି ମଧ୍ୟ ପଦାକୁ ଘୋଷାଡ଼ି ଆଣିଲେ । ନିଜେ କଳସୀରୁ ପାଣି ନେଇ ପିଲାକୁ କୋଡ଼ରେ ବସାଇ ଦେବଦୂତ ତାର ମୁଣ୍ଡରେ ଧୀରେ ଧୀରେ ପାଣି ଢାଳିବାକୁ ଲାଗିଲେ । ମାଆ ପ୍ରକୃତସ୍ଥ ହେଲେଣି । ଦେବଦୂତଙ୍କର ନିର୍ଦ୍ଦେଶରେ ମା ଲୋଟା ଲୋଟା କରି ପାଣିଆଣି ପାଖରେ ରଖୁଥାନ୍ତି । ଅନ୍ୟ ସ୍ତ୍ରୀଲୋକମାନେ ଆଡ଼େଇ ହୋଇ, କଡ଼େଇ ହୋଇ, ବଲ ବଲ କରି ଚାହିଁରହିଥାନ୍ତି ।

ପିଲାଟି ଆଖି ଖୋଲିଲା । ବଲ ବଲ କରି ଚାହିଁଲା । ପରିଚିତ ମୁହଁଟି ଦେଖି ବାହାଧରି କାନ୍ଦିବାକୁ ଲାଗିଲା । ଦେବଦୂତ ତାକୁ ମାଆଙ୍କ କୋଡ଼କୁ ଦେଲେ । କହିଲେ, ତୁମେ ବି ମୂର୍ଖ ହେଲ ? ମେଲେରିଆ ଜର ଶହେ ପାଞ୍ଚ କି ଶହେ ଛ' ଡିଗ୍ରୀ । ଡାକ୍ତରଙ୍କୁ ନ ଡକାଇ ଧୂଆଁରେ ଲେଣ୍ଡି ଓ ଗନ୍ଧଲ ଶିଙ୍ଘ ଧୂଆଁ ଦେଇ ପ୍ରେତ

ଡରୁଛ ? ଛୁ ଛୁ, ଟିକିଏ ଡେରି ହୋଇଥିଲେ ଆଉ ତାକୁ ପାଇ ନ ଥାନ୍ତ । ନିଅ, ତାକୁ ଆଗ କ୍ଷୀର ଦିଅ । ମୁଣ୍ଡରେ ପାଣିପଟି ପକାଉଥା । ମୁଁ ଡାକ୍ତରଙ୍କୁ ଡାକିଆଣେ । ଛୁ, ଛୁ !

ବାପାଙ୍କ କୋଳରୁ ପିଲାଟିକୁ ନେଇ ବୋଉ ଛାତିରେ ଲଗାଇଲା । ତଥାପି, ତାର ଦେହରେ ତାତି ଭରିରହିଛି । ପିଲା ଚଁ ଚଁ କରି କ୍ଷୀର ଶୋଷିଲା । ବୋଉ ଲଜ୍ଜିତ ହୋଇ କହିଲା, ମୋର ବୁଦ୍ଧି ହଜିଗଲା । ସମସ୍ତେ କହିଲେ, ପିଶାଚୁଣୀ ଲାଗିଛି, ପିଲାର ଅବସ୍ଥା ଦେଖି ମୁଁ କାବୁଛ ହୋଇ ବିଶ୍ୱାସ କଲି ।

ଅତସୀ, ଦେବଦୂତ ହେଉଛନ୍ତି ତମର ଶଶୁର ! ସେ ଆଖିବୁଲାଇ ଦେଖିଲେ, ଖୁଡ଼ୀ, ବଡ଼ମା, ମାଉସୀମାନେ ଅତି ସ୍ନେହମୟୀ—ଧୀରେ ଧୀରେ ଗୁଳସାନ୍ଧୁଛନ୍ତି । ଯେଉଁ ଆଈବୁଢ଼ୀ ଏସବୁ ଯୋଗାଡ଼ କରାଇଥିଲେ, ସେ କହିଲେ, ଧୂଆଁ ଗନ୍ଧରେ ପିଶାଚୁଣୀ ଡରିହରି ପଳାଇଥିଲା ବୋଲି ପିଲାଟି ବଞ୍ଚିଲା ସିନା ! ଶୀତୁଳା ପାଣି ତ ଚିଲା ହେବାର କଥା, ଯିଏ ଛାଡ଼ିଲେ ହେଲା ।

ଅତସୀ ହସି ହସି ନସ୍ତାନ୍ତ ହେଲା ।

— ଅସିତ କହିଲା, ଏତେ ହସନା ଅତସୀ ! ତୁମର ହସ ସେମାନଙ୍କ କାନରେ ବାଜିବ । ସେମାନେ ସବୁଠାରେ ଅଛନ୍ତି । ସବୁ ଶୁଣନ୍ତି ଓ ଦେଖନ୍ତି ବୋଲି ଲୋକଙ୍କର ଧାରଣା । ବାପାଙ୍କ କଥାରେ ଖୁଡ଼ୀ ଓ ବଡ଼ମାଙ୍କ ବିଶ୍ୱାସ ଜନ୍ମି ଆସୁଥିଲା; କିନ୍ତୁ ଆଈବୁଢ଼ୀଙ୍କ କଥା ଶୁଣି ସେମାନଙ୍କର ବିଶ୍ୱାସ ତୁଟିଲା । ରକ୍ତରେ ଭେଦିଥିବା ବିଶ୍ୱାସର ଜୟ ହେଲା ।

କେହି ଜଣେ କହିଲେ, ହଁ, ଡାକ୍ତର-କବିରାଜଙ୍କ ଔଷଧ ସେ ବାଆକୁ ବତା । ଦେବଦେବୀମାନେ ଦୟା ନ କଲେ ମଣିଷ କ୍ଷଣେ ହେଲେ ବଞ୍ଚିପାରିବ ନାହିଁ । ଏତେ ଡାକ୍ତର କବିରାଜ ରୋଗୀ ଦେଖୁଛନ୍ତି, ବଣା ବଣା ଔଷଧ ଖୋଜୁଛନ୍ତି । ଯମଦୂତଙ୍କୁ ବଞ୍ଚେଇ ପାରୁଛନ୍ତି କି ? ସେଇ ଡାକ୍ତରମାନେ ପୁଣି ମରୁଛନ୍ତି କି ନାହିଁ କହିଲ ? ଯିଏ ଯେତେ ଦିନ ପାଇଁ ଆସିଛି, ସେତିକି ଦିନ ରହିବ । ଦେବଦେବୀ-ମାନଙ୍କ ଉପରେ ବିଶ୍ୱାସ ନ କଲେ, ଅନ୍ୟାୟ, ଅନୀତି, ଅଧର୍ମ କାମ ଆଚରିଲେ ଆୟୁ କ୍ଷୀଣ ହୁଏ, ତମର ହେଉ କି ତମ ପିଲାଝିଲା ଆତ୍ମୀୟ ସ୍ୱଜନଙ୍କର ହେଉ ।

ଦେବଦେବୀ ଅସନ୍ତୁଷ୍ଟ ହେଲେ, ଲକେ ସେମାନେ ଆସନ୍ତି ଅବା ଭୂତପ୍ରେତ ପିଶାଚୁଣୀମାନଙ୍କୁ ପଠାନ୍ତି, ଯିଏ ଆସି, ରୋଗ ବଳାସାଗ ରୂପରେ ଦେହରେ ପଶନ୍ତି ।

ରକ୍ତ ମାଂସ ଶୋଷି ଖାଆନ୍ତି । କଲବଲ କରନ୍ତି । ପ୍ରାଣ ନିଅନ୍ତି, ନୋହିଲେ ଛାଡ଼ି ପଳାନ୍ତି । ଦୂରରେ କି ପାଖରେ ଥାଇ ଜଗିଥାଆନ୍ତି, ବାଗ ଉଣ୍ଡୁଥାଆନ୍ତି । ସୁବିଧା ପାଇଲେ ପୁଣି ଦେହରେ ପଶି ହରବର କରନ୍ତି । ବେକ ମୋଡ଼ି ଦିଅନ୍ତି । ଯାଉ ବରଷେ, ପାଞ୍ଚ ବରଷ, ଦଶ ବରଷ, କୋଡ଼ିଏ ବରଷ —

ଅସିତ ଭଲ ହେଲା । ତାର କଥା ଅତସୀର ମନରେ ଭେଦିଲା । ଯିଏ କହନ୍ତି, ସେ ସତ କହିଲ ପରି ମନେ ହେଉଛି । ଲୋକେ ବସିଲାଠେଇଁ ଝାଳପଡ଼ନ୍ତି । କାଶୁ କାଶୁ ପ୍ରାଣ ଛାଡ଼ିଯାଏ । ଗଛରୁ ପଡ଼, ପାଣିରେ ବୁଡ଼, ନିଆଁରେ ପୋଡ଼ି ନୋହିଲେ ଝାଲୁ ଝାଲୁ ଝୁଣ୍ଟି, କଣ୍ଟା ମାଡ଼ି, ସାପ କାମୁଡ଼ି, କେଉଁ ବଣଜଙ୍ଗଲ ଭିତରେ ବାଘ ଭାଲୁ କାମୁଡ଼ିଲେ ମରୁଛନ୍ତି ।

ସମସ୍ତେ ଏପରି ମରନ୍ତି ନାହିଁ । କେହି କେହି ମରନ୍ତି । ଏସବୁ ଅପମୃତ୍ୟୁ ପାଇଁ, ଭୂତପ୍ରେତ ଓ ଅପଦେବତାମାନେ ଦାୟୀ କିନା ! ତ ସମସ୍ତେ ସବୁବେଳେ ସକ୍ରିୟ ଅଛନ୍ତି, ସୁବିଧା ଖୋଜି ବୁଲୁଛନ୍ତି । ବାଗ ପାଇଲେ ଆସନ୍ତି । ଯେଉଁ ପ୍ରେତନୀ, ପିଶାଚୁଣୀ ଅତ ପିଲାଦିନେ ସ୍ବାଙ୍କୁ ଥରେ ଧରିଥିଲା, ସେ ଯଦି ପାଖେ ପାଖେ ବୁଲୁଥିବ ତ—

ଅତସୀ ଆଉ ଭାବିପାରିଲା ନାହିଁ । ଗୁଡ଼ ଭିତର କମ୍ପି ଉଠିଲା । ଦେବଦେବୀ ଭୂତପ୍ରେତଙ୍କ ଉପରେ ସ୍ବାଙ୍କର ବିଶ୍ବାସ ଥାଉ କି ନ ଥାଉ, ତାଙ୍କ ହାତରେ ଅଷ୍ଟଧାତୁରେ ତିଆରି ତେଇଶ ଶିଆ ବାନ୍ଧିବ । ଭୂତପ୍ରେତ କେହି ତାଙ୍କ ପାଖ ପଶିବେ ନାହିଁ ।

—ଶୁଣ ଅତସୀ, ବୁଢ଼ୀ ଆଈଙ୍କ କଥା । ସେମାନେ କାହିଁକି ବିଶ୍ବାସ କଲେ ତୁମେ ପଚାରିଲ ନାହିଁ ? ସେମାନେ ପୁଅଝିଅଙ୍କର ମା । ସେମାନେ ବି ଦିନେ ଛୋଟ ଛୋଟ ପୁଅଝିଅ ହୋଇଥିଲେ । ମା, ଖୁଡ଼ୀ ଓ ଆଈମାନଙ୍କ ମୁହଁରୁ ଅପଦେବତା ମାନଙ୍କ କରାମତି କଥା ଶୁଣିଥିଲେ । ମସ୍ତିଷ୍କର କେଉଁ କୋଣରେ ସବୁ ସାଇତା ହୋଇ ରହିଛି, ବିଶ୍ବାସ କରିବାକୁ ପ୍ରବର୍ତ୍ତାଉଛି ।

ସେମାନେ ନଜେ କଅଣ କରୁଛନ୍ତି ଭାବଲ ? ଉତାଣି ପିଲାଙ୍କୁ କୋଡ଼ରେ ପକାଇ ପିଠି ଘୁପଡ଼ି ଗୀତ ବୋଲୁଛନ୍ତି, ଧୋଅରେ ବାଇଆ ଧୋ । ଅଝଟିଆ ପିଲାକୁ ଶୁଆଇ ପକାଇବାକୁ ଆଖି ଦେଖାଇ ବଡ଼ ପାଟି କରି ଅଉ ଟିକଏ ଜୋରରେ ପିଠି ଥାପଡ଼ କହୁଉଠିଛନ୍ତି, ହେଇ, କକବାୟା ଆଇଲା, ଶୋଇପଡ଼ । ଡାକ ଶୁଭୁଛନ୍ତି, ଆ ଆରେ କକବାୟା—

—ପିଲାକୁ ଶୁଆଇ ନ ଦେଲେ ମା-ମାନେ ଘର କାମ କରିବେ କପରି ? ତୁମେ ମରଦମାନେ ସେ କଥା ବୁଝିବ ନାହିଁ । ପଦା କାମ ଶେଷ କରି ଘରକୁ ଆସି ଡାକ ଶୁଣିବ, ଭାତ ବାଢ଼ । ମନ୍ତ୍ର ଫୁଙ୍କି ଫୁଙ୍କ ଫୁଟାଇଲେ ତା ମନକୁ ସୁହଲ ଭାତ ହେବ ନାହିଁ, ପରିବା ତରକାରି ହେବ ନାହିଁ ।

—ସତ କହୁଲ ଯେ, କିନ୍ତୁ ପିଲା ମନରେ ଗୋଟାଏ ଭଳି ଭୟଙ୍କାରିଆ କକବାୟାର ଧାରଣା ରହିଲା । ତାର ତରଳ ମନ କଠିଣ ହେଲା ବେଳକୁ ମୁଣ୍ଡ ଭିତରେ କକବାଇଆ, ଅନ୍ଧାର ଗୁଡ଼ୁଗୁଡ଼ୁ ଓ ଏପରି କେତେ ଅଜଣା ଭୟର ଧାରଣା ବସା ବାନ୍ଧି ରହିଲା । ଯେତିକି ସେ ବଡ଼ ହେଲା, ସେତିକି ବେଶି ସେ ଭୂତପ୍ରେତଙ୍କର କଥା ଶୁଣିଲା । ମନରେ ରୂପ ଟାଣିଲା, ସେ ଯିବ କୁଆଡ଼େ ! ଅଜଣା ଅପଦେବତା-ମାନଙ୍କର ସେ ହେଲା କଣା ଶିକାର । ଶୁଣିବ ଆଉ ଗୋଟିଏ ସତ ଘଟଣା, ଭୂତ କି କାଣ୍ଡ ଭିଆଇଥିଲା, ପୁଣି ସେ ଉତ୍ପାତିଆ ଭୂତଟି କିଏ ?

—କହ, ମୁଁ ଡରିବ ନାହିଁ ।

—ଶୁଣ ଅତସୀ···

ଦୂର ମୋଫସଲରେ ମୋର ଜଣେ ବନ୍ଧୁ ମାଇନର ସ୍କୁଲ ହଷ୍ଟେଲରେ ଥାଇ ପାଠ ପଢ଼ୁଥିଲେ । ତାଙ୍କର ବୟସ ସେତେବେଳେ ବାଆର ତେର ହେବ । ବୃତ୍ତିପରୀକ୍ଷା ପାଇଁ ସେ ଓ ତାଙ୍କର ସହପାଠୀ କେତେଜଣ ରାତି ଅନିଦ୍ରା ରହି ପାଠ ପଢ଼ନ୍ତି । ସ୍କୁଲ ଓ ହଷ୍ଟେଲ ଗ୍ରାମ ପାଖରୁ ପ୍ରାୟ ଅଧ ମାଇଲ, ଦୂରରେ ବଡ଼ ନାଳ କୂଳରେ ।

ଜଙ୍ଗଲିଆ ସ୍ଥାନ । ସ୍କୁଲ ହତାକୁ ଲଗି ଆଉ କାହାର ଅମ୍ବତୋଟା । ଟିକିଏ ଦୂରରେ ମଶାଣି । ସେଠାରେ ଭୂତପ୍ରେତ ଥିବାର କଥା, କିନ୍ତୁ ରାତି ଅଧରେ ସେମାନେ ଶବ୍ଦ କରନ୍ତି ସିନା, ସ୍କୁଲ କି ହଷ୍ଟେଲ ଆଡ଼େ ଆସନ୍ତି ନାହିଁ । ଆମ୍ବତୋଟାରେ ଯେଉଁ ମଶାଣିଚଣ୍ଡୀ ରହନ୍ତି ବୋଲି ଲୋକେ କହନ୍ତି, ସେ ବରାବର ରାତି ଅଧରେ ସେଠାରୁ ବାହାରି ସ୍କୁଲଆଡ଼େ ବୁଲାଚଲା କରେ । ହଷ୍ଟେଲର ସ୍କୁଲଘର ଭିତରେଇ ନାଳକୁ ଯାଏ । ମାଛ ଧରି ଖାଏ, ଧୀରେ ଧୀରେ ତାଳି ମାରେ । କାଚ ଝମ୍ଝମ୍ କରେ, ଅନ୍ଧାର ରାତିରେ ସେ ବେଶି ଯା’ଆସ କରେ ।

—ପିଲାଗୁଡ଼ାକ ଡରନ୍ତି ନାହିଁ ?

—ନିଶ୍ଚୟ ଡରନ୍ତି । ତାଳି ମାଡ଼, କାଚ ଝମ୍ଝମ୍ ଶୁଣିଲେ ଧୀରେ ଧୀରେ ଆଲୁଅ ଲିଭାଇ ଚୁପ୍‌ଚାପ୍ ଶୋଇପଡ଼ନ୍ତି । ମୋ ବନ୍ଧୁ ଶ୍ରୀଯୁକ୍ତ ଜେନା ସେ ନିର୍ଭୀକ ! ତଥାପି, ତାଙ୍କ ଛାତି ଧଡ଼ଧଡ଼ ହୁଏ । ଏଣେ ବୃତ୍ତି ପରୀକ୍ଷା ପାଖେଇ ଆସୁଛି । ବୃତ୍ତି ନ ପାଇଲେ ଗରିବ ପିଲା ସେ, ଆଉ ଅଧିକ ପଢ଼ିପାରିବେ ନାହିଁ । ସ୍କୁଲର ପ୍ରଧାନ ଶିକ୍ଷକ ଆଶା କରିଛନ୍ତି ଏଇ ପିଲାଟି ନିଶ୍ଚୟ ବୃତ୍ତି ପାଇବ; ସ୍କୁଲର ନାମ ରଖିବ । କିନ୍ତୁ ଦରବୁଢ଼ା ହେଲେ ମଧ୍ୟ ତାଙ୍କର ଭୂତପ୍ରେତ, ଡାହାଣୀ-ଚିରୁଗୁଣି ଓ ପିଶାଚୁଣୀମାନଙ୍କୁ ଡର । ସେମାନେ ଅଛନ୍ତି ବୋଲି ଅନେକ ବଡ଼ ବଡ଼ ଲୋକ ଲେଖିଯାଇଛନ୍ତି ତ !

ପ୍ରଧାନ ଶିକ୍ଷକ ନୈଷ୍ଠିକ ବ୍ରାହ୍ମଣ । ପୂଜା କରନ୍ତି, ଗାୟତ୍ରୀ ପଢ଼ନ୍ତି । ଅଶରୀରୀମାନଙ୍କ ସମ୍ବନ୍ଧରେ ଅନେକ ବହି ପଢ଼ିଛନ୍ତି । ସେ ନିଜେ, ତାଙ୍କର ସ୍ତ୍ରୀ ଓ ପିଲାମାନେ ବାହୁରେ, ବେକରେ ଅଣ୍ଟାରେ ତେଉଁରିଆମାଳି ପିନ୍ଧନ୍ତି । ଭୂତମାନଙ୍କ କାରବାର କଥା ସେ ପିଲାମାନଙ୍କ ଆଗରେ ଗପନ୍ତି ।

ସ୍କୁଲର ଦ୍ୱିତୀୟ ଶିକ୍ଷକ ଯୋକା । ତାଙ୍କର ବଳିଷ୍ଠ ଦେହ । ସେ ଢଙ୍ଗମଙ୍ଗ କସରତ କରନ୍ତି । ଅଶରୀରୀମାନଙ୍କ ଉପରେ ତାଙ୍କର ମଧ୍ୟ ବିଶ୍ୱାସ, କିନ୍ତୁ ସେ ତେଉଁରିଆ ପିନ୍ଧନ୍ତି ନାହିଁ ।

ଜେନାବାବୁଙ୍କ ହଷ୍ଟେଲ ଧାଡ଼ିର ଶେଷ ଘରେ ସେ ଏକୁଟିଆ ରହନ୍ତି । ପିଲାମାନଙ୍କର ସେ ମୁରବୀ । ସେ ଭଲ ଶିକ୍ଷକ । ପିଲାମାନଙ୍କୁ କହନ୍ତି, ମୁଁ ଥିବାଯାଏ

ଭୂତପ୍ରେତ କେହି ତୁମ ପାଖେ ପଶିପାରିବେ ନାହିଁ । ମୁଁ ମନ୍ତ୍ର ଜାଣେ ତୁମେ ସବୁ ରାତିରେ ବେଶି ବେଳଯାଏ ପଢ଼, ମୁଁ ଜଗିଛି । ରାତି ଝମ୍‌ଝମ୍ କରି ପିଶାଚୁଣୀ ଆସିଲେ ଆସୁ, ମୁଁ ସେକଥା ବୁଝିବି ।

ଦ୍ୱିତୀୟ ଶିକ୍ଷକ ଅଦ୍ଭୁଆଡ଼ା ଲୋକ । କାହାକୁ ପରବାଏ କରନ୍ତି ନାହିଁ । ରାତିରେ ଟର୍ଚ୍ଚ ଆଲୁଅ ହାତରେ ଧରି, ଚଟାଏ ଲମ୍ବ ଠେଙ୍ଗା ଧରି ସେ ବାହାରନ୍ତି । ନାଳ ବନ୍ଧେ ବନ୍ଧେ ଗ୍ରାମକୁ ଯାଆନ୍ତି । ତୋଟାରେ ବୁଲନ୍ତି, ମଶାଣିରେ ବୁଲନ୍ତି । କେତେ ରାତିରେ ଫେରି ଦେଖନ୍ତି —ପିଲାଏ ଶୋଇଲେଣି କି ପଢ଼ୁଛନ୍ତି । କେନାବାବୁ ରାତି ଅଧଯାଏ ପଢ଼ନ୍ତି, ଦ୍ୱିତୀୟ ଶିକ୍ଷକ ଡାକିଲେ ସେ କବାଟ ଖୋଲନ୍ତି ।

ପଚାରନ୍ତି, କି ରେ, ଏତେ ରାତିଯାଏ ପଢ଼ୁଛୁ ? ଦେହ ଖରାପ ହେବ । ଶୋଇପଡ଼ । ଆଜି ପିଶାଚୁଣୀ ରାତି ଝମ୍‌ଝମ୍ କରି ନାହିଁ ତ ? ଢେଲା ପକାଇ ନାହିଁ ତ ?

—ନାହିଁ ଆଜ୍ଞା ! ଆମକୁ କେବଳ ଛମ୍ ଛମ୍ ଲାଗୁଥିଲା, ଡର ମାଡ଼ୁଥିଲା । ବଡ଼ ପାଟି କରି ଇଷ୍ଟନାମ ଘୋଷିଲୁଁ, ଆଉ ଡର ମାଡ଼ିଲା ନାହିଁ ।

—ହେଲା, ଏବେ ଶୋଇପଡ଼ ।

—କୁଆଡ଼େ ବୁଲୁଥିଲେ, ଆଜ୍ଞା ?

ଦ୍ୱିତୀୟ ଶିକ୍ଷକ ଉତ୍ତର ଦେଲେ, ମଶାଣି, ତୋଟା, ନାଳ ବନ୍ଧରେ ଟହଲୁଥିଲି । ଅନ୍ଧାରି ରାତିକୁ ମୋର ଡର ନାହିଁ । ମୋତେ ଦେଖିଲେ ଭୟରେ ସେମାନେ ଦୂରେଇ ଯାଆନ୍ତି । ମୁଁ ଦେହ ବନ୍ଧେଇଛି, ମନ୍ତ୍ର ଜାଣିଛି । ସେମାନେ ମୋ ସଙ୍ଗେ କଥାଭାଷା ହୁଅନ୍ତି, ତୁମର ଡର ନାହିଁ ।

କେନା ପଚାରିଲେ, ଆମକୁ ସେଇ ମନ୍ତ୍ର ଶିଖାଇଦେବେ ନାହିଁ ଆଜ୍ଞା ? ପିଶାଚୁଣୀ ଯେବେ ରାତି ଝମ୍‌ଝମ୍ କରି ଆସିବ, ଆମେ ସବୁ ଯାଇ ତାକୁ ଦେଖିବୁଁ । କଥାଭାଷା ହେବୁ, କାହିଁକି ସେ ଆସୁଛି ପଚାରିବୁଁ ।

—ଆରେ, ସେ ଦୁଃସାହସ ତୁମେ କର ନାହିଁ । ମନ୍ତ୍ରର କେଉଁଠି ଟିକଏ ଭୁଲ ହୋଇଗଲେ ସେମାନେ ଶାପିଦେବେ । ଗୋବୁହାଡ଼ରେ ପିଟିବେ । ଗୁଡ ଦମ୍ଭ ନ କଲେ ଭେଟଣା ହେବ । ଦୁଇ ମୁହଁ ଛୁଟିବ । ଗୁଣିଆ ଝାଡ଼ିଲେ ବ ପ୍ରାଣ ବଞ୍ଚାଇପାରବ ନାହିଁ । ତୁମେ କବାଟଝରକା ବନ୍ଦକର ଆଲୁଅ ଜାଳି ପଢ଼ । ପଦାରେ କଏ ଆଉଛୁ ଯାଉଛୁ ସେଥିକି ମନଦଅ ନାହିଁ । ବେଶି ଡର ମାଡ଼ିଲେ ଦୁର୍ଗା ନାମ ଜପିବ, ଆଲୁଅ ଲିଭାଇ ଶୋଇପଡ଼ିବ ।

ଜେନାବାବୁ ଓ ତାଙ୍କର ସହପାଠୀମାନେ ଗୁରୁଙ୍କ ଉପଦେଶ ପାଳନ କଲେ । ରାତ ଝମ୍‌ଝମ୍ କେବେ କେବେ ହୁଏ । କେଉଁ କବାଟ, ଝରକାରେ କଏ କେଟବ ଠକ୍ ଠକ୍ ହେ କରବାର ଆଭାସ ମିଳେ । କଏ କାହାକୁ ଢେଲା ଫୋପାଡ଼େ । ଅତ ଦୂରରୁ କଏ କାହା ସଙ୍ଗେ ଫିସ୍‌ଫିସ୍ କଥା କହବାର ଶୁଭେ । ଏସବୁ ଘଟେ ଘଡ ଅଧରେ । ମୋଫସଲରେ ଘଡ ଅଧାମାନେ ନଅଟା, ଦଶଟା । ସବୁ ଘରେ ଶୁଭେ ନାହିଁ । କେବେ ଶୁଭେ । ଏକା ମୋ ବନ୍ଧୁ ଜେନା ଶୁଣନ୍ତି ନାହିଁ, ସବୁ ତାଙ୍କର ସହପାଠୀମାନେ କଏ କେବେ କଅଣ ଶୁଣନ୍ତି, ଚର୍ଚ୍ଚା କରନ୍ତି । ଦୁର୍ଗାନାମ ସ୍ମରଣ କରନ୍ତି, ଭୟଭ୍ରାନ୍ତି ଦୂର ହୁଏ, ନିଶ୍ଚିନ୍ତ ହୋଇ ପଢ଼ନ୍ତି ।

ଅଚସୀ ପଗ୍ଭରଲି, ଜେନାବାବୁ କରନ୍ତି କଅଣ ?

ଅସିତ କହିଲି, ସେ ଡ଼େପୋଟି କଲେକ୍ଟର । ଏବେ ନବରଙ୍ଗପୁରର ଏସ୍. ଡି. ଓ., ଭଲ ଲୋକ, ଏମ୍ ଏ. ପାସ୍ ।

—ଏବେ ବୁଝିଲ ? ଏତେବଡ଼ ଅଫିସର, କେତେ ପାଠ ପଢ଼ିଛନ୍ତି । ଅଶରୀରୀ ଆତ୍ମା ଓ ଭୂତପ୍ରେତମାନଙ୍କ ଉପରେ ତାଙ୍କର ବିଶ୍ୱାସ ରହିଛି । ସେ ନିଶ୍ଚୟ ହାତରେ ତେଉଁରିଆ ବାନ୍ଧିଥିବେ । ତୁମେ ବୃଣଅଡ଼େ ବଣଜଙ୍ଗଲରେ ବୁଲୁଛ, ମୁଁ ଦୂରରେ ଥାଇ ମନ ଦକଦକରେ ସମସ୍ତ କଟାଉଛି । ମୋ ପାଖରେ ମା-ବିମଳାଙ୍କର ପାଦୁକ ଅଛି । କାକଟପୁର ମଙ୍ଗଳା, ସମ୍ବଲପୁର ସମଲେଶ୍ୱରୀ, ସୋନପୁରର ସୁରେଶ୍ୱରୀ ଓ ଜୟପୁରର ଜଗତ୍‌ଜନନୀଙ୍କର ପାଦୁକ ଅଛି । ସବୁ ମୁଁ ମୋର ସାଙ୍ଗମାନଙ୍କ ପାଖରୁ ଯୋଗାଡ଼ କରି ସାଇତ ରଖିଛି । ତୁମର ଯାହାଙ୍କଠାରେ ଅଧିକ ବିଶ୍ୱାସ ତାଙ୍କର ପାଦୁକ ଭରି ଗୋଟିଏ ଅଷ୍ଟଧାତୁରେ ତିଆରି ତେଉଁରିଆ ବାହୁରେ ପିନ୍ଧ ।

ଅସିତ କହିଲା, କେନା ମାତ୍ର ଯେତେବେଳେ ପିଶାଚୁଣୀର କାଚ ଝୁମ୍ ଝୁମ୍ ଶୁଣୁଥିଲେ, ସେ ଏମ୍ ଏ. ପାସ୍ କରି ନ ଥିଲେ । ଉପୋଷି ହୋଇ ନ ଥିଲେ, ସେ ବାର ବର୍ଷର ପିଲା । ଧୂଓ ବାଇଆ, କକବାଇଆ, ଅନ୍ଧାର ଗୁଡ଼ୁଗୁଡ଼ୁ, ଝଡ଼ାଫୁଙ୍କା, ମନ୍ତ୍ରପୂତ ଲୁଣ, କାଟ ପାଣି, ଗାଁ-ଡାଆଣୀ ଓ ଠାକୁରାଣୀ ତାଙ୍କର ବୋଦା'ଗଳାକଟା କାଳସୀ ସଙ୍ଗେ ପିଲାଦିନରୁ ପରିଚୟ ହୋଇଥିଲା । ଡାଆଣୀ ଚିରଗୁଣୀ ଭୂତପ୍ରେତ, ପିଶାଚୁଣୀମାନଙ୍କର ପ୍ରତାପ ଓ କରଣୀ ସମ୍ବନ୍ଧରେ ସେ ଅନେକ ଭୟଙ୍କର ଗପ ଶୁଣିଥିଲେ । ଆଖିରେ କିଛି ଦେଖି ନ ଥିଲେ । ବାର ବର୍ଷ ବୟସରେ ପିଶାଚୁଣୀର କାଚ ଝୁମ୍‌ଝୁମ୍ ନିଜେ କାନରେ ଶୁଣିଲେ ।

— ଶୁଣିଲେ ତ !

—କେବଳ ସେତିକି ନୁହେଁ । ଦିନେ ଗ୍ରାମ ଅଧରେ ନାଲିବାଳି କଲଡ଼ା ଜରଞ୍ଜିଗଛ ମୂଳରେ ପିଶାଚୁଣୀ ନୁହେଁ, ଦୁଇଟା ଅର୍ଦ୍ଧାଡିଆ ଭୂତ, ଦେହ କଳା ମିଚମିଚ, ହାତରେ ଗୋରୁହାଡ଼ ଧରି ଦ୍ୱିତୀୟ ଶିକ୍ଷକଙ୍କୁ ଦଉଡ଼ାଇଲା କରି ଛେଚିଲେ । ଦେହରୁ ବେଶି ରକ୍ତ ବାହାରି ନାହିଁ, କିନ୍ତୁ ପିଚ ପିଚ କରି ଛେଚିଛନ୍ତି । ମୁଣ୍ଡରେ ମାଡ଼ ବସିଚ, ମୁଣ୍ଡ ଫାଟିନାହିଁ । ସାତଦିନ ଖଟିଆ ବିଛଣାରୁ ସେ ଉଠିଲେ ନାହିଁ ।

—କାହିଁକି ଏପରି ହେଲା ? ସେ ପରା ମନ୍ତ୍ର ଜାଣିଥିଲେ ?

—ସେ ଲୁଆଡ଼େ କହିଲେ ଯେ ମନ୍ତ୍ର ଉଚ୍ଚାରଣ କଲାବେଳେ ପଦେ ଭୁଲ ହୋଇଗଲା । ପ୍ରଧାନଶିକ୍ଷକ ଖୁସିହୋଇ କହିଲେ, ଆପଣ ମୋ କଥା ମାନିଲେ ନାହିଁ, ଢେଉଁରିଆ ପିନ୍ଧିଲେ ନାହିଁ । ତେଣୁ ପରାଭବ ପାଇଲେ । ସଂସ୍କୃତ ହେଲା ଦେବଭାଷା । ମନ୍ତ୍ରସବୁ ବେଦରୁ ଉତ୍ପନ୍ନ, ବେଦ କ ମଣିଷକୃତ ?

ଶୁଣିଥିବେ ତ, ଅତି ନିଷ୍ଠାପର ହୋଇ ଚଣ୍ଡୀପାଠ କଲେ ବି ଅନ୍ୟମନସ୍କତା ହେତୁ ଉଚ୍ଚାରଣ ଭୁଲ କରି, ପଦ ଭୁଲ କରି, ଅନେକ ଲୋକ ପାଗଳ ହୋଇ ଯାଇଛନ୍ତି । ଆଉ ସେ ଦୁର୍ବୁଦ୍ଧି ଆପଣ କରିବେ ନାହିଁ । ଗ୍ରାମ ବାହାରି ଆପଣ ଏଣେ ତେଣେ ଯାଉଛନ୍ତି । ଚୋର ଓ ଠେଙ୍ଗା ଜନ୍ତୁଜାନୁଆରଙ୍କଠାରୁ ପ୍ରାଣ ବଞ୍ଚାଇବ, କିନ୍ତୁ ଭୂତପ୍ରେତ, ସେମାନଙ୍କର ଛାୟା ଶରୀର । ସେମାନେ ଦେହରୁ

ମାନବେ ନାହିଁ । ତେଉଁରଆର ମୂଲ୍ୟ ଅଧିକ ନୁହେଁ । ଯେ ଦେହକୁ ଔଜନ ହୁଏ ନାହିଁ, ଦେହରେ ଥିଲେ କେହି ଅପଦେବତା ପାଖରେ ପଶିବେ ନାହିଁ ।

ଅତସୀ କହିଲ, ମୁଁ ସେଇ କଥା ତୁମକୁ ବାରମ୍ବାର କହୁଛି । ପୂର୍ବପୁରୁଷ ମାନେ ନାଇଥିଲେ । ସେମାନଙ୍କ ଉପଦେଶ ମାନି ଚଲିଲେ କ୍ଷତି ନାହିଁ । ବାପା ମୋଟେ ମାନୁ ନ ଥିଲେ । ସେ ବି ସ୍କୁଲଆଡ଼େ ଯିବା ଲୋକ ! ବେଳେବେଳେ ରାତି ଅଧରେ ଫେରନ୍ତି ।

ବୋଉ କନ୍ଦାକଟା କଲା । ତ'ପରେ ଖାଇଲା ନାହିଁ । ସେଇଠୁ ବାପା ଗୋଟା ତେଉଁରଆ ମାଳ ବାଁ ହାତ କହୁଣି ଉପରେ ପିନ୍ଧିଲେ । ସେତେ ରାତିରେ ବାପା ଆସନ୍ତି, ଅଉ କି ଡର ! ଏକା ବୋଉର ନୁହେଁ, ଆମ ସମସ୍ତଙ୍କର ମନର ଡର ଦୂର ହେଲା । ମୋ ସୁନାଟି ସରି ! ତୁମେ ଗୋଟିଏ ହେଲେ ତେଉଁରଆ ପିନ୍ଧିବାକୁ ରାଜି ହୁଅ, ତୁମକୁ ମୋ ରାଣ !

ଅସିତ କହିଲ, ଏବେ ବୁଝିଲି । ତୁମ ବୋଉଙ୍କର ଡର ଓ ତୁମମାନଙ୍କ ମନର ଡର ଦୂର କରିବାକୁ ମୋର ଶର୍ମିଳ ଶଶୁର ଗୋଟିଏ ତେଉଁରଆ ପିନ୍ଧିଲେ । ତାଙ୍କର କାମଟା ତୁମ ମନରୁ ଡର ଦୂରକରିବା ପାଇଁ ଗୋଟିଏ ତେଉଁରଆ ପିନ୍ଧିବାକୁ ରାଜି ହୋଇପାରନ୍ତି ।

ଆମ ହାକିମ ମହାପାତ୍ରଙ୍କ ହାତରେ ଅଷ୍ଟଧାତୁରେ ଗଢ଼ା ଶ୍ରେଷ୍ଠ ବଡ଼ ହୋଇ ପୁଷ୍ପରାଏ ତେଉଁରଆ । ପ୍ରତ୍ୟେକର ଗୁଣ ଭିନ୍ନ, ଉଦ୍ଦେଶ୍ୟ ଭିନ୍ନ । ଗୋଟିକର ଉଦ୍ଦେଶ୍ୟ ହେଉଛି ଉପର ହାକିମମାନଙ୍କୁ ବଶ କରି ପ୍ରମୋସନ୍ ଲଭ । ତ୍ରୟମ୍ପଟି ଲଟାରୀ ପ୍ରଭୃତିରେ ଧନଲାଭ । ତୃତୀୟଟିର ଗୁଣ ହେଉଛି ପୁତ୍ରଲାଭ । ମନେ ରଖିଥା, ତାଙ୍କର ଛଅଟି ପୁଅ ଓ ଦଶଟି କନ୍ୟା ହୋଇସାରିଲେଣି । ଚତୁର୍ଥଟି ଭୂତପ୍ରେତ ତାଡ଼ନ ।

ସେହିପରି ଆମ ସ୍କୁଲ ଇନସ୍ପେକ୍ଟରଙ୍କ ବାଁ ହାତରେ ବିଭିନ୍ନ ରଙ୍ଗର ପଥରବସା ସୁନାମୁଦି ଗୋଟା । ଡାହାଣ ହାତ ମଝି ଆଙ୍ଗୁଠିରେ ଆଉ ଦଶଟି ମୁଦି । ତାଙ୍କର ପାଞ୍ଚଟି ମନକାମନା, କାହାକୁ କହନ୍ତି ନାହିଁ । ତାଙ୍କ ହସ ହସ

ମୂର୍ତ୍ତିରୁ ଅନୁମାନ କରିହେବ ଯେ ମନକାମନା ଧୀରେ ଧୀରେ ଫଳବନ୍ତ ହେଉଛି ।

—କାହିଁକି ନ ହେବ ? ବିଶ୍ୱାସ ଥିଲେ ସବୁ ହେବ, ତୁମେ ବିଶ୍ୱାସ କର । ମହାପାତ୍ରବାବୁଙ୍କ ପରି ଦେଉଁଶିଆମାନେ ପିଷ୍ଟି ଧନବାବୁଙ୍କ ପରି ଅଙ୍ଗୁଠିରେ ସୁନାମୁଦି ନାଥ । ଆମେ ସବୁ ମାଇପେ କପାଳ ଗୋଡ଼ ଆଙ୍ଗୁଠିରେ ଝୁଣ୍ଟିଆ ନାଇଛୁ !

—ଯେମିତି ଗୋ ଅତସୀ, ଜେନାବାବୁଙ୍କ ସ୍କୁଲର ଦ୍ୱିତୀୟ ଶିକ୍ଷକ ଦୁଇଶ ଟଙ୍କା ଖରଚ କରି ଦେଉଁଶିଆ ନାଇଲେ । କିନ୍ତୁ, ବେଶୀ ଦିନ ସେ ସ୍କୁଲରେ ରହିପାରିଲେ ନାହିଁ । ଯେଉଁ ରାତିରେ ନାଲକୃଳେ କରଞ୍ଜଗଛ ତଳେ ତାଙ୍କୁ ବୋରୁହାଡ଼ରେ ଭୂତ ପିଟିଲା, ସେହି ରାତିରେ ବୁଆଜେ ନାଲକୂଳର ଅନ୍ଧ କୋଠରି କେଉଁ କଲକତିଆ ପାଣିକଳ ମିସ୍ତ୍ରୀଙ୍କ ବିରହିଣୀ ଘରଣୀଙ୍କୁ ଭୂତ, କି ପ୍ରେତଣୀ ଗୋବୁହାଡ଼ରେ ଛେଚିଲା । ସେଥିପାଇଁ ଦ୍ୱିତୀୟ ଶିକ୍ଷକଙ୍କୁ ଗ୍ରାମ ଲୋକେ କାହିଁକି ଟାହିଟାପରି କଲେ ।

ପିଲା ବୟସରେ ଜେନାବାବୁ ତାହା ବୁଝିପାରି ନ ଥିଲେ । ସେ ଦେଖିଲେ ଯେ ଦ୍ୱିତୀୟ ଶିକ୍ଷକ କେତେ ଦିନ ଛୁଟିନେଇ ଘରକୁ ଗଲେ, ଆଉ ଫେରିଲେ ନାହିଁ । ଗୋବୁହାଡ଼ରେ ସେ ମାଡ଼ ଖାଇବା ରାତିରୁ ମଶାଣିଚଣ୍ଡୀ କୁଅଡ଼େ ପଳାଇଲା କି କଣ ପିଲମାନେ ଆଉ କାଚ ଝମ୍‌ଝମ୍ ଶୁଣିଲେ ନାହିଁ ।

ଅତସୀ ଘଟଣାଟିର ମର୍ମ ବୁଝିବାକୁ ତନ୍ମହୋଇ ଚିନ୍ତା କଲା । କଅଣ ସେ ବୁଝିଲା ତାକୁ ଜଣା; କିନ୍ତୁ କ୍ଷଣକ ପରେ ହସିଉଠିଲା । କହିଲା, ଏପରି ଗୋଟାଏ ଘଟଣା ସେଇ ଚକ୍ରାନ୍ତପରି ଘଟାଇ ତାର ପରିଭବ ପାଇଲା ବୋଲି ଭୂତପ୍ରେତ ନାହାନ୍ତି, ଏହା ଭାବିବା କଣ ଉଚିତ ?

ଗମ୍ଭୀର ହୋଇ ଅସିତ କହିଲା, ମୋଟେ ଉଚିତ ନୁହେଁ । ଯେତେ ଦିନଯାଏ ମଣିଷ ମନରେ ଭୟ ଭରିଥିବ, ସେତେ ଦିନଯାଏ ଅଶରୀରୀମାନଙ୍କର ଅସ୍ତିତ୍ୱ ରହିବ । ମଣିଷ ଯେତେ ସାବଧାନ ହୋଇ ଚଳୁଛି ବିଶ୍ୱରେ ମଧ୍ୟ ଅସ୍ତୁନକ ଆପଦ ବିପଦ ଆସିବ । ଧରି ନେଇ ବଇରାଗ, ଯେତେ ସାବଧାନ ହେଲେ ବି

ସେଥିରୁ କେହି ନିସ୍ତାର ଲଭେ ନାହିଁ । କେତେବେଳେ କେଉଁ ରୋଗ ଆସି ଆକ୍ରମଣ କରେ । ସେଥିପାଇଁ ଲୋକ ନିଜେ ଯେତେ ଦାୟୀ, ଘର, ଗ୍ରାମ ଓ ସମାଜର ଅନ୍ୟମାନେ ତତୋଽଧିକ ଦାୟୀ । ସ୍ଥାନ, ଋତୁ, ମଣିଷର ଦେହର ସାଧାରଣ ଅବସ୍ଥା ଏବଂ ବୟସ ବି କେତେକ ପରିମାଣରେ ଦାୟୀ ।

ମରଣ ଓ ପ୍ରିୟଜନମାନଙ୍କ ଉପରେ ଆପଦ ବିପଦ ମଧ୍ୟ ଭୟର କାରଣ । ଆଜି ଯେ ରାଜେନ୍ଦ୍ରାସନେ, କାଲି ସେ ଫକୀର । ଆର୍ଥିକ ଅବସ୍ଥା ମନରେ ଅନିଶ୍ଚିତତା ଆଣେ । ଭୟକୁ ମନ ଭିତରେ ବଢ଼ାଇ ଭୟଙ୍କର ରୂପ ଦିଏ । ଲୋକେ କଷ୍ଟସାଧ୍ୟ ଧନ ସଞ୍ଚି କିମ୍ବା ନାନା ଉପାୟରେ ଅନ୍ୟମାନଙ୍କୁ ଠକି, ଚୋରି ଡକାୟତି କରି, ଧନୀ ହେଉଛନ୍ତି । ଧନୀମାନେ ଫକୀର ହେଉଛନ୍ତି । ଧନୀ ଫକୀର ହେବାରେ ଓ ନିର୍ଦ୍ଧନ ଧନୀ ହେବାରେ ନିଜର ଉଦ୍ୟମ ଯେତେ ଦାୟୀ, ଅନ୍ୟମାନଙ୍କର ନିଃସହାୟତା ଓ ସହନଶୀଳତା ତହୁଁ ଅଧିକ ଦାୟୀ । ସୁଖ, ସୁଯୋଗର ଆଶା, ସେଥିପାଇଁ ଚେଷ୍ଟା ଓ ଉଦ୍‌ବେଗ୍ନତା ମନରେ ଭୟ ଆଣେ । ସେଇ ଭୟରୁ ରକ୍ଷା ପାଇବା ପାଇଁ କେତେ ନିର୍ବୋଧ, କାରଣ ଜାଣି ତାର ପ୍ରତିକାର କରିବାକୁ ଚେଷ୍ଟା ନ କରି, କେଉଁ ଅଦେଖା ଅଜଣା ଶକ୍ତି, ଦେବଦେବୀ, ଭୂତପ୍ରେତ ଇତ୍ୟାଦିଙ୍କୁ ସେବା କରନ୍ତି, ସେମାନଙ୍କର ଶରଣ ପଶନ୍ତି ।

ଆଶା ଓ ଭୟ ମଣିଷ ମନରେ ବସା ବାନ୍ଧିଥିବାଯାଏ, ସେଥିପାଇଁ ଆପଦ ବିପଦ ଆସୁଥିବାଯାଏ, ଅଶରୀରୀମାନଙ୍କର ରାଜ୍ୟ ରହିଥିବ । ସେମାନଙ୍କର ଅସ୍ତିତ୍ୱ ଅଛି, ଯେତିକି ପ୍ରମାଣିତ କରିବାକୁ ପୋଥି-ପୁରାଣ ତ ବହୁତ ଅଛି ।

ଅତସୀ ଭୟଭୀତ ହେଲା । ତାର ସ୍ୱାମୀଙ୍କୁ ସେ କେବେ ପୋଥି-ପୁରାଣ ପଢ଼ିବାର ଦେଖି ନାହିଁ । ଟିକିଏ ବେଳ ମିଳିଲେ ସେ ଅବଶ୍ୟ ବଡ଼ ବଡ଼ ବହି ଧରି ପଢ଼ନ୍ତି । କି ପାଠ ସେ ପଢ଼ନ୍ତି କେଜାଣି, ସେହି ବହି ଭିତରେ ନିଜକୁ ହଜାଇ ଦିଅନ୍ତି । ଡାକିଲେ ଶୁଣନ୍ତି ନାହିଁ, ହାଣ୍ଡିରେ ଭାତ ଚଣା-ଗୁହଳ ହୁଏ । ଆଖି ଯୋଳ ହେଲେ ସେ ବହିଗୁଡ଼ି ଉଠନ୍ତି ।

କେତେଥର ଅତସୀ ଅଭିମାନ କରି ଶୋଇଛି । ଭାବିଛି, ଏତେ ପାଠପଢ଼ି କେତେ ପାସ୍ କଲେ, ଚାକିରି ମିଳିଲା, ଘରସଂସାର କଲେ । ପାଠ ତ ସରିଲା, ଆଉ

କ ପାଠ ? ମୁଣ୍ଡବାଳ ଧଳା ହେବାଯାଏ ବନ୍ଧୁଘର ବସିଥିବେ ? ଡାକଲେ ଜବାବ୍ ଦେଇ ନାହାନ୍ତି ! ରହ, ଆଜ ମଜା ଦେଖୁଛୁ !

—ଅତସୀ, ଅତସୀ, ଘଣ୍ଟା ବାରଟା ହେଲଣି, ଭୋକ କଲଣି ।

କେତେ ହଲଇବାର ହଲଉଛନ୍ତି । ଲୁଗାପଟା ଜାକ ଛଟାଗାଳ ଶୋଇବ । କେବେ ଉଠିବ ନାହିଁ । ହୁଁ, କଳଠା ଗେଲ, ଆଖି, କାନ, ନାକ ମୁହଁ ସବୁଠି । କସ ମାରୁଛୁ । ହସକୁ ଚାପି ରଖିବ, ଲୁଗାକାନ ଧରି ଟାଣିଲେଣି । ଆଉ ରକ୍ଷା ନାହିଁ, ଟାଣିନେବେ, ଅଳଜୁକ କରିବେ ।

—ଆରେ !

—ଏଥର ବଳେ କଦ ଗର୍ଜିବ । ଉଠ, ନଇଲେ ··

—ତମର ପଢ଼ା ସଇଲ ?

—ପଢ଼ା ସରେ ନାହିଁ ଅତସୀ, କ୍ଳାନ୍ତ ଲାଗିଲ ।

—ଏଣୁ ତେଣୁ ବହିଗୁଡ଼ା ଆଉ ନ ପଢ଼ି ଭାଗବତ, ପୁରାଣ ପଢ଼ିଲେ ଭଲ ହୁଅନ୍ତା । ବଡ଼ପାଟି କରି ପଢ଼ିଲେ ମୁଁ ଶୁଣନ୍ତି । ଆମ ଋଷିମୁନିମାନେ ପୁରାଣ ଲେଖି ଆମ୍ଭମାନଙ୍କୁ ଧର୍ମପଥରେ ଚାଲିବାକୁ ଉପଦେଶ ଦେଇଛନ୍ତି ।

ଅତସୀ ଉଠିବସିଲ । ସ୍ବାମୀଙ୍କୁ ଡାକି ସେ ଅନୁରୋଧ କଲା, ବାବୁଙ୍କ ପାଠ ସରିଲାଣି, ଭାତ ବାଢ଼ ।

ଅସିତ କହିଲା, ସେକାଳର ମୁନିଋଷି-ସନ୍ନ୍ୟାସୀମାନଙ୍କୁ ମୁଁ ପ୍ରଣାମ କରୁଛି । ସେମାନେ ସହସ୍ର ସହସ୍ର ବର୍ଷ ତଳେ ସେକାଳର ଲୋକମାନଙ୍କର ଚଳନ ପାଇଁ, ତାଙ୍କୁ ଯାହା ଜଣାଥିଲା, ଯେତେ ଦୂରଯାଏ ସେମାନେ ଭାବିପାରୁଥିଲେ, ସେଇସବୁ ଲେଖିଥିଲେ, ଅତସୀ ! ମଣିଷଜାତି କଣ ସାତ ହଜାର ବର୍ଷ ତଳର ଅଜ୍ଞ ଯୁଗକୁ ଫେରିଯିବ, ନା ଆଗେଇଯିବ କୁହ ତ ?

ଏଯୁଗର ମହର୍ଷିମାନେ ପୃଥିବୀର ସବୁ ଦେଶରେ ଅଛନ୍ତି । ସେମାନେ ବିଭିନ୍ନ ବିଷୟରେ ଗ୍ରନ୍ଥ ଲେଖିଛନ୍ତି । ଦେଖା ପରଖା ଗ୍ରନ୍ଥ । ଯେଉଁ ବିଷୟ ସେମାନେ ଅନୁଧ୍ୟାନ କରି ଲେଖିଛନ୍ତି, ସେଇ ବିଷୟରେ ଗବେଷଣା କରି

ମାତ୍ର ଜୀବନ କଟାଇ ଦେଇଛନ୍ତି । ଯାହା ଅପୂର୍ଣ୍ଣ ରହିଲା, ସେତକ ପୂର୍ଣ୍ଣ କରିବାକୁ ତାଙ୍କ ଶିଷ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଯାଇଛନ୍ତି । ଅହିାର ନିଦ୍ରା ଭୁଲି ଯେଉଁ ତଥ୍ୟଭରା ଗ୍ରନ୍ଥ ,ସେମାନେ ଲେଖିଛନ୍ତି, ସେସବୁ ମଧ୍ୟ ପୁରାଣ, ମହାପୁରାଣ । ମୁଁ ସେହି ପୁରାଣ ପଢ଼ୁଥିଲି ।

—କି ପୁରାଣ ବା, ନେ, କାହିଁକି ଲେଖା ହୋଇଛି ?

—ଯେଉଁ ପୁରାଣ ମୁଁ ପଢ଼ୁଥିଲି ସେ ପୁରାଣ ବୃକ୍ଷ, ଲତା, ଗୁଳ୍ମ ସମ୍ବନ୍ଧରେ ଲେଖା । ତାକୁ ତୁମେ ବୃକ୍ଷପୁରାଣ କହିପାର । ସେହିପରି କେତେ କାହାର ଗ୍ରନ୍ଥ ମହାମନୀଷୀମାନେ ଲେଖିଯାଇଛନ୍ତି, ପୁଣି ଲେଖୁଛନ୍ତି । ଦେହ ପୁରାଣ, ପଶୁ ପୁରାଣ, କୀଟପତଙ୍ଗ ପୁରାଣ, ଆକାଶ ପୁରାଣ, ଜୋଠାବାଣ୍ଡ-ଗ୍ରହ ପୁରାଣ, ବସ୍ତୁବସ୍ତୁନ ପୁରାଣ, ମାଟି ପୁରାଣ, ଅଣୁ-ପରମାଣୁ ପୁରାଣ । କେତେ କହିବି ଅଜପୀ ! ଆଗର ମୁନିମାନେ ଅଠର ପୁରାଣ ଲେଖିଥିଲେ । ଏବେ ଅଠର ଶହ ପୁରାଣ ଲେଖା ସରିଲାଣି । ସେସବୁ ପୁଣି ଆମେ ପରୀକ୍ଷା କରୁଛୁଁ । ମଣିଷ ଜାତିର ଉପକାରରେ ଲଗାଉଛୁଁ । ନୂଆ ତଥ୍ୟ ବାହାର କରି ପୁରୁଣାମାନଙ୍କୁ ସଂଶୋଧନ କରୁଛୁଁ ।

—ପୁରାଣ ବଦଳାଇଲେ ପାପ ହୁଏ !

—ସେ ଯୁଗରେ, ପୁରାଣମାନ ଚିନ୍ତା ଓ ଅନୁମାନ ଉପରେ ନିର୍ଭର କରି ଲେଖିଥିଲେ । ଏଯୁଗର ପୁରାଣମାନଙ୍କରେ ଯାହା ଲେଖା ହୋଇଛି, ସେସବୁ ଅତି ସୂକ୍ଷ୍ମ ଯନ୍ତ୍ରମାନଙ୍କ ଦ୍ୱାରା ପରୀକ୍ଷା କରାଯାଇ, ତାର ସତ୍ୟତା ଅନୁଭବ କରି ଲେଖାହୋଇଛି ଗୋ ଅଜପୀ ! ସେଥିରେ ଅନୁମାନ ନାହିଁ, ସ୍ୱପ୍ନ ନାହିଁ । ସବୁ ସ୍ଥିର କରିବାର ଉଦ୍ୟମ ଅଛି । ଆମ ଯୁଗର ପୁରାଣମାନଙ୍କର ଅସଲ ନାମ ବିଜ୍ଞାନ । ସେଇ ବିଜ୍ଞାନର ବିଭିନ୍ନ ଶାଖାପ୍ରଶାଖା ରହିଛି । ସେମାନଙ୍କର ଭିନ୍ନ ଭିନ୍ନ ନାମ ଦିଆହୋଇଛି ।

—ଯେତେ ଯାହା କହ ପଛେ, ତୁମ ପୁରାଣମାନଙ୍କରେ ଭଗବାନ ନ ଥିବେ । ଦେବଦାନବ ଯୁଦ୍ଧ, ରାକ୍ଷସ, ପ୍ରେତ, ମନ୍ତ୍ରତନ୍ତ୍ର, ଏସବୁ କଥା ନ ଥିବ । ପଢ଼ିବାକୁ ଭଲ ଲାଗୁ ନ ଥିବ ।

—ତୁମେ ଯାହା କହିଲ ସେତକ ଅନେକାଂଶରେ ସତ ହୋଇପାରେ; କାରଣ ଆମ ଯୁଗର ବିଜ୍ଞାନ-ପୁରାଣମାନଙ୍କରେ ଅନୁମାନ, ଅସତ୍ୟ, ଅବାନ୍ତର ଓ

ସ୍ପ୍ନ ନାହିଁ । କହିଲି. ପରା, ଆମ ଯୁଗର ବିଜ୍ଞାନ ପୁରାଣ ଦେଖାପରଖା ବିଷୟରେ ପୂର୍ଣ୍ଣ । ଭଗବାନଙ୍କର ବିଚିତ୍ର ଲୀଳା ଆମ ଯୁଗର ବିଜ୍ଞାନ ପୁରାଣମାନଙ୍କର ପ୍ରତି ଛନ୍ଦରେ ପୂର୍ଣ୍ଣ ।

ଅତୀତ ଯୁଗର ଋଷିମୁନିମାନେ ମଣିଷକୁ ଡରାଇ, ଥରାଇ, ଚରିଛି କରି ଭଗବାନଙ୍କୁ ବିଶ୍ୱାସ କର ବୋଲି ପ୍ରବର୍ତ୍ତାଉଥିଲେ । ଏ ଯୁଗର ଋଷିମୁନିମାନେ ହସାଇ, ଖେଳାଇ, ପଦେ ପଦେ ପ୍ରମାଣ ଦେଇ, ଭଗବାନଙ୍କର ବିଚିତ୍ର ସର୍ଜନାକୁ ଖିନଭିନ କରି ବୁଝାଇଛନ୍ତି । ଭଗବାନଙ୍କର ଅକଳନ ଶକ୍ତିର କଣିକାମାନଙ୍କୁ ବ୍ୟବହାର କରି ନୂଆ ନୂଆ ଅଜଣା ଅଶୁଣା ପଦାର୍ଥ କିପରି ପ୍ରସ୍ତୁତ କରାଯାଇପାରିବ, ସେ କଥା ଶିଖାଇଛନ୍ତି ।

ଆମର ଏ ଯୁଗର ବିଜ୍ଞାନ ପୁରାଣମାନଙ୍କରେ ଦେବ-ଦାନବ ଯୁଦ୍ଧର ବର୍ଣ୍ଣନା ଅଛି । ଶେଷକୁ ମଣିଷର ଧୀ-ଶକ୍ତିର ବିଜୟ ହେଉଛି । ବିବିଧ ପ୍ରକାର ଅକୃତକାର୍ଯ୍ୟତାଗୁଡ଼ିକୁ ଦାନବଦଳ କୁହାଯାଇପାରେ । ଆମ ଯୁଗର ପୁରାଣମାନଙ୍କରେ ଯେତେ ଫର୍ମୁଲା ଅଛି, ଅର୍ଥାତ୍, କାର୍ଯ୍ୟରେ ଆଗେଇବାର ଠାର ବା ସାଙ୍କେତିକ ନିୟମ ଅଛି, ସେଗୁଡ଼ିକ ଅଫଳ ମନ୍ତ୍ର ଗୋ ଅନ୍ତରୀ ! ସେଇ ମନ୍ତ୍ର ପ୍ରୟୋଗରେ ଭୁଲ୍ ହେଲେ କାର୍ଯ୍ୟ ସଫଳ ହେବ ନାହିଁ । ବାରମ୍ବାର ବିଫଳ ହେଲେ ଆମେ ମନ୍ତ୍ରକୁ ପରୀକ୍ଷା କରୁଁ । ଆବଶ୍ୟକ ହେଲେ ମନ୍ତ୍ର ବା ଫର୍ମୁଲାକୁ ବଦଳାଉଁ । ସେ ଶକ୍ତି ଆମ ଯୁଗର ବ୍ରହ୍ମଜ୍ଞ ଋଷିମୁନି, ଯେଉଁମାନଙ୍କୁ ତୁମେ ପଇତା ନ ଥିଲି ବ୍ରାହ୍ମଣ ବୋଲି କହିପାର, ସେମାନଙ୍କର ଅଛି ! ସେଥିପାଇଁ ଆମ ଏ ଯୁଗର ବେଦପୁରାଣ ଅଶୁଦ୍ଧ ହୁଏ ନାହିଁ, ବରଂ ଶୁଦ୍ଧ ହୁଏ ।

ଆମ ଯୁଗର ମନ୍ତ୍ରଶକ୍ତିର ପ୍ରଭାବ ସବୁଠାରେ ତୁମେ ଦେଖୁଛ । ବିଜୁଳି ଅଲୁଅ ଦେଖ । ସେ ଯୁଗର ଅଗ୍ନିଦେବତା ଏବେ ଆମର କୁହାର ଚାକର ହେଲେଣି । ତୁମ ରେଡ଼ିଓକୁ ଟିକେ ମୋଡ଼ି ବଲାଅ, ଖବର ଶୁଣ । ଆକାଶରେ ଉଡ଼ି ନୂଆଦିଲ୍ଲୀ ମନ ଯିଆଡ଼େ ଯାଅ । ହଇଜା-ଠାକୁରାଣୀକୁ ଆମ ଡାକ୍ତରମାନେ ତଡ଼ିସାରିଲେଣି, କେତେ କହିବି?

—ସେତିକ କହୁଥା, ଗୁଲ ଖାଇବ; ଭୂତ ଅଣ୍ଡା ହବଣି ।

ଅସିତର ହାତ ଖୁଜୁ ଖୁଜୁ ହେଉଛି, ଦେହ ସଲ ସଲ ହେଉଛି । କେତେ ଦିନ ତଳର ବଞ୍ଚାନ ପୁରାଣର ଗୁଣ ବର୍ଣ୍ଣନା ମନର ଭାବନାକୁ ଉତ୍ତେଜିତ କରୁଛି ।

ଅତସୀ ଅଳପ ଅପସନ୍ନ ଆସି କହିଲା, ଏବେ ତୁମର ତୁଣ୍ଡର କଥା ହାତ ଗୋଡ଼କୁ ଡେଇଁଲାଣି । ମୋ ତୁଣ୍ଡ କଥା ଯଦି ମୋ ନାକକୁ ଚମକ ଆସିବ, ମୋ ଦୋଷ ଦେବ ନାହିଁ, କହୁଛି । ଜେନାବାବୁଙ୍କ ଦ୍ୱିତୀୟ ଶିକ୍ଷକ ଭାସ୍କର ହଟହଟା ହେଲା । ସ୍ଥାନ ଛାଡ଼ି ପଳେଇଲା, ସେ ରକ୍ଷା ପାଇଲା । ଯେଉଁ ରାଧିକାକୁ ଭୂତ ପିଟିଲା, ସେ ବି ହଟହଟା ହେଲା । କହ, ସେ ତ ଗ୍ରାମ ଛାଡ଼ିଯାଇ ନ ଥିବ ? କଥା ଦିନେ ପ୍ରକଟ ହେଲେ, ଅଦ୍ୱା ପ୍ରେମକାଙ୍କ୍ଷାଳୁଣୀଟି, କେମିତି, କାହାକୁ ମୁହଁ ଦେଖାଇଥିବ ? ନାଁ ଲାଗି କାହିଁକି ଏ ବୁଦ୍ଧି କଲାଟି, ଛି !

ଅସିତ ଆନନ୍ଦରେ ଅତସୀକୁ ହାଇଲାଦେଲା । ଗେଲ କରି କହିଲା, ପିଶାଚୁଣୀର କାଚ ଝମ୍‌ଝମ୍‌ର ମର୍ମ ତୁମେ ଠିକ୍ ବୁଝିଲ । ବାଃ ! ମୁହଁ ଦେଖାଇବାକୁ ଅଭିଯାରିକା ରାଧିକାକୁ କଷ୍ଟ ହୋଇ ନ ଥିବ ଯେ ! ଯେଉଁମାନେ ଭୂତହୋଇ ମାଡ଼ ମାରିଥିବେ, ସେମାନେ ମରମ କଥା ପ୍ରକାଶ କରିବାକୁ ସାହସ କରି ନ ଥିବେ । ଭୁଟ୍‌ଭାଟ କଥା ପଦାକୁ ବାହାରିଥିଲେ ମଧ୍ୟ ରାଧିକାଙ୍କ ଚନ୍ଦ୍ରସେଣା ବର ପାଣିକଲ ମିସ୍ତ୍ରୀଙ୍କ କାନରେ ପଡ଼ିଥି ନ ଥିବ । ଯଦି ପଡ଼ିଥିବ, ସେ ବିଶ୍ୱାସ କରି ନ ଥିବେ । ସେ ପିଲାଦିନୁ ଜାଣନ୍ତି ଯେ ସ୍କୁଲ ପାଖ ତୋଟାରେ ପିଶାଚୁଣୀ ଅଛି, ନାଲବନ୍ଧ କରଞ୍ଜଗଛରେ କେଉଁଠୁ ଆସି ଭୂତ କ ବ୍ରହ୍ମରାକ୍ଷସ କେତେ ଦିନରୁ ଆଶ୍ରା ନେଇଛି । ଗୁଣିଆ ଆସି ଅବଶ୍ୟ ତାଙ୍କ ଗୃହିଣୀଙ୍କର ଦେହ ଜଳାଇଥିବ ।

ଭୂତପ୍ରେତ ଅପଦେବତାମାନଙ୍କର ଆଗ ନେଇ ଚଗଲା ଟୋକାଏ ବେଳେ ବେଳେ ଗ୍ରାଷଣ କାଣ୍ଡ ସୃଷ୍ଟି କରନ୍ତି । କେତେ ଘଟଣା ମୁଁ ଶୁଣିଛି, କିନ୍ତୁ ଆମ ଅଫିସର ନନ୍ଦବାବୁ ନିଜ ଜୀବନର ଯେଉଁ ଘଟଣା ବର୍ଣ୍ଣନା କରି ଦୁଃଖ କରୁଥିଲେ ସେ କଥା ତୁମେ ନିଶ୍ଚୟ ଶୁଣିବାକୁ ମନ କରିବ । ତାଙ୍କ ଘର ବାଙ୍କୁଡ଼ା ଜିଲ୍ଲାରେ ଏବେ ତାଙ୍କ ବୟସ ପଇଁଚାଳିଶ ହେବ । ପିଲାଦିନରୁ ଭୂତପ୍ରେତଙ୍କର ବହୁ ଗଳ୍ପ ସେ ଶୁଣିଛନ୍ତି । ସେମାନଙ୍କୁ ଥରେ ହେଲେ କେବେ ଆଖିରେ ଦେଖିବେ ବୋଲି ଛାତ୍ରଜୀବନରେ ବହୁ ଚେଷ୍ଟା ସେ କରିଥିଲେ ।

—ଦେଖିଲେ କି ? କେମିତି ସେମାନଙ୍କର ରୂପ ?

—ନନ୍ଦବାବୁଙ୍କ ବୟସ ସେତେବେଳେ ପନ୍ଦର, ଷୋହଳ । ସେ ବାଙ୍କୁଡ଼ା ଜିଲ୍ଲା ସ୍କୁଲରେ ପାଠ ପଢ଼ୁଥାନ୍ତି । ସେଇ ଅବସ୍ଥାରେ ସେ ଓ ତାଙ୍କର ଜଣେ ସହପାଠୀ ତାଙ୍କ ନାମ କି ବୋଷ, ଦୁହେଁ ଭୂତପ୍ରେତ ଓ ମରଣ ପରେ ଆତ୍ମାର ଅବସ୍ଥା ସମ୍ବନ୍ଧରେ କୁତୂହଳୀ ହେଲେ । ସ୍କୁଲ ପାଠ ଖଇସ୍ୱ କରି ଭୂତପ୍ରେତ ଓ ଅମୋଷା ଆତ୍ମା ସମ୍ବନ୍ଧରେ ଯେତେ ଯେଉଁଠି ବହି ମିଳିଲା, ସବୁ ପଢ଼ିଲେ । 'ମରଣ ପରେ' ନାମକ ବହି, ଯାହାକୁ ସ୍ୱାମୀ ଅଭେଦାନନ୍ଦ ଲେଖିଛନ୍ତି, ତାକୁ ପଢ଼ି ସେ ଦୁହେଁ ପୂର୍ଣ୍ଣବିଶ୍ୱାସ କଲେ ଯେ ମଣିଷ ମରିବା ସଙ୍ଗେ ସଙ୍ଗେ ତା ଦେହରୁ ତାର ଆଉ ଗୋଟିଏ ସୂକ୍ଷ୍ମ ଶରୀର ବାହାରିଯାଏ, ସେ ସୂକ୍ଷ୍ମଶରୀର ହେଉଛି ପ୍ରେତ ।

—ପ୍ରେତ ଶରୀର ମଣିଷ ଆଖିକୁ ଦିଶେ ?

ଅଭେଦାନନ୍ଦଙ୍କ 'ମରଣ ପରେ' ବହିରେ କେତେ ପ୍ରେତ ପୁରୁଷଙ୍କର ଫଟୋ ଦିଆହୋଇଛି । ମୁଁ ସେ ବହି ପଢ଼ିନାହିଁ ଅତସୀ, ନନ୍ଦବାବୁ ମତେ କହୁଥିଲେ । ଫଟୋଗୁଡ଼ିକ ବି ଦେଖିଛି, ତୁମେ ଦେଖିଲେ ଡରିବ । ପ୍ରେତପୁରୁଷମାନଙ୍କୁ ଡାକିଲେ କୁଆଡ଼େ ସେମାନେ ପାଖକୁ ଆସନ୍ତି । ସଳ ସଳ ହୋଇ ଆସନ୍ତି । ତୁମେ ତାଙ୍କୁ ଦେଖିପାରିବ । ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇପାରିବ । ତାଙ୍କ ଦେହର ପରଶ ଅନୁଭବ କରିପାରିବ, ସେମାନେ ଗୀତ ବୋଲନ୍ତି ।

ସ୍ୱାମୀ ଅଭେଦାନନ୍ଦ ଆମେରିକା ଦେଶରେ ଥିଲାବେଳେ ଏସବୁ ନିଜେ ଦେଖିଛନ୍ତି । ଅନୁଭବ କରିଛନ୍ତି । ମୋଟ ଉପରେ ସେ କହନ୍ତି ଯେ ଏଇ ଦେହଟା ମରିଗଲେ ତା ଭିତରୁ ପ୍ରେତାତ୍ମା ବାହାରେ । ପ୍ରେତମାନେ ଆଉ ଗୋଟିଏ ଦେଶ, ଅର୍ଥାତ୍, ପ୍ରେତଲୋକରେ ରହନ୍ତି । ଜଣକୁ ମଧ୍ୟସ୍ଥ କରି ( ତାକୁ ଯେ କହନ୍ତି ମିଡ଼ିୟମ ) ତାଆରି ଜରିଆରେ ପ୍ରେତଲୋକ ସଙ୍ଗେ ସମ୍ପର୍କ ସ୍ଥାପନ କରି ପ୍ରେତମାନଙ୍କୁ ଡାକିଲେ ସେମାନେ ପାଖକୁ ଆସନ୍ତି, କଥାବାର୍ତ୍ତା କରନ୍ତି ।

—ଦେହରୁ ପ୍ରେତାତ୍ମା ବାହାରିଯିବାବେଳେ କେହି ଦେଖିଛି ?

—ଅଭେଦାନନ୍ଦ ଲେଖିଛନ୍ତି ଯେ ସେ ଶୁଣିଥିଲେ ଜଣେ ମହିଳାଙ୍କ ମୁହଁରୁ । ମହିଳା ନିଜେ ଦେଖି ନ ଥିଲେ, ଦେଖିପାରି ନ ଥିଲେ । ତାଙ୍କ ପୁଅର ମରଣକାଳରେ ତାଙ୍କଅଖି ମରଣମୁଖୀ ପୁଅ ପାଖରେ ବସିଥିଲା ମହିଳାଟି ମଧ୍ୟରେ

ରେ ଥିଲେ । ତାଙ୍କ ଝିଅ ତାଙ୍କୁ ତାଙ୍କ କହିଲା ,ଦେଖ, ଗାଇଡ ଦେହରୁ ଧୂଆଁଳିଆ ହୋଇ କଣ ବାହାରୁଥାଉଛି, ମହିଳା କିନ୍ତୁ ଦେଖିପାରିଲେ ନାହିଁ ।

—ସେଇ ଧୂଆଁଳିଆ ପଦାର୍ଥ କ'ଣ ତା ଗାଇଡ ପ୍ରେତ ?

—ସେଇଆ ତ ସ୍ୱାମୀଜୀ କହିବାକୁ ଯାଉଛନ୍ତି । ସେଇ ଧୂଆଁଳିଆ ପଦାର୍ଥର ନାମ ସେ ଲେଖିଛନ୍ତି 'ଏକ୍ଟୋ ପ୍ଲାଜମ୍' । ଏହାର କୌଣସି ନିର୍ଦ୍ଦିଷ୍ଟ ଆକାର ନାହିଁ । ମିଡ଼ିୟମ୍ ପୁରୁଷ ବା ମିଡିୟମ୍ ସ୍ତ୍ରୀ, ଅର୍ଥାତ୍, ଯେଉଁ ପୁରୁଷ ବା ସ୍ତ୍ରୀକୁ ସମ୍ମୋହନ ଦ୍ୱାରା ମୋହିତ କରାଇ ତାର ପ୍ରେତ ଜରିଆରେ ଅନ୍ୟ ପ୍ରେତଙ୍କୁ ଡକାଯାଏ, ସେହି ମିଡ଼ିୟମ୍ ପାଖରେ ଅବା ଆଗରେ ଆଗ ଏଇ ଧୂଆଁଳିଆ, କହୁକୁହୁଆ, 'ଏକ୍ଟୋ ପ୍ଲାଜମ୍' ଜମାହୁଏ । ସେଇ ପ୍ରେତକୁହୁଡ଼ି ଧୀରେ ଧୀରେ ଜମାଟ ବାନ୍ଧି ଭିନ୍ନ ପ୍ରେତଙ୍କର ରୂପ ଧରେ । ସ୍ତ୍ରୀ, ପୁରୁଷ, ବାଳକ, ବାଳିକା । ସେମାନଙ୍କର ଫଟୋ ବହିରେ ଦିଆହୋଇଛି । ଚଷମା ପିନ୍ଧା ବୁଢ଼ା, ପୋଷାକପିନ୍ଧା ଯୁବତୀ ଇତ୍ୟାଦିଙ୍କର ପ୍ରେତର ଫଟୋ ।

ଅରପିର ଛାତି ଧକ ଧକ୍ ହେଲା । କାନ୍ଥ ଆଡକୁ ମୁହଁ ବୁଲାଇବାକୁ ମନ ହେଲା । ଦେହ ଚଳିଲା ନାହିଁ । ସେ ଅନୁଭବ କଲା ସତେକି ପ୍ରେତକୁହୁଡ଼ି କାନ୍ଥ ଉପରେ ଜମା ହେଲଣି । ଆଷାଢ଼ର ଏଇ ଶୀତଦିନିଆ କୁହୁଡ଼ି ଯେପରି ଗୋଟିଏ ବୁଦାରେ ଜମାହୋଇ ପଡ଼ିଥ ଉଡ଼ାଏ ! କାନ୍ଥ ଉପର ପ୍ରେତକୁହୁଡ଼ି ଜମାଟ ବାନ୍ଧିଲଣି, ସାହାଦାଣୀର ଲକାଲ ମୁହଁର ଗଢ଼ଣ ଦିଶିଲଣି ।

ଅରପି ଅସିତକୁ ପୁଣି ଆଲିଙ୍ଗ ଧରି ଅଶଲ୍ କଣ୍ଠରେ କହିଲା, ଆଉ କହନା, ମତେ ଡର ମାଡୁଛି । ସାହାବାଣୀର ପ୍ରେତ ଆସିଲଣି କି କଅଣ ! ନନ୍ଦବାବୁଙ୍କ କଥା କହ ।

—ନନ୍ଦବାବୁ ଓ ତାଙ୍କର ବନ୍ଧୁ ବୋଷ ପ୍ରେତକୁହୁଡ଼ି ଦେଖିବାକୁ ପଣ କଲେ; ସେମାନଙ୍କର ଅତି ବଳିଷ୍ଠ ଦେହ । ମନର ଜୋର ଯଥେଷ୍ଟ । ଦୁହେଁ ଶିଖାଶିଖି ହୋଇ ଅନ୍ୟମାନଙ୍କର ରୋଗଶଯ୍ୟା ପାଖରେ ରାତି ଅନିଦ୍ରା ହୋଇ ଜଗି ବସିଲେ । ଜଣେ ଘୁମେଇଲେ ଆଉ ଜଣେ ଜଗିବସେ । ଏକ ଆଖିରେ ରୋଗୀକୁ ଚାହିଁ

ରହିଥାଏ, କେତେବେଳେ ରୋଗୀର ପ୍ରାଣ ରୁଦ୍ରଦେବ ଓ ଅଭେଦାନନ୍ଦ ସ୍ୱାମୀ ଲେଖିଥିବା ପ୍ରେତକୁହୁଡ଼ି ବାହାରିବ । ରୋଗୀ ଭଲ ହେଲେ ଦୁଇ ବନ୍ଧୁ ହତାଶ ହୁଅନ୍ତି । କୁହାକୁହି ହୁଅନ୍ତି, ରାତି ଗତ ବ୍ୟର୍ଥ ହେଲା ।

କେତୋଟି ରୋଗୀଙ୍କର ମରଣ ବି ସେମାନେ ଦେଖିଲେ; କିନ୍ତୁ ପ୍ରେତକୁହୁଡ଼ିର କୌଣସି ଆଭାସ ପାଇଲେ ନାହିଁ । ଆଖି ମଳି ମଳି ଦେଖିବାକୁ ଚେଷ୍ଟା କଲେ । ଚେଷ୍ଟା ବ୍ୟର୍ଥ ହେଲା, ହତାଶ ହେଲେ । ବିରକ୍ତ ହେଲେ, ସ୍ୱାର୍ଥତ୍ୟାଗୀ । ପରୋପକାରୀ ଯୁବକ ଦୁଇଟି ବୋଲି ବାହାରେ ସେମାନଙ୍କର ବେଶ୍ ପ୍ରଶଂସା ହୋଇଆସୁଥିଲା । ଉଦ୍ଦେଶ୍ୟ ତ ସଫଳ ହେଲା ନାହିଁ, ପ୍ରେତକୁହୁଡ଼ି ଦେଖିପାରିଲେ ନାହିଁ, ରାତି ଅନିଦ୍ରା ରହି, ପାଠପଢ଼ାରେ ବ୍ୟାଘାତ ଘଟାଇ ଲାଭ କଣ ? ବନ୍ଧୁ ଦୁହେଁ ଆଉ ରୋଗୀସେବା ନ କରି ପାଠରେ ମନ ଦେଲେ ।

ନନ୍ଦବାବୁଙ୍କ ମନରେ ପ୍ରେତକୁହୁଡ଼ିର ଧାରଣା ବସାବାନ୍ଧିଥିଲା । ସେ ଦିନେ ବୋଷଙ୍କୁ କହିଲେ, ପରୀକ୍ଷା ତ ସରିଲା, ପ୍ରେତମାନଙ୍କ ଅନ୍ୱେଷଣରେ ପାଠ ବରବାଦ ହେଲା, ତେବେ ପରୀକ୍ଷାର ଫଳ ବାହାରିବା ଆଗରୁ ଆଉ ଥରେ ଚେଷ୍ଟା କରାଯାଉ । ରାଜି ତ ?

ବୋଷ ବନ୍ଧୁ ସମ୍ମତ ହେଲେ । କଥା ଛିଡ଼ିଲା, ଏଣିକି ସେମାନେ ରୋଗୀର ସେବା ନ କରି ରୋଗୀର ମରଣ ପରେ ତାରି ସେବା କରିବେ । ମୁର୍ଦ୍ଦାରକୁ କାନ୍ଧରେ ବୋହିନେବେ । ମଶାଣିରେ ପୋଡ଼ା ହେଉଥିଲାବେଳେ ଦେଖିବେ । କାଳେ ସେଠିକିବେଳେ ପ୍ରେତକୁହୁଡ଼ି ବାହାରି ଖସି ପଳାଇବ । ମୁର୍ଦ୍ଦାର ବୋହି ମଶାଣିକୁ ନେବା ଓ ତାର ଦାହକାର୍ଯ୍ୟ କରାଇବା ବି ଦେଶର କାର୍ଯ୍ୟ ।

ଝଡ଼ ବର୍ଷା, ରାତିଦିନ ମାନିନାହାନ୍ତି । ତାଙ୍କରେ ବୋହି ଅନ୍ୟମାନଙ୍କ ସଙ୍ଗେ କେତେ ମୁର୍ଦ୍ଦାର ମଶାଣିକୁ ନେଇଛନ୍ତି । ଦାହ କରାଇଛନ୍ତି, ମଣିଷ ଦେହ ପାଉଁଶ ହେବାର ସେମାନେ ଦେଖିଛନ୍ତି; କିନ୍ତୁ କାଠ ଧୂଆଁ ଓ ପୋଡ଼ୁଥିବା ମଣିଷ ଦେହର ଅବସ୍ଥା ଦେଖିବା ଛଡ଼ା କେବେ ସେମାନେ ବା ଆଉ କେହି 'ଏକ୍ଟୋ ପ୍ଲାଜମ ବା ପ୍ରେତକୁହୁଡ଼ି' ଦେଖିଲେ ନାହିଁ । ମଶାଣିରେ ବିଚରଣ କରୁଥିବା ନିଶାଚରମାନଙ୍କୁ ଦେଖିଲେ, ପଶୁ ଓ ପକ୍ଷୀ, ପ୍ରେତଟିଏ କେବେ ଦେଖିଲେ ନାହିଁ ।

ନିଜ ଉପରେ, ପ୍ରେତମାନଙ୍କ ଉପରେ ଓ ଯେଉଁମାନେ ପ୍ରେତଙ୍କ ଉପରେ ବିଶ୍ୱାସ କରି ମନଗଢ଼ା ଗଳ୍ପ ଲେଖିଯାଇଛନ୍ତି, ସେମାନଙ୍କ ଉପରେ ରାଗ କରି ନନ୍ଦ ଓ ବୋଷ ମଡ଼ାଚଣ୍ଡିଆ ଖାଇପଣ ଛାଡ଼ିଲେ । ସ୍ଥିର କଲେ, ଏଥର ସେମାନେ ନିଜେ ଭୂତପ୍ରେତର ଅନୁସନ୍ଧାନ କରିବେ ।

କଲେଜରେ ଏକ ସଙ୍ଗେ ପାଠ ପଢ଼ିଲାବେଳେ ସେମାନେ ଭୂତପ୍ରେତ ଅନୁସନ୍ଧାନ ଆରମ୍ଭ କଲେ । କାହା ଘରେ ରାତି ଅଧରେ ଟେକା ବୃଷ୍ଟି, କାହା କବାଟ ନିଜେ ଖୋଲେ, କାଚ ଝନ୍‌ଝନ୍ ଇତ୍ୟାଦି । ଯାହା ଘରେ ଗୁଣିଆ ପଶେ, ଯିଏ ଦେହ କଳାଇ ତେଉଁରିଆ ପିନ୍ଧେ, ତାଙ୍କୁ ସେମାନେ କ୍ଷମା ଦିଅନ୍ତି । ସେଠି ଉତ୍ପାତ କଲେ ଧରାପଡ଼ିବାର ସମ୍ଭାବନା ଥାଏ । ଲୋକଦେଖାଣିକୁ ଦିହେଁ ତେଉଁରିଆ ପିନ୍ଧିଲେ, ଅଜବ ମିଛ ଭୂତପ୍ରେତଙ୍କ କାହାଣୀ ମନରୁ ଗଢ଼ି ପ୍ରଚାର କଲେ ।

ଥରେ ଗୋଟିଏ କାଣ୍ଡ ଘଟିଲା, ଯେଉଁଥିପାଇଁ ସେମାନେ ସେହି ବୁଦ୍ଧି ଛାଡ଼ିଲେ । ସେମାନଙ୍କର ଜଣେ ସହପାଠୀ ଶ୍ରୀ ଦତ୍ତ ମୋଟେ ଭୂତପ୍ରେତଙ୍କୁ ଡରନ୍ତି ନାହିଁ । ଦେହ ଓ ମନ ବଳିଷ୍ଠ, ଭଲ ଛାତ୍ର । ରାତି ଅଧରେ ଏକାକୀ ଯା’ ଆସ କରନ୍ତି । ଯେଉଁ ସବୁ ଗଛ କି ଜାଗାମାନଙ୍କରେ ମଶାଣିଚଣ୍ଡୀ ଓ ବ୍ରହ୍ମରାକ୍ଷସ ଅଛନ୍ତି ବୋଲି ପ୍ରବାଦ ଅଛି, ସେସବୁ ତଳେ ଗୀତ ବୋଲି ନିର୍ଭୟରେ ଚାଲି ଯାଆନ୍ତି । ଆମ ନନ୍ଦବାବୁଙ୍କ ହାତରେ ତେଉଁରିଆ ଦେଖି ଦତ୍ତବାବୁ ଥଟ୍ଟା କରନ୍ତି ।

ବୋଷ ଗୁନ ଗୁନ ନନ୍ଦଙ୍କୁ କହିଲେ, ଅରେ, ଆଜି ରାତି ନଅଟାରେ ଚାଲ ଶ୍ମଶାନକୁ ଯିବ, ଅନ୍ଧାର ରାତି ଭଲ, ପାଗଯୋଗ ।

ନନ୍ଦ କହିଲେ, କଳାପୋଷାକ ଯୋଗାଡ଼ କରି ରଖିଛି । ସାଇକେଲଟାଏ ଯୋଡ଼ା, ଡବଲ ରାଇଡ଼ିଂ, ଏଁ ?

ବୋଷ କହିଲେ, ହୁଁ ।

ଦତ୍ତ ଗଲାବେଳଯାଏ ହଷ୍ଟେଲର ନିଜ ନିଜ କୋଠରିରେ ବନ୍ଧୁ ଦିହେଁ ମନଦେଇ ପାଠ ପଢ଼ୁଥିଲେ । ସେ ଗଲା ପରେ ଦୁହେଁ ଲୁଗା ବଦଳି ଗାମୁଛାପିନ୍ଧି ପାଇଖାନା ଗଲେ । କଳା ପୋଷାକ ହଷ୍ଟେଲ ବାହାରେ ଗୋଟିଏ ବାଥ୍‌ରୁମ୍‌ରେ ଲୁଚାଇଥିଲେ, ଶୀଘ୍ର ବଦଳିଲେ ।

ସାଇକେଲ୍ ଛୁଟିଲା ।

ନନ୍ଦ ଖଣ୍ଡେ ରୁମାଲରେ ବାଲିବାନ୍ଧି ଝଙ୍କା ବରଗଛ ଉପରେ ଚଢ଼ିଲେ । ତାର ତଳେ ଗୀତକଣ୍ଠ ଦତ୍ତ ହ୍ୟାଣ୍ଡବ୍ୟାଗ୍ ଝୁଲାଇ ଅନ୍ଧାରରେ ଗଲାବେଳେ ନନ୍ଦ ରୁମାଲରୁ ମୁଠାଏ ବାଲି ନେଇ ପତର ଉପରକୁ ଛାଡ଼ିଲେ ଝରଝର ଶବ୍ଦ କରି ବାଲିକଣା ତଳେ ପଡ଼ିଲା ।

ଦତ୍ତଙ୍କର ଗୀତ ଥମିଲା ।

ଭୟଅସ୍ପ କଣ୍ଠରେ ଦତ୍ତ ପଚାରିଲେ, କିଏ ?

ଆଉରି ମୁଠାଏ ବାଲି । ସଙ୍ଗେ ସଙ୍ଗେ ଡାଳପତ୍ର ଦୋହଲି ଉଠିଲା । ଦତ୍ତ ବୋବାଇ ଲେ ବୋଲି ଡାକଗୁଡ଼ା ଆଗକୁ ଧାଇଁଲେ, ଷ୍ଟେସନମୁହାଁ । ନନ୍ଦ ଗଛରୁ ଓହ୍ଲାଇ ବୋଷଙ୍କ ସାଇକେଲ୍ ପଛରେ ବସି ହଷ୍ଟେଲକୁ ବାହୁଡ଼ିଲେ । କେହୁ ଜାଣିଲେ ନାହିଁ, କି ପଚାରିଲେ ନାହିଁ, ବନ୍ଧୁ ଦତ୍ତେ କାହିଁକି ସେ ରାତରେ ଅଧଘଣ୍ଟାରୁ ଅଧିକ ପାଇଖାନାରେ ପଶିଥିଲେ । ଖାଇବା ଘଣ୍ଟା ବାଜିବା ସଙ୍ଗେ ସଙ୍ଗେ ନନ୍ଦ ଯାଇ ଆଗ ଆସନ ଜମାଇ ବସିଲେ ।

ରାତଅଧରେ ଷ୍ଟେସନରୁ ଖବର ଆସିଲା, ଜଣେ ଛାତ୍ର ଷ୍ଟେସନ ପ୍ଲାଟଫର୍ମ ଉପରେ ଝାଡ଼ାବାନ୍ତି ହୋଇ ବେହୋ'ସ୍ ଅବସ୍ଥାରେ ପଡ଼ିଛି । ଅନ୍ୟ ଛାତ୍ରମାନଙ୍କ ସଙ୍ଗରେ ନନ୍ଦ ଓ ବୋଷ ଯାଇ ଦତ୍ତଙ୍କୁ ଆଣିଲେ ।

ଅତି କଷ୍ଟରେ ଦତ୍ତ ବଞ୍ଚିଲେ ସିନା, କିନ୍ତୁ ମନ ତାଙ୍କର ପାତଳା ଧରିଲା । ଆଲୁଅ ନ ନେଲେ ସେ ଘରଭିତରୁ ପଦାକୁ ଏକୁଟିଆ ଯାଆନ୍ତି ନାହିଁ । ହାତରେ ଦୁଇଟା ଦେଉଁରିଆ ।

ନନ୍ଦ ମନେ ମନେ ଅନୁତାପ କଲେ । ଭୂତପ୍ରେତ ବେପାର, ସେଇଠୁ ସେ ଛାଡ଼ିଛନ୍ତି । ଆଜଯାଏ ସେ କେବେ କିଛି ଦେଖିନାହାନ୍ତି । ସେମାନଙ୍କ ସମ୍ବନ୍ଧରେ ଚର୍ଚ୍ଚା ହେଲେ ନନ୍ଦବାବୁ ମୁରୁକି ହସନ୍ତି । ତାଙ୍କୁ କେହୁ ପଚାରିଲେ ସେ କହନ୍ତି, ସେମାନେ ମୁଣ୍ଡ ଭିତରେ ଥାଆନ୍ତି, ସେଇଠୁ ବାହାରି ରୂପ ଧରି ଆଗରେ ଠିଆ ହୁଅନ୍ତି ।

ଅତସୀ କହିଲା, ନନ୍ଦବାବୁଙ୍କ ସ୍ତ୍ରୀ କେଡ଼େ ମିଳାପି ଲୋକ । ମୋତେ ତାଙ୍କ ବଡ଼ଝିଅ ପରି ସ୍ନେହ କରନ୍ତି । ହାତଟି ପିଲାର ମା, ତଥାପି ତାଙ୍କ ଦେହ ଝଡ଼ି ନାହିଁ । କେଡ଼େ ସୁନ୍ଦର ସେ ! ଆମ ଘରକୁ ବୁଲିଆସିଲେ ଆଗ ମୋର ମୁଣ୍ଡ ବାନ୍ଧିଦେବେ, ସଜେଇ କରି ଲୁଗା ବ୍ଲାଉଜ ପିନ୍ଧାଇବେ, କେତେ ଆଡ଼ର ଗପ କହିବେ, ମୁଁ ତାଙ୍କୁ ମାଉସୀ ଡାକୁଛି । ନନ୍ଦବାବୁଙ୍କ ଭୂତ ଗପ ସେ କେବେ କହି ନାହାନ୍ତି, ଆଜି ଦ'ପହରେ ଆସିଥିଲେ ତ !

—ସେ କଥା ମତେ ଆଗରୁ କହିଲ ନାହିଁ ! ମୋର ମାଉସୀଶାଶୁ ହେବେ, ଅଥଚ ଏକଥା ନ ଜାଣି ମୁଁ ନନ୍ଦବାବୁଙ୍କୁ ଅନ୍ଧାକର ଭୂତନାଥ ବୋଲି ଡାକେ ଓ ବୁଢ଼ା ମହାରଥୀ ବାବୁଙ୍କୁ ପ୍ରେତପତି ବୋଲି ଚଳାଏ । ତାଙ୍କ ସ୍ତ୍ରୀଙ୍କୁ ମାଈଁ ବା ପିଉସୀ ଡାକ ନାହିଁ ତ ? ଅଇ ଡାକିଲେ ମନ୍ଦ ହେବ ନାହିଁ ।

ଅତସୀ କହିଲା, ତାଙ୍କୁ ଯାହା ଡାକିଲେ ସେ ଓ୍ୱା କରିବେ ! ମହାରଥୀ ବାବୁ ମୁଣ୍ଡିକା ସଂରକ୍ଷଣ ଅଫିସର ବୋଲି ତାଙ୍କ ସ୍ତ୍ରୀ କହନ୍ତି । ମାଟିଗୋଡ଼ି ସଙ୍ଗେ ଲୁଆଡ଼େ ତାଙ୍କ ସମ୍ପର୍କ ବୋଲି ସେ ବଡ଼ପାଟିଆ ହୋଇଛନ୍ତି । ଗୁନ ଗୁନ କରି ପରେ କଥା କହିଲେ ତାଙ୍କୁ ଶୁଭେ ଢୋଲ ବାଜିଲା ପରି । ସେଇଥିପାଇଁ ବୁଢ଼ୀ ଏତେ ଧୀରେ ଧୀରେ କଥା କହନ୍ତି ଯେ ଏ କାନରୁ ସେ କାନ ଶୁଭେ ନାହିଁ । ଏଁ ଏଁ ଉହୁ ବବକ୍ର ଲଗେ । ସେ କହନ୍ତି, ଭୂତପ୍ରେତ ଦିନରେ ଦେଖା ଦିଅନ୍ତି ନାହିଁ ଦିନ. ହେଲେ ବେଳେବେଳେ ସବୁଠି ଆବିର୍ଭୂତ ହୁଅନ୍ତି । ତାଙ୍କ କଥା ପଡ଼ିଲେ ସେମାନେ ପାଖକୁ ଆସି ଶୁଣନ୍ତି, ରାତି ହେଲେ ଦେଖାଦିଅନ୍ତି ।

—ସେ କେବେ ଦେଖିଛନ୍ତି କି ଅତସୀ ?

—ପଚାରିଲେ ବୁଢ଼ୀ କହନ୍ତି, ସେ ଅନେକ ଥର ଦେଖିଛନ୍ତି । ଏପରି କି ଦ'ପହରେ ମଧ୍ୟ ଥରେ ଦେଖିଛନ୍ତି । ଯେତେ ପଚାରିଲେ ଆଉ ଅଧିକ କହନ୍ତି ନାହିଁ । ଜଗର କଲେ କହନ୍ତି, ଆଲୋ ମା!, ଦେଖିଲା କଥା ପ୍ରକାଶ କଲେ ଦଶଜଣ ବିଶ୍ୱାସ କରିବେ ତ ପାଞ୍ଚ ଜଣ ଉପହାସ କରିବେ, ଖୋଳି ତାଡ଼ି ପଚାରିବେ ।

ଦେଖିବା ସହଜ, ହେଲେ ମନେରଖିବା ସମ୍ଭବ ନୁହେଁ । ଯେଉଁକ ମନେପଡ଼େ ସେତକ ଆଖିରେ ଦିଶିଯାଏ । ଆଖିରେ ଦିଶିଲା ଘଟଣାରୁ ଯେଉଁକ ପରେ

ମନେପଡ଼େ କଥାରେ ସବୁ ପ୍ରକାଶ କରି ହୁଏନାହିଁ । କହୁ କହୁ ନ କହିପାରିଲେ କି କି ପଦ ପାଟିରୁ ବାହାରେ, ତା ଉପରେ ଆୟତ୍ତ ରହେ ନାହିଁ ।

ତର୍କ ବିତର୍କ, ଅନୁଯୁକ୍ତ ପ୍ରଯୁକ୍ତ, କଥା କଟାକଟି ଚାଲେ । ବୃଥାରେ ରାଗରୋଷ, ମୁହଁ ଶୁଖାଶୁଖି । ଏସବୁ ଅଶାନ୍ତିରୁ କଣ ମିଳିବ ? ଆଖି ଖୋଲି ଦେଖିବ, କାନ ଖୋଲି ଶୁଣିବ, ପାଟିର ସାଉଁଳି କବାଟ ଆଣ୍ଡି କରି କିଳିବ ।

ପଚାରିଲି, ଆଇମା, ଦେଖିଲେ ଶୁଣିଲେ ସବୁ ଘଟଣା ମନରେ ପଶିବ । ଯେସବୁ ଘଟଣା ମନ ଭିତରେ ଛଟପଟ ହେବ । ପଦେ ପଚାରିଦେବାକୁ ମନ ହେବ ଯେ ।

କହିଲେ, ହଁ ଲୋ ନାତୁଣୀ ! ମନକୁ ମଶାଣି କରିବ ଯେ ଫମ୍ପା କଥା, ପଚନିଆ କଥା ସବୁ ଗଳି ପଳାଇବ । ଅସଲ କଥା ଗୁଣ୍ଡି ହୋଇ ରହିବ । ପଛେ ପଚାରିଦେଲେ ପଚାରିଦେବ ପଛେ, ଜବାବ ଶୁଣି କଥା କଟାକଟି କରିବ ନାହିଁ । ଭୂତପ୍ରେତ, ଡାଆଣୀ, ପିଶାଚୁଣୀ, ହାଡ଼ୁବାଇମାନଙ୍କ କଥା ନ ଦେଖିଲେ, ନ ଶୁଣିଲେ, ବିଶ୍ୱାସ କରି ହୁଏ ନାହିଁ । ଶହେ ଲୋକରେ ଜଣେ ଅଧେ ଦେଖିଥିବେ କି ନାହିଁ କେଜାଣି !

—ଆରେ, ଆଇଙ୍କ ବେଳରେ ମାଲେ ତେଉଁଶିଆ । କାହିଁକି ଏତେ ପିଛୁଛ ପଚାରିଲେ, ସେ ହସନ୍ତି, ଖାଲି କହନ୍ତି, ମୋର ଡାଆଣୀଆଁ ଦେହ ।

ହୋଇଥିବ । ବୁଢ଼ୀ ହେଲେଣି, ଅଧେ ଦାନ୍ତ ଗଲାଣି, ମୁଣ୍ଡବାଳ ଧଳା ହୋଇଆସୁଛି, ତେବେ ବି ସେ ସୁନାଖଣ୍ଡିକା ।

ବୁଢ଼ୀଙ୍କ ମୁହଁକୁ ଚାହିଁଲେ ଆଖି ଲାଖି ରହିବ । କେଡ଼େ ସୁନ୍ଦର ସେ ମୁହଁଟି । ଝିଅ ବାହାହୋଇ ନାତି ନାତୁଣୀ ହେଲେଣି । କୋଡ଼ପୋଛା ଝିଅ ବର୍ଷର ଚୀନାକଣ୍ଢେଇ ପରି ଆବୁଲ୍ ଥାବୁଲ୍ ଝିଅଟି । ତାଙ୍କର ବଡ଼ ନାତୁଣୀଠୁଁ ମାତ୍ର ସାତଦିନ ଛୋଟ ।

ତା ବେଳରେ ବି ମାଲେ ତେଉଁଶିଆ । ସମସ୍ତେ ସେ ଝିଅଟାକୁ ଶ୍ରଦ୍ଧା କରନ୍ତି, ମୁଁ ତ ତାକୁ ଗୁଡ଼ଠରେ ଜାକି ଚପିଚୁପି ପକାଏ । କହେ, ରୁ ମୋ ଟିକି

ମାଉସୀ ! ଘନେ ଘନେ ବୁଢ଼ୀଙ୍କୁ ମୁଁ ମାଉସୀ ବୋଲି ଡାକେ । ସେ ହେଲେ ତାଙ୍କ ନିକଟିଅ ହୁଏ ମୋର ନିଜ ଭଉଣୀ, ତା ନାଁ ଡଲି ।

—ଡଲି ତୁମକୁ କଅଣ ଡାକେ ?

—ସମସ୍ତଙ୍କୁ ସେ ଖୁଡ଼ୀ ଡାକେ ।

—ପିଲାଟା ଠିକ୍ ବୁଝିଛୁ । ତା ମା' ହେବେ ମୋର ସ୍ୱଜନ ! ତାଙ୍କୁ ଉପଲକ୍ଷ୍ୟ କରି ମହାରଥୀବାବୁ ଅନେକ ଭୂତପ୍ରେତ କଥା କହନ୍ତି । ସତ୍ୟାସତ୍ୟ ପରୀକ୍ଷା କରିବାର ଉପାୟ ନ ଥିଲ, ଏଥର ଆମ ବୁଢ଼ୀ ସାଉଜଙ୍କୁ ପଚାରିବ ।

— ଯେତେ ପଚାର, ଉତ୍ତର ପାଇବ ନାହିଁ । ଯେତେ ଚେଷ୍ଟା କର ତାଙ୍କର ମୁହଁ ଦେଖିପାରିବ ନାହିଁ । ମରଦପୁଅ ଦେଖିଲେ ସେ ହାତେ ଓଢ଼ଣା ଟାଣନ୍ତି, ହେଉ ପଛେ ସେ ବଳୋଇ ଛୁଆଟିଏ ।

—ମହାରଥୀଙ୍କ କଥାର ସତ୍ୟତା ଏବେ ଅନୁମାନ କରିପାରୁଛୁ, ଅତସୀ ! ପିଲାଟିଦିନରୁ ଏବଯାଏ ସେ କେତେ ଭୂତପ୍ରେତ, ହାଡ଼ୁବାଇ, ମଶାଣିଚଣ୍ଡୀ ଦେଖିଛନ୍ତି । ସେ ଯାହାସବୁ ବର୍ଣ୍ଣନା କରନ୍ତି, ସତ ବୋଲି ପ୍ରତୀତ ହୁଏ । କଥା ପଡ଼ିଲେ ବିଭିନ୍ନ ସ୍ଥାନରେ ବିଭିନ୍ନ ଲୋକଙ୍କ ଆଗରେ ସେ ସେଇ ସେଇ କଥା କହନ୍ତି । ଭୁଲରେ ବି ସେ ପଦେ ଭୁଲ କରନ୍ତି ନାହିଁ । କହିବାର ଢଙ୍ଗ, ମୁହଁର ଭାବଭଙ୍ଗୀ ଏକାପରି । ପ୍ରଶ୍ନ ପଚାରିଲେ ସେ ଉତ୍ତର ଦିଅନ୍ତି । ତର୍କରେ ପରାଜିତ ହେବାର ସମ୍ଭାବନା ଦେଖିଲେ ସେ ମୁଖ ବିକୃତକରି, ଧମକାଇ ଅନୁରୋଧ ଛଳରେ ପଚାରନ୍ତି, ଦେଖିବାକୁ ଚାହାଁନ୍ତି ? ବେଶ୍, ଦେଖାଇଦେବ ।

ପୁଣି କହନ୍ତି, ଆପଣମାନେ ସାକ୍ଷୀ ରହିଲେ । ମୁଁ ମନ୍ତ୍ରପଢ଼ି ଶ୍ମଶାନରେ ପୂଜା କରିବ । ପ୍ରେତ ଆପଣଙ୍କ ପାଖକୁ ଯିବ, ରାତ ଅଧରେ ଦେଖା କରିବ । ଆପଣ କଥାଭାଷା ହେବେ । ସେ ଯାହା ମାଗିବ, ଦେବେ, ଭୟ କରିବେ ନାହିଁ । ଭୟ କଲେ ସେ ଭୟଙ୍କର ହେବ । ଅନିଷ୍ଟ କରିବ, ବର୍ଷକଯାଏ ସେ ପଛରେ ଗୋଡ଼ାଇବ ।

—ଏକଥା ଶୁଣି ମନ ଦୃଢ଼କରି ଧିରେ ମୁଁ କହିଲି, ମହାରଥୀବାବୁ, ଏଇଥିପାଇଁ କିଏ ଆପଣ ଆମକୁ ଡରାଇ ଆପଣଙ୍କ ଭୂତତତ୍ତ୍ୱର ସତ୍ୟତା ପ୍ରମାଣ କରିବାକୁ ଚାହୁଁଛନ୍ତି ? ବେଶ୍, ମୁଁ ଆପଣଙ୍କର ପରୀକ୍ଷା ନେବାକୁ ପ୍ରସ୍ତୁତ ଅଛି । ସମସ୍ତଙ୍କ ଆଗରେ ମୁଁ ପ୍ରକାଶ କରୁଛି, ହେ ପ୍ରେତପତି, ଯଦି ଆପଣ ମୋ ପାଖକୁ ପ୍ରେତାତ୍ମା ପଠାନ୍ତି, ମୁଁ ଯଦି ଭୟ କରେ ଓ ଯଦି ମୋର କୌଣସି ଅନିଷ୍ଟ ହୁଏ, ସେଥିପାଇଁ ଆପଣ କଦାପି ଦାୟୀ ହେବେ ନାହିଁ, ମୋ କଥା ମୁଁ ବୁଝିବି ।

—ଭୟବିହ୍ୱଳା ଅତସୀ କାନ୍ଦ କାନ୍ଦ ହୋଇ କହିଲା, ନା, ସେକଥା ମୁଁ [illegible]ସଇଦେବି ନାହିଁ । କାଲି ସକାଳେ ମୁଁ ଆଗ ଯାଇ ମହାରଥୀ ବାବୁଙ୍କୁ ବାରଣ କରିଦେଇ ଆସିବି । ଆମକୁ ସେଥିରୁ କ ମିଳିବ ? ଲୋକମାନଙ୍କ କଥାସବୁ କଳ୍ପନା ଓ ମିଛ ବୋଲି ଆମେ କାହିଁକି ଭାବିବା ? ତାଙ୍କ କଥା କାଳେ ସତ ହୋଇଥିବ ? ଜାଣି ଜାଣି ବିପଦକୁ ଆମ ପାଖକୁ ନିମନ୍ତ୍ରଣ କରିବା ନାହିଁ କି ଅନୁତାପ କରିବା ନାହିଁ । ତମକୁ ମୋ ରାଣ ତୁମେ ତାଙ୍କୁ ମନା କରିଦିଅ । ନୋହିଲେ ମୁଁ ନିଜେ ଯିବି ।

ଅତସୀ ଫୁଁ ଫୁଁ ହୋଇ କାନ୍ଦିଲା ।

ଅସିତ ତାର ଡତଲା ଲୁହକୁ ପୋଛିପାଇ ଗେହ୍ଲେଇ କହିଲା —ଛି, ତୁମେ କାନ୍ଦୁଛ ? ତୁମପରି ବୁଦ୍ଧିମତୀ ଓ ଶିକ୍ଷିତା ଝିଅର ମନରେ ଏତେ ଡର ପଶିବା ଉଚିତ ନୁହେଁ, ଶୁଣ ମୋ କଥା ।

ମହାରଥୀ ବାବୁଙ୍କୁ ମୁଁ ସିନା ଉତ୍ତେଜିତ ହୋଇ କହିଦେଲି, ମୋ ମନରେ ଡର ପଶିଲା । କାଳେ ସତ ହୋଇଥିବ, ଏହି ଧାରଣାଟା ସୂତାକଣ୍ଟା ପରି ମନଭିତରେ ଏପାଖ ସେପାଖ ହେଲା । କେହି ସିନା ଜାଣିଲେ ନାହିଁ, ଭିତରେ ଦୁରୁଦୁରୁ ତ୍ରୁ ତତର ହେଲି । କାଳେ ସତ ହୋଇଥିବ, ଏହି ଭାବନା ମନରେ ପଶିବା ସଙ୍ଗେ ସଙ୍ଗେ ତୁମେ, ମୋର ବାପ ମା, ସାନଭାଇ ଅଜିତ, ସମସ୍ତେ ମନେପଡ଼ିଲେ । ସମସ୍ତେ ଯେପରି କହିଉଠିଲେ, ଏପରି ବିପଜ୍ଜନକ ବାଜିକୁ ଗ୍ରହଣ କରିବା ମୋଟେ ଉଚିତ ନୁହେଁ, ଆବଶ୍ୟକ ନୁହେଁ ।

ପିଲାଦିନରୁ ଯେଉଁଠି ଯେତେ ଭୂତ ଗଳ୍ପରେ ପଢ଼ିଛି, ସ୍ୱପ୍ନରେ ଦେଖିଛି, ମସ୍ତିଷ୍କରେ ଭରିଛି, ସମସ୍ତେ ଫଣା ଟେକିଉଠିଲେ । ମନର ଦୃଢ଼ତା ଟଳମଳ ହେଲା । ପଞ୍ଜରସ୍ଥିତ ଗୋପନ ଲଜ୍ଜା ପୁଣି ଅହଂକୁ ଉପହାସ କଲା । ମୋ ଭିତରର 'ମୁଁ' ଚେଙ୍କିହୋଇ ଉଠିଲା ।

କଥା ଉପରେ ଜୋର୍ ଦେଇ ମହାରଥୀ ବାବୁଙ୍କୁ ମୁଁ କହିଲି, ଆପଣଙ୍କର ଚାଲାକି ଏବେ ଜଣାପଡ଼ିଲା । ଅଦେଖା ଘଟଣା ଉପରେ ଆପଣ ପରୋକ୍ଷରେ ଧମକ ଦେବାକୁ ଚାହାନ୍ତି ? ଧମକ ଦେଇ ବାଜିମାତ ଓଗ୍ରାଇବାକୁ ଚାହାନ୍ତି ? ଜାଣନ୍ତି କାଲି, ଜାଣିବାର ହେଲେ ଗୋଟିଏ ବର୍ଷ, ଅର୍ଥାତ୍, ତିନିଶ ପଇଁଷଠି ଦିନ ମଣ୍ଟଶୁଳରେ କଟିଛି ? ମୋର ଓ ମୋ କୁଟୁମ୍ବର କାହାର ଦେହ କେଉଁଠି ଖରାପ ହେଲେ, କଣ୍ଟାଲଗି ଲୁଗା ଚିରିଲେ, ଡାଲି ଲୁଣିଆ ହେଲେ, ଆପଣ କହିବେ, ସେଗୁଡ଼ିକ ଆପଣ ପଠାଇଥିବା ପ୍ରେତର କର୍ମ । ଆପଣ ମଶାଣିକୁ ଯାଇ ଭଷ୍ଟ ସ୍ୱୀକାର ଭୂତ ପ୍ରେତ ନ ପଠାଇଲେ ମଧ୍ୟ ଯଦି କେବେ କେଉଁ ବିପଦ ଆସିବାର କଥା, ଆସିବ । ମଣିଷର ସବୁ ଉଦ୍ୟମ ଓ ସାବଧାନତା ସତ୍ତ୍ୱେ ଅଶୁଭକ ଆପଦ ବିପଦ ଆସେ, ମଣିଷ ପରିସ୍ଥିତିର ଖେଳଣା । ତା'ର ଶୁଭାଶୁଭ ପାଇଁ ସେ ଏକା ଦାୟୀ ନୁହେଁ । ସ୍ଥାନ, କାଳ, ପାତ୍ର ଏମିତି କେତେ ଜଣାଅଜଣା ଘଟଣା, ଯାହା ଉପରେ ତା'ର କର୍ତ୍ତୃତ୍ୱ ନ ଥାଏ, ତାର ଭାଗ୍ୟ ନିୟନ୍ତ୍ରଣ କରେ । ତା'ଉପରେ ଭୂତପ୍ରେତଙ୍କର କି କରାମତି ରହିପାରେ ? ସେଗୁଡ଼ା ତ ମଣିଷ ମନର ଧାରଣା, ଭୟରୁ ଜନମ ।

ମହାରଥୀ ଲଜ୍ଜିତ ହେଲେ । ବାଜି ପକାଇବାକୁ ସେ ଅଡ଼ି ବସିଲେ ନାହିଁ ।

କିନ୍ତୁ ସେ କହିବାକୁ ଲାଗିଲେ ନିଜ ଜୀବନର ଅଭିଜ୍ଞତା କଥା ।

ଶୁଣ ଅତସୀ — ନିଜ ଜୀବନରେ ଭୂତପ୍ରେତଙ୍କୁ ଆଖିରେ ଦେଖିବାକୁ ସେ ଆଗ୍ରହୀ ହେଲେ । ତାଙ୍କ ଅଜା ଥିଲେ ଜଣେ ବିଖ୍ୟାତ ଚଣ୍ଡୀସାଧକ ଓ ହଠଯୋଗୀ । ଏ ସମ୍ବନ୍ଧରେ ସେ ଅନେକ ପୋଥି ରଖିଯାଇଥିଲେ । ସେସବୁ ପୋଥିରେ ଅବୋଧ ଭାଷାରେ ମନ୍ତ୍ର ସବୁ ଲେଖା ହୋଇଥିଲା । କିପରି ଅଭ୍ୟାସ କରି ସାଧନା କଲେ ମନ୍ତ୍ର ସିଦ୍ଧ ହେବ, କାମନା ପୂର୍ଣ୍ଣ ହେବ, ସେ କଥା ମଧ୍ୟ ବର୍ଣ୍ଣନା କରାଯାଇଥିଲା । ତାଙ୍କ ଅଜା ସବୁ ସାଧନା କରିଥିଲେ । ଆବଶ୍ୟକ ହେଲେ ଅର୍ଜିତ ବିଦ୍ୟା ପ୍ରୟୋଗ

କରୁଥିଲେ । ସେଥିପାଇଁ ଲୋକେ ତାଙ୍କୁ ଡରୁଥିଲେ । ସେ ଯାହା କହୁଥିଲେ, ଲୋକେ କରୁଥିଲେ ।

—କଅଣ ସେ କରିପାରୁଥିଲେ ?

—ଯାହା କହିବ ସେଇଆ । ମହାରଥୀ ବାବୁଙ୍କ କହିବାମତେ ତାଙ୍କ ଅଜାଙ୍କର ମନ୍ତ୍ରସାଧନା ସଫଳ ହୋଇଥିଲା । ବସିଥିବା ପୁରୁଷ ବା ସ୍ତ୍ରୀଙ୍କୁ ବାନ୍ଧିଦେଇ ସେ ବସାଇ ରଖୁଥିଲେ । ପିଢ଼ା, ପଜକ, ହେଁସ, ଯେଉଁଠି ବସିଛ ସେଇଠି । ଉଠାଇଲେ ପିଢ଼ା, ପଜକ ସହିତ ଉଠିବ, ଛାଡ଼ିଦେଲେ ପୁଣି ନଥିକରି ବସିପଡ଼ିବ । ମନ୍ତ୍ରପଢ଼ି ବନ୍ଧନମୁକ୍ତ କଲେ ଯାଇଁ ଦେହରୁ ପିଢ଼ା ପଜକ ଖସିବ ।

—ଅଦ୍ଭୁତ ଭୟଙ୍କର କଥା !

—ଆହୁରି ଶୁଣ । ମନ୍ତ୍ରପଢ଼ି ସେ ଗୋଟିଏ ଗାଈର କ୍ଷୀର ହରଣ କରି ଅନ୍ୟ ଗାଈର ପହ୍ନାରେ ସମାନ ପାରୁଥିଲେ । ଦୁଧ ଦହିରୁ ଲହୁଣି ହରଣ କରି ନେଉଥିଲେ, ଏହାପରି ଅନେକ ଉତ୍ପାତ ସେ କରିବାକୁ ଷମ ହେଉଥିଲେ ।

ଅତି ଭୟଙ୍କର କଥା ହେଉଛି ଯେ ସେ ମଶାଣିମାନଙ୍କରେ ପୂଜା କରି ପ୍ରେତମାନଙ୍କୁ ଆୟତ୍ତ କରିଥିଲେ । କାହା ସଙ୍ଗେ କେବେ କୌଣସି କାରଣରୁ ଶତ୍ରୁତା ହେଲେ, କେଉଁ ଦୁଷ୍ଟ ପ୍ରେତକୁ ସେ ତାଙ୍କ ଶତ୍ରୁ ଘରକୁ ଉତ୍ପାତ କରିବାକୁ ପଠାଉଥିଲେ । ପ୍ରେତ ଯାଇ ଉତ୍ପାତ କରେ । ଶତ୍ରୁଘରର ସମସ୍ତେ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି ।

—କଅଣ ସେମାନେ କରନ୍ତି ?

—ଶତ୍ରୁଘରର ଡାଲିହାଣ୍ଡିରେ ମଇଳା, ଭାତହାଣ୍ଡିରେ ଅଙ୍ଗାର, ତେଲରେ ପାଣି, ଲୁଣରେ ବାଲି ମିଶାନ୍ତି । ରାତି ହେଲେ ଘରେ ଢେଲା ପଡ଼େ । ବାସନକୁସନ, ତେଲଘଡ଼ି, ଆସ୍ଵରହାଣ୍ଡି ତା ମନକୁ ଉଠି ଅଗଣାରେପଡ଼ି ଚୂନା ହୋଇଯାଏ । ଘରର ସମସ୍ତେ ଉପାସ ରହନ୍ତି, ଛାନିଆ ହୁଅନ୍ତି ।

ଶତ୍ରୁକୁ ସାଧ୍ୟ କରିବାକୁ ତାଙ୍କ ଅଜା ଆହୁରି କେତେ ବିଦ୍ୟା ଜାଣିଥିଲେ । ସେ ଶ୍ମଶାନରେ ସାଧନାକରି ବୀରପୁରୁଷମାନଙ୍କର ପ୍ରେତାତ୍ମାମାନଙ୍କୁ ଆୟତ୍ତ

କରିଥିଲେ । ଶତ୍ରୁ ପଛରେ ବୀର ପ୍ରେତମାନଙ୍କୁ ଲଗାଇ ଦେଉଥିଲେ । ଏକୁଟିଆ ବାବୁଙ୍କ ପଡ଼ିଲେ ଏଇ ବୀରମାନେ ଶତ୍ରୁକୁ ମସ୍ତକ ଛେଚୁଥିଲେ ।

ସେ ବାଣମରା ମନ୍ତ୍ର ଜାଣିଥିଲେ । ନିଜ ଘରେ ବସି ମନ୍ତ୍ରପଢ଼ି ଅଦୃଶ୍ୟ ବାଣ ଶତ୍ରୁକୁ ମାରୁଥିଲେ, ଶତ୍ରୁ ତା ଘରେ ରକ୍ତବାନ୍ତି କରି ମରୁଥିଲା ।

କେଡ଼େ ଭୟଙ୍କର ଲୋକ ସେ ଥିଲେ ଜାଣ ? ଯେଡ଼େ ସତୀ ସୁଲକ୍ଷଣୀ ନାରୀ ହୋଇଥାଉ, ପରପୁରୁଷ ଆଗରୀ ହୋଇ ମହାରଥୀଙ୍କ ଅଜାଙ୍କ ପାଖରେ ମନକଥା କହିଲେ ସେ ମନ୍ତ୍ରବଳରେ ସତୀକୁ କୁଳଟା କରାଇଥିଲେ ।

ଅତସୀ କହିଲା, ଛି, ଛି, ଏଡ଼େ ମନ୍ଦଲୋକ ସେ ଥିଲେ ? କିନ୍ତୁ, ହିନ୍ଦୁ ପରିବାରରେ ସତୀ ହୋଇଥିବ, ସ୍ୱାମୀ ବିନା ଯାହାର ଅନ୍ୟ ଚିନ୍ତା ନ ଥିବ, ମହାରଥୀ ବାବା ମନ୍ତ୍ର ଘୋଷିଲେ ସତୀର ମନ ଟଳାଇପାରିବ ନାହିଁ ।

ଅସିତ ଉତ୍ତର ଦେଲା, କହିବ ଏକଥା ଆମ ମହାରଥୀ ବାବୁଙ୍କୁ ? ତାଙ୍କର ଅଜା ମଲା ପରେ ବ୍ରହ୍ମଜୀବନରେ ସବୁ ପୋଥି ତାଙ୍କ ହାବୁଡ଼େ ପଡ଼ିଥିଲା । ସେସବୁ ପଠପଢ଼ି ଅଭ୍ୟାସ କରିଥିଲେ, କେତେକ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ ।

ପର ବନିତାକୁ ବଶ କରିବାକୁ ତାଙ୍କର ତିନୋଟି ପଦାର୍ଥ ଲୋଡ଼ା । ଆଶାସ୍ତ୍ରୀ ପ୍ରେମିକକୁ ସେଇ ପଦାର୍ଥ ଯୋଗାଡ଼ କରିବାକୁ ପଡ଼ିବ । ନାରୀର ନଖ, କେଶ ଓ ଲୁଗାକାନି । ଟିକିଏ ଟିକିଏ ହେଲେ ଚଳିବ । ମନ୍ତ୍ରକରି ଅଷ୍ଟଧାତୁରେ ଗଢ଼ା ତେଜିଣିଆ ଭିତରେ ଭରି ସେ ପ୍ରେମିକର ବାହୁରେ ବାନ୍ଧିଦେବେ । ସେ ପୁରୁଷ ଉପରେ ଥରେ ଦୃଷ୍ଟି ପଡ଼ିଲେ ମହାସତୀ ରାଧାବାଇଆଣୀ ହୋଇ ପଛରେ ଧାଇଁବ । ଯଦି ଏହା ନ ହୁଏ, ମହାରଥୀବାବୁ ନିଜ ହାତରେ ନିଜ କାନ କାଟିବେ ବୋଲି କହନ୍ତି, ପରୀକ୍ଷା ଲୋଡ଼ୁଛ, ତାଙ୍କୁ କହିବି ?

ଅତସୀ ଅସ୍ୱସ୍ତି ବୋଧ କଲା । ଭାବିଲା, କଅଣ ଅସମ୍ଭବ ଏ ଦୁନିଆରେ ? ଏହିପରି କେତେ କଥା ସେ ହେରୁ ପାଇଲା ଦିନରୁ ଶୁଣିଛି । କେତେ ମାଇପେ ପୁରୁଷମାନଙ୍କୁ ଔଷଧ କରି ମୂଷାଛୁଆ କରନ୍ତି । ଅନ୍ୟ ପୁରୁଷଙ୍କୁ ଓଷଦ କରି ଚରଣକିଙ୍କର କରନ୍ତି । ଏସବୁ ଅଜାତ କଥା ଯାହା ସେ ଶୁଣିଛି, କେବେ ଭୁଲରେ ମଧ୍ୟ ସ୍ୱାମୀଙ୍କ ଆଗରେ ଖୋଲି ନାହିଁ ।

ଜାଣିଲାର ସ୍ତ୍ରୀମାନେ କହନ୍ତି, ମରଦଗୁଡ଼ା ମାଇପିରଙ୍କ । ତେଣୁ, ଶୁଣିଲା ତଥା ତ ମୁହଁଖୋଲି କହିବ ନାହିଁ, ମନକଥା ମନରେ ରଖିବ । କିନ୍ତୁ ଏଣ ଏମ୍ତେଣୁ ତାଙ୍କ କାନରେ ପଡ଼ିଲେ, ବେଆଡ଼ା ଢଙ୍ଗ ଆଖିକୁ ଦିଶିଲେ, ବାହା'ହେଲା ଘରଣୀକୁ ସେମାନେ ସନ୍ଦେହ କରନ୍ତି, କୋଡ଼ରେ ଅଣ୍ଡେଇ ଦଅନ୍ତି ।

ଅତସୀ କହିଲା, ପରୀକ୍ଷା ମୋର ଲୋଡ଼ା ନାହିଁ ଗୋ । ତୁମେ ତୁମର ପରୀକ୍ଷା କରୁଥା । ଏବେ ବୁଝିଲି, ତୁମର ସେ ମହାରଥୀ ଭଲ ଲୋକ ନୁହନ୍ତି । ଭୂତପ୍ରେତଙ୍କ ସଙ୍ଗେ ବନ୍ଧୁତା କରି ତାଙ୍କ ପ୍ରକୃତି ପ୍ରେତ ପ୍ରକୃତି ପରି ଧ୍ୱଂସକ ଓ ରୂପକୁଜନକ ହୋଇଯାଇଛି । ସ୍ତ୍ରୀଙ୍କ ଦେହରେ ବୋଧେ ଡେଉଁରିଆ ପିନ୍ଧାଇ ତାଙ୍କୁ ଜଗାଇ ଅଗାଇ ରଖିଛନ୍ତି, ହାଲକ ଦ'ହାତ ହେଲା ଦିନରୁ ।

ସେଥିପାଇଁ, ନାତକାରୁଣୀଙ୍କର ଆଇମା ହୋଇ ମଧ୍ୟ ସେ ମୂକ । ପାଟିରେ ତାଲା ପକାଇ ରହନ୍ତି । ସେ ସମସ୍ତଙ୍କ ଘରକଥା ଜାଣନ୍ତି । ତାଙ୍କ ଘରକଥା କାହା ଦ୍ୱାରାଇ ବି ଜାଣନ୍ତି ନାହିଁ । ଖାଲି ମତେ ବୁଢ଼ୀ ସ୍ନେହ କରନ୍ତି ବୋଲି ନିଜ ଘରକଥା ପଦେ ଅଧେ କେବେ ତାଙ୍କ ପାଟିର ଯାଉଁଳ କବାଟ ବାଟେ ପଦାକୁ ବାହାରେ ।

—ତୁମେ ତ ଜାଣିଥିବ ଅତସୀ, ମହାରଥୀ ବାବୁଙ୍କର ତୁମ ବୁଢ଼ୀଆଈ ହେଉଛନ୍ତି ଦ୍ୱିତୀୟ ପକ୍ଷ ?

—ଏଁ ? ମୋତେ ମିଛକହି ଠକୁଛ ?

—ମିଛକହି ପଣଜାଣ ପାଇବାର ଦକ୍ଷତା ଆମ ପୁରୁଷଜା'ତର ଅଛି । ଏହା ଅସ୍ୱୀକାର କରହେବ ନାହିଁ । କିନ୍ତୁ ଅନ୍ୟ କାହାକୁ ଠକଦେବା ସମ୍ଭବ ହେଲେ ବି ଘରର ଘରଣୀକୁ ଠକିବା ସମ୍ଭବ ନୁହେଁ । ଏକଥା ଅତି ଚତୁର ସ୍ୱାମୀ ମଧ୍ୟ ଜାଣେ । କେତେବେଳେ ଅସତର୍କ ଅବସ୍ଥାରେ ସତ କଥା ତୁଣ୍ଡରୁ ଖସେ । ତୁମ ପାଖରେ ମିଛ କହିବାର ସାହସ ମୋର ନାହିଁ ।

ତୁମ ଆଈ, କି ମାଉଁ, କି ମାଉସୀ, ମହାରଥୀଙ୍କର ଦ୍ୱିତୀୟ ପକ୍ଷ ବୋଲି ସେ ନିଜେ କହନ୍ତି । ଉତ୍କଳର ଜନନୀଙ୍କର ସେ ମଧ୍ୟ ଦ୍ୱିତୀୟ ପକ୍ଷ । ଏହା ସେ ନିଜେ

ପ୍ରକାଶ କରୁଛନ୍ତି । ଥରେ ନୁହେଁ, ପଚିଶି ଥର । ତାଙ୍କ କୁଳରେ ଏଇପ୍ରଥା ପ୍ରଚଳିତ । ତେଣୁ ଏହା ପ୍ରକାଶ କରିବାରେ ଲଜ୍ଜା, ସଂକୋଚ, ଅପମାନ, ଅସମ୍ମାନ ନାହିଁ । ଏପ୍ରଥା ଅତି ଉନ୍ନତ, ପୁଣି ସଭ୍ୟଜମାନଙ୍କର ବୈଶିଷ୍ଟ୍ୟ । ପଣ୍ଡିତମାନେ ଏହା ପ୍ରଚାର କଲେଣି ।

—ହୁଁ ! ତେବେ କଣ ଆପଣଙ୍କର ପ୍ରଥମ ପକ୍ଷ ଅଜାଙ୍କର ପ୍ରଥମ ପକ୍ଷଙ୍କର ନଖ, ବାଳ, ଲୁଗାପଟା ଯୋଗାଡ଼ କରି ଡେଉଁରିଆରେ ଭରି ହାତରେ ସିଝିଥିଲେ ?

—ନା ଅଜାଣି, ଘଟଣାଟି ସେପରି ଘଟିବ ନାହିଁ । ମହାରଥୀଙ୍କ କହିବା ମତେ, ବିଧାତାଙ୍କ ପଂଚଭୂତ ଅର୍ଥାତ୍, ପ୍ରଜାପତିଙ୍କର ଟିକିଏ ଅନ୍ୟମନସ୍କତା ପାଇଁ ମସ୍ତବଡ଼ ଭୁଲ ଘଟିଗଲା । ଯେ ଯାହାର ନୁହେଁ, ତା ସଙ୍ଗେ ଯୋଡ଼ି ହୋଇଗଲା । ସେ କଥା ପ୍ରଜାପତି ପରେ ବୁଝିଲେ । ଅନ୍ୟାୟକୁ ସୁଧାରିନେବାକୁ ହେବ ତ ! କରିବେ କଣ ? ନେଡ଼ିଗୁଡ଼ ତାଙ୍କର କହୁଣିକୁ ବୋହି ଯାଇଥିଲା । ବାଧ୍ୟ ହୋଇ କଳ୍ପାନ୍ତ ଯମରାଜାଙ୍କର ସହାୟତା ଲୋଡ଼ିଲେ । ସେ ଭୁଲ ସୁଧାରି ଦେଲେ । ତେଣୁ ହେଉ ପଛେ, ପୁଣି ଯେ ଯାହାର ସେ ତାହାର ହେଲା । ଯମରାଜାଙ୍କୁ ମଧ୍ୟ ପ୍ରେତ ପ୍ରେତନୀଙ୍କର ସାହାଯ୍ୟ ନେବାକୁ ପଡ଼ିଲା ।

ମହାରଥୀଙ୍କୁ ମୁଁ ପ୍ରେତପତି ବୋଲି ଡାକେ । ସେ କେବେ ଅଭିଯୋଗ ପାଆନ୍ତି ନାହିଁ, ଖୁସି ହୁଅନ୍ତି । ଇଂରେଜ ଅମଳରେ ଇଂରେଜ ସରକାରଙ୍କୁ ସନ୍ତୁଷ୍ଟ କରୁଥିବା ଲୋକମାନଙ୍କୁ ରାୟସାହେବ, ରାୟବାହାଦୂର ପଦବୀମାନ ଅର୍ପଣ କରାଯାଉଥିଲା, ସେହିପରି ପ୍ରେତପତି ଗୋଟାଏ ପଦବୀ ।

ମହାରଥୀ ପ୍ରେତାତ୍ମାମାନଙ୍କୁ ସବୁବେଳେ ଖୁସ୍ ରଖିବାକୁ ଚେଷ୍ଟା କରନ୍ତି । ସେମାନଙ୍କର ପ୍ରଶସ୍ତି ଗାନକରନ୍ତି । ସେମାନଙ୍କର ଶକ୍ତି ଉପରେ ବିଶ୍ୱାସ ରଖିବାକୁ ସେ ପ୍ରକାରାନ୍ତରରେ ପ୍ରବର୍ତ୍ତାନ୍ତି, ତାର କାରଣ ସବୁ ବୁଝାଇ ଦିଅନ୍ତି ।

ପ୍ରେତପତି କହନ୍ତି, ପବନ ଅଛି, ବିଜୁଳିଶକ୍ତି ଅଛି, ମଣିଷ ଭିତରେ ମନ ବୋଲି କଅଣ ଗୋଟିଏ ବିରାଟ ଶକ୍ତି ଅଛି, ଏହା ଆପଣମାନେ ଜାଣନ୍ତି ।

ଆଖିରେ ଦେଖିପାରନ୍ତି ନାହିଁ । କିନ୍ତୁ ଅନୁଭବ କରନ୍ତି । ସେହିପରି, ପ୍ରେତମାନଙ୍କୁ ଆପଣମାନଙ୍କ ପରି ପ୍ରେତବଦ୍ୟ ରେ ଅଶିକ୍ଷିତ ଲୋକ ଦେଖିବେ କପରି ? ସେମାନଙ୍କର କ୍ରିୟାକଳାପ ଆପଣମାନେ ପ୍ରତ୍ୟକ୍ଷ ଅନୁଭବ କରୁଛନ୍ତି । ତଥାପି, ଜାଣି ଜାଣି ଅନ୍ଧ ହୋଇ, ସେମାନେ କାହାନ୍ତି ବୋଲି କହିଲେ ଦୋଷ ଆପଣମାନଙ୍କର, ପ୍ରେତମାନଙ୍କର ନୁହଁ ।

ମୁଁ ପଚ୍ଚରିଲି, ସେମାନଙ୍କର ଉପସ୍ଥିତି ଓ ପ୍ରଭାବ ଆମେ ସବୁଦିନେ ଅନୁଭବ କରୁଛୁଁ, ଏହା ଆପଣ କପରି ଜାଣିଲେ ? ଆପଣ ଯାହା ଅନୁଭବ କରୁଛନ୍ତି ସେ କଥା କହନ୍ତୁ ।

ପ୍ରେତପତି କହିଲେ, ମୁଁ କେବଳ ଅନୁଭବ କରୁନାହିଁ । ମୁଁ ସେମାନଙ୍କୁ ପିଲଦିନୁ ଦେଖିଆସିଛି । ଏବେ ବି ଦେଖୁଛି, ଆପଣମାନେ ଅନୁଭବ କରୁଛନ୍ତି । ବାଟରେ ଗୁଡ଼ଖାଇବାକୁ ଝୁଣ୍ଟି ପଡ଼ିବା, ପାଣି ପିଇବା ତଣ୍ଟିରେ ଲାଗିବା, ସିଗାରେଟ୍ ପିଇବା ପ୍ୟାଣ୍ଟ ପୋଡ଼ିବା, ଖିଅର ହେଉଣ ଓଠ କାଟିବା, ଘରଣୀମାନଙ୍କ ସଙ୍ଗେ କଳିଆ କରିବା, ପିଲାଙ୍କୁ ମାରିବା', ପରୀକ୍ଷାରେ ଫେଲ୍, ବ୍ୟବସାୟରେ ଚିତ୍‌ପଟାଙ୍ଗ୍, ଚାକିରିରେ ପ୍ରମୋସନ୍ ନ ପାଇବା ଏସବୁ ଦୁଷ୍ଟ ପ୍ରେତଙ୍କର ଚକାନ୍ତର ଫଳ ।

ସେମାନେ ଆପଣମାନଙ୍କ ପାଖେ ପାଖେ ଥାଇ ସୁଯୋଗ ପାଇଲେ ଆପଣମାନଙ୍କ ହାତ ଧରି ଅବାଟକୁ ନିଅନ୍ତି । ମନରେ ପଶି ଅକଥା କରାଇ ଅନିଷ୍ଟ କରନ୍ତି । ଯେଉଁମାନେ ଭକ୍ତ, ଦେବାଦେବୀଙ୍କୁ ସ୍ମରଣ କରନ୍ତି, ତାଙ୍କର ପୂଜା କରନ୍ତି, ତାଙ୍କୁ ପ୍ରାର୍ଥନା କରନ୍ତି, ଦୁଷ୍ଟ ପ୍ରେତମାନେ ସେମାନଙ୍କ ପାଖରୁ ଦୂରେଇ ରହନ୍ତି, ଅନିଷ୍ଟ କରିବାକୁ ସାହସ କରନ୍ତି ନାହିଁ ।

ପ୍ରେତପତି ଚଣ୍ଡୀପୂଜା କରନ୍ତି, ଅଡସୀ ! ତାଙ୍କ କପାଳରେ ଲମ୍ବାଲମ୍ବିଆ ସିନ୍ଦୂର ଟିକା । ବିଶ୍ୱାସ ଓ ଭକ୍ତିରେ ଯାହାଙ୍କୁ ପୂଜିବ, ଯାହାଙ୍କୁ ପ୍ରାର୍ଥନା କରିବ, ସେଇ ତମର ଭଗବାନ । ପ୍ରେତପତିଙ୍କ ମତରେ, ଭଗବାନ ସବୁଠାରେ ସବୁ ରୂପରେ ଅଛନ୍ତି । ଯେଉଁ ରୂପ ଧ୍ୟାଇ ଭକ୍ତିରେ ପୂଜା-ପ୍ରାର୍ଥନା କଲେ ସେ ମନକାମନା ପୂର୍ଣ୍ଣ କରିବେ । ଭୂତପ୍ରେତ ପାଖରେ ପଶିବେ ନାହିଁ । ଅନିଷ୍ଟ କରିବେ ନାହିଁ ।

ଅତସୀ କହିଲା, ମୁଁ ଦୁର୍ଗାଙ୍କର ପୂଜା କଲି । ଲୁଗା ପାଲଟି ବାଁ ଭାଗରେ ମାଛ କାଟି ବସିଲି । ପୁଷ୍ପାଶଙ୍କୁ ଲୁଣ ଆଣିବାକୁ ଦୋକାନକୁ ପଠାଇଲି । ସେ କହିଲା, ମା, ଚୁଲି ଉପରେ ଡାଲିହାଣ୍ଡି ବସିଛି, ଦେଖୁଥିବ । ମାଛ କାଟୁଁ କାଟୁଁ ମୋ ଆଙ୍ଗୁଠିରେ ପଣିକ ଧାର ଲାଗି ରକ୍ତ ବାହାରିଲା । ପୋଡ଼ା ଗନ୍ଧ ନାକରେ ବାଜିବାରୁ ରୋଷଘରକୁ ଉଠିଯାଇ ଦେଖେ ତ ହଠାତ୍ ଡାଲି ଲାଗିଯାଇଛି । କ୍ଷୀର ଡେକ୍‌ଚିର ଘୋଡ଼ଣୀ ଖସାଇ କାହାର ଭୂଆବଲେଇ ସବୁ ଚାଟିଚୁଟି ଖାଇ ଚାଲି ଗଲା ଲୁଚି ପଳାଇଲା ଏସବୁ କଅଣ ଦୁଷ୍ଟ ପ୍ରେତମାନଙ୍କର କାମ ?

—ପ୍ରେତପଣ୍ଡାଙ୍କ କଥାରେ ବିଶ୍ୱାସ କଲ ପରି ତୁମେ କହୁଛ କି ? ନା ଅତସୀ, ଅବିଶ୍ୱାସ କର ନା । ସାହାବାଣୀ ପ୍ରେତ ତୁମର ହାତ କଟାଇଲା । ସେ ମଶାଣିଚଣ୍ଡୀ ହୋଇଥାଇପାରେ । ସେମାନଙ୍କର ମାଛରେ ଶ୍ରଦ୍ଧା ବୋଲି ଲୋକେ କହନ୍ତି । ଖାନସାମାର ପ୍ରେତାତ୍ମା ଡାଲି ପୋଡ଼ାଇଲା । ବେଶୀ ଖାନା ରାନ୍ଧିବାର ଅଭ୍ୟାସ ତା'ର ନ ଥିଲା । ସେ ରାନ୍ଧୁଥିଲା କୁକୁଡ଼ା, ଛେଳି, ମିଣ୍ଢା କି ଗୋରୁମାଂସ । ଡାଲିସିଝା ଦେଖି ତାକୁ କଷ୍ଟସୃଷ୍ଟ ବିରକ୍ତ ଲାଗିଥିବ । ଭୂଆବଲେଇ ରୂପରେ କଳେ ସାହେବର ପ୍ରେତ ଆସିଥିଲା ।

—ମୁଁ ସେ ବଲେଇଟାକୁ କେତେଥର ଦେଖିଛି ମ ! ଥରେ ତା ଉପରକୁ ଗୁଣ୍ଠୁଣୀ ପକାଇଲି । ଗୁଣ୍ଠୁଣୀ ତ ବାଜିଲା ନାହିଁ, ମୋ ହାତ ତଳେ ପିଟି ହେଲା । ଦୁ'ପଟ କାଚ ଭାଙ୍ଗିଲା ।

—ପ୍ରେତର ଉପସ୍ଥିତି ତଥାପି ବୁଝିପାରିଲ ନାହିଁ, ଅତସୀ ? ଭୂଆବଲେଇଟା ଯାହାର ପାଳ ଭାବ ହେଉ, ସାହେବର ପ୍ରେତ ତା ଉପରେ ସବାର ହୋଇ ଆସେ । ଘୋଡ଼ାଚଢ଼ି ଏ ଘର ଭିତରେ କାରବାର ହେବା ସମ୍ଭବ ନୁହେଁ । ଏହା ଯେ ଜାଣେ । ଦିନବେଳେ ପ୍ରେତମାନେ ସାଧାରଣତଃ ଆଖିକି ଦିଶନ୍ତି ନାହିଁ । ତା ବୋଲି ଯେ ସେମାନେ ନ ଆସନ୍ତି, ଏପରି ମନେ କରିବା ଠିକ୍ ନୁହେଁ । ଉପାସ୍ଥ କଲେ ରାତିରେ ସେମାନେ ଦିଶନ୍ତି । ମଶାଣିମାନଙ୍କରେ ପଲ ପଲ ହୋଇ ସେମାନେ ବୁଲନ୍ତି । ମହାରଥୀ, ଅର୍ଥାତ୍ ପ୍ରେତପଣ୍ଡା ଗୁରୁଜୀବନରେ ପ୍ରଥମେ ସେମାନଙ୍କୁ ଦେଖିଲେ ।

ଅଜାଙ୍କର ମରଣ ପରେ ତାଙ୍କର ତାଳପତ୍ର ପୋଥିସବୁ ପଢ଼ି ଉମାସ୍ତ ଜାଣିଲେ । ତାଙ୍କ କପାଳକୁ କେଉଁଠୁ ଆସି ଜଣେ ଚଣ୍ଡୀ ସାଧକ ବାବାଙ୍କ ତାଙ୍କୁ ଜୁଟିଗଲେ । ତାଙ୍କୁ କାପାଳିକ କହନ୍ତି । ପ୍ରେତପତି ତାଙ୍କର ଭକ୍ତ ହେଲେ । ପଇସା ମାଆଙ୍କ ପେଡ଼ିରୁ ବାହାର କରି କାପାଳିକଙ୍କୁ ମଦ, ମାଂସ, ଗଞ୍ଜେଇ ଖୋଇଲେ । ନିଜେ ପ୍ରସାଦ ସେବନ କରନ୍ତି ନାହିଁ ବୋଲି କହନ୍ତି; କିନ୍ତୁ ଗୁରୁଦେବଙ୍କର ପ୍ରସାଦ ସେ ସେ ଗ୍ରହଣ ନ ଥିଲେ, ଏପରି ବିଶ୍ୱାସ କରିବାକୁ ମନର ଜୋର ଲୋଡ଼ା ।

ଘଡ଼ି ନକ୍ଷତ୍ର ଦେଖି ଅମାବାସ୍ୟା ରାତିରେ ସେ କାପାଳିକ ସଙ୍ଗେ ଶ୍ମଶାନକୁ ଯାଆନ୍ତି । କାପାଳିକ ମନ୍ତ୍ର ପଢ଼ି ପୂଜା କରନ୍ତି । ପ୍ରେତପତି ତାଙ୍କ ପାଖରେ ବସି ଏକ ଚକ୍ଷୁରେ ଚାହିଁ ରହିଥାନ୍ତି । କେତେବେଳେ ପ୍ରେତାତ୍ମାମାନେ ଆସିବେ, ସେ ଦେଖି ଚକ୍ଷୁ ଓ କର୍ଣ୍ଣର ବିବାଦ ମେଣ୍ଟାଇବେ । କାଳେ ସେ ଡରିବେ ବୋଲି କାପାଳିକ ତାଙ୍କର ଦେହକୁ ଜଳାଇଥାନ୍ତି । ତାଙ୍କ ଚାରିପାଖେ ମନ୍ତ୍ର ପଢ଼ି ଗାର ଟାଣିଥାନ୍ତି; କାରଣ ବିକଟାଳ ରୂପ ଧରି ପ୍ରେତମାନେ ଆସିଲେ ପ୍ରେତପତି ଡରି ପ୍ରାଣ ବିକଳରେ ଗାର ଡେଇଁ ପଳାଇ ପାରିବେ ନାହିଁ । ପୁଣି, ପ୍ରେତମାନଙ୍କ ମଧ୍ୟରୁ କେହି ଦୁଷ୍ଟ ପ୍ରେତ ପ୍ରେତପତିଙ୍କର ଅନିଷ୍ଟ କରିବାକୁ ଧାଇଁଗଲେ ବାରଣଗାର ଡେଇଁ ଆସିଲେ ପାରିବ ନାହିଁ, କେଉଁ ପ୍ରେତ କି ପ୍ରକୃତିର ନିଜେ କାପାଳିକ ଜାଣନ୍ତି କି ନା ।

ଅଡଯୀ ପଗ୍ଚରିଲ, ରଦ, ମୁଁ ପଗ୍ଚରୁଛି, ମହାବୀର ଲକ୍ଷ୍ମଣଙ୍କୁ କଣ କାପାଳିକ-ବିଦ୍ୟା ଓ ମନ୍ତ୍ର ଜଣାଥିଲା ? ମହାସତୀ ସୀତା ତାଙ୍କୁ କୁତ୍ସିତ ଉପାରେ ତିରସ୍କାର କରି ଭଗବାନ୍ ଶ୍ରୀ ରାମଚନ୍ଦ୍ରଙ୍କୁ ଖୋଜିବାକୁ ପଠାଇଲାବେଳେ ଲକ୍ଷ୍ମଣ ପଞ୍ଚବଟୀର କୁଟୀର ଆଗରେ ତିନିଟି ଗାର ଟାଣିଦେଇ ଗଲେ କିପରି ? ସନ୍ନ୍ୟାସୀ ବେଶରେ ରାବଣ ଆସିଲା । ସେହି ଗାର ଡେଇଁ କୁଟୀର ଭିତରକୁ ଯାଇ ସୀତାଙ୍କୁ ଟାଣିଆଣି ପାରିଲା ନାହିଁ । ସୀତା ଯଦି ନିଜେ ଗାର ଡେଇଁ ଆର ପାଖକୁ ଯାଇ ନ ଥାନ୍ତେ ରାବଣର ସବୁ ପରାକ୍ରମ ବ୍ୟର୍ଥ ହୋଇଥାନ୍ତା ।

ଅଡଯୀର କଥା ଶୁଣି ଅସିତ ନୀରବ ହେଲା । କିଅଶ ଚିନ୍ତା କରି କହିଲା, ତୁମର କଥା ନିଶ୍ଚୟ ସତ୍ୟ । ଲକ୍ଷ୍ମଣଙ୍କୁ ସେ ମନ୍ତ୍ର ଅବଶ୍ୟ ଜଣାଥିଲା । ମୋ ମନରେ ଗୋଟାଏ ସନ୍ଦେହ ଆସୁଛି । ଆମ ଆର୍ଯ୍ୟାବର୍ତ୍ତରେ କୋପଦୃଷ୍ଟିରେ ଭସ୍ମକଲା ମୁନି,

ମନ୍ତ୍ରକୁ ଚକ୍ରକଳ ବାଡ଼ିଆ ରଖି, ଏପୁର ଓ ସେପୁର କଥା କହୁ ସମ୍ମାନ ଲଭୁବା ମହାତ୍ମାମାନେ, ଏହା କର ତାହା ନ କର ଉପଦେଶ ଦେଲ ମହାପୁରୁଷେ, ମନ୍ତ୍ରଙ୍କ ଗୁହ୍ୟୋପୁଷମାନେ ଥାଉଣୁ ଆଉ କଥଣ କାହାକୁ ସେଇ ସର୍ବଶକ୍ତିସମ୍ପନ୍ନ ମନ୍ତ୍ର ଜଣା ନ ଥିଲ ? ମୁସଲମାନ ଓ ଇଂରେଜମାନେ ଆର୍ଯ୍ୟାବର୍ତ୍ତ ଭିତରକୁ ମାଡ଼ିଆସିବା ପୂର୍ବରୁ ଆର୍ଯ୍ୟାବର୍ତ୍ତ ସୀମାରେ ଏହିପରି ଚଉକୋଟି ଗାର ସେମାନେ ଟାଣିଦେଇଥିଲେ ଶତ୍ରୁମାନେ ହସ୍ତସ୍ତ ଗାର ଆରପାଖେ ଅଟକ ରହିଯାଆନ୍ତେ । ଏମାନେ, ସନ୍ନ୍ୟାସୀମାନେ ଓ କାପାଳିକମାନେ ସେତେବେଳେ ରହିଲେ କେଉଁଠି ? ଦେଶ ଛାରଖାର ହେଲ । ଦେଶ ଖଣ୍ଡ ଖଣ୍ଡ ହେଲ । ଆର୍ଯ୍ୟାବର୍ତ୍ତ ଭାରତର ସୀମା ବାହାରକୁ ଗଲ । କାହିଁକି ଏପରି ହେଲ, ଏ ପ୍ରଶ୍ନର ଉତ୍ତର ଦେଇପାରିବ କି ଅରସି ?

—ମୁଁ ସେ ମାଇପି ଲୋକ । ଘର କଣରେ ରହେ, ପୁରାଣ ପଢ଼େ । ମୁଁ ଏତେ ଗହନ କଥାର ଉତ୍ତର ଦେଇପାରିବି ନାହିଁ । ମୁଁ ଭାବୁଛି ଗାରକଟା ମନ୍ତ୍ର ଏକା ଲକ୍ଷ୍ମଣଙ୍କୁ ଜଣାଥିଲ । ସେତେବେଳେ ଅଜାଣତରେ ତାଙ୍କ ତୁଣ୍ଡରୁ କାହା ଆଗରେ ବାହାରି ପଡ଼ିଥିବ । ସେଇଠୁ ଗୁପ୍ତରେ ଗୁପ୍ତରେ ପ୍ରକାଶ ପାଇ ସେଇ କାପାଳିକଙ୍କ ପାଖକୁ ଆସିଥିବ ।

—ତୁମ କଥା ମନକୁ ପାଉଛି. ଅରସି, ! ଯେତପରି ସବୁ କାପାଳିକଙ୍କ ମାନଙ୍କୁ ବାରଗୋର ମନ୍ତ୍ରଟି ଶିଖିପାରିଥାନ୍ତେ, ଦେଶର କଲ୍ୟାଣସାଧନ କରିଥାନ୍ତେ । ଶତ୍ରୁଭୟ ନ ଥାନ୍ତା । ଆଉ ଗୋଟାଏ ଅନ୍ୟ ଉପକାର ହୋଇଥାନ୍ତା । ଘରଣୀ ବାଣକାଣୀ ଶିଖିଥିବା ପୁରୁଷ ବଶକାରକ ଗଦର ଟ୍ୟାବ୍‌ଲେଟ୍ ଯେପରି ଅରଣା ସ୍ୱାମୀମାନଙ୍କୁ ବାଟକୁ ଆଣି ସୁଧାର ଶିଶୁ କରିବାକୁ ଷମ, ଯେହିପରି କାପାଳିକଙ୍କ ବାରଗୋର ମନ୍ତ୍ର ତହିଁରେ ଘରଣୀମାନଙ୍କୁ ଭଲ ସାଧ୍ୟ କରନ୍ତା । ସ୍ୱାମୀମାନେ ବାଟଠଣ ଗଲେ, ଟୁରରେ ଗଲେ, କି ସେମାନଙ୍କ କାମ ଉପରକୁ ଚଲେ ଯିବା ଆଗରୁ ଘର ଦୁଆରପାଖେ ଗୋଟାଏ ଗାର ପକାଇ ଯାଆନ୍ତେ, ନିରାପଦ ।

ଆରସୀ ଭାବିଲ, ଏଥର ସେ ଅଭିମାନ କରିବ ! ଅସିତ କେବେ ଏକା ଗସ୍ତରେ ଗଲେ ତାକୁ ଟିକେ ବେଳ ମିଳେ । ସେଉଁ ମାଇପେ ତା ଘରକୁ ବୁଲି ଆସିଥାନ୍ତି, ସେମାନଙ୍କ ସଙ୍ଗେ କଥାଭାଷା ହେବାକୁ ଅନ୍ୟ ସାଙ୍ଗମାନଙ୍କ ସଙ୍ଗରେ

ସେ ଭୁଲିଯାଏ । କେତେଥର ସ୍ୱାମୀ ଦ'ପହରେ ଗସ୍ତରୁ ଫେରି ତାକୁ ଘରେ ଅନୁପସ୍ଥିତ ଦେଖିଛନ୍ତି । ଖବର ପାଇ ଅଭାଗୀ ଅସ୍ତବ୍ୟସ୍ତ ହୋଇ ଫେରିଆସିଲେ ସ୍ୱାମୀ ତାକୁ ଦେଖି ହସ ହସ ହୋଇ ଗେଲ କରନ୍ତି । ତାଙ୍କ ଗେଲ ଭିତରେ ଅସ୍ନେହ, ଅସମର୍ଥନ ଓ ସନ୍ଦେହ ଲୁଚି ରହୁଥାଏ କି ? ଏବେ ସେଇ ଘଟଣାକୁ ଉପଲକ୍ଷ୍ୟ ଦେଇ ଛଳେଇ କହୁଛନ୍ତି ?

ସ୍ୱାମୀଙ୍କର କଥା କାନରେ ବାଜିଲା ।

ଅମାବାସ୍ୟାର କଟିକଟି ଅନ୍ଧାର ରାତି । ସବୁ ପ୍ରକାର ଭୟର ସମାବେଶ ସ୍ଥାନ ସେହି ମଶାଣି । ଅନ୍ଧାର ଆଖିସହା ହେବାରୁ ପ୍ରେତପଥ ମହାରଥୀଙ୍କ ଆଖିକୁ ତାଙ୍କ ଚାରିପାଖର ସବୁ ଝାପ୍ସା ଦିଶେ । ଗଛ, ବୁଦା, ଦରପୋଡ଼ା କାଠ, ମଶାଣିର ପାଉଁଶ ଗଦା ଏଠିସେଠି ପଡ଼ିଥିବା ଜଳଜଳା ହାଣ୍ଡିକୁଣ୍ଡେଇ ।

ପାଖ ଓ ଦୂରର ବିଭିନ୍ନ ପ୍ରକାର ଶବଦ କାନରେ ପଡ଼େ । ନିଶାଚର ପଶୁ-ପକ୍ଷୀ ଧାଇଁଗଲେ ଏ ଗଛରୁ ସେ ଗଛକୁ ଉଡ଼ିଗଲେ, ସତର ବର୍ଷର ସ୍କୁଲ୍‌ପିଲା ପ୍ରେତପଥ ମହାରଥୀଙ୍କ ଛାତି ଦାଉଁ ଦାଉଁ ପଡ଼େ ଉଠେ । କଣବେ କଣ ? ତାଙ୍କ ପାଖରେ କାପାଳିକ ପଦ୍ମାସନ ପକାଇ ବସିଛନ୍ତି । ଅବୋଧ ଭାଷାରେ ମନ୍ତ୍ର ଉଚାରୁଛନ୍ତି । ପ୍ରେତପଥଙ୍କ ଚାରିପାଖେ ବାରଣଗାର ପଡ଼ିଛି । ପଳାଇବାକୁ ମନ କନକନ ହେଉଛି, ଉଠିପାରୁ ନାହାନ୍ତି ।

ଗୋଟିକ ପରେ ଗୋଟିଏ ଏପରି ଛଅଟି ମଶାଣିରେ କାପାଳିକଙ୍କ ସଙ୍ଗେ ଛଅଟି ଅମାବାସ୍ୟା ତାଙ୍କର କଟିଲା ଅଭାଗୀ, ଛଅ ମାସ କଟିଲା, ବର୍ଷା ଓ ଶୀତ । ପ୍ରେତପଥ ଯେଉଁ ଦୃଶ୍ୟମାନ ବର୍ଣ୍ଣନା କରନ୍ତି, ଶୁଣିଲାବେଳେ ଛାତି ଥରଥର ହୋଇ କମ୍ପେ । ମୁହଁରେ ବର୍ଣ୍ଣନା କରିବାକୁ ମୋର ସାହସ ହେଉ ନାହିଁ । ଅବଶ୍ୟ ସେ ନିଜେ କୌଣସି ପ୍ରେତାତ୍ମା ଦେଖିଲେ ନାହିଁ । କାପାଳିକଙ୍କ ପାଟିରୁ ସେମାନଙ୍କର ଭୟଙ୍କର ବର୍ଣ୍ଣନାମାନ ଶୁଣିଲେ ।

ଦେହ ଓ ମନ ସେଇ ସବୁ ବର୍ଣ୍ଣିତ କାଳ୍ପନିକ ଘଟଣାରେ ଜଡ଼ିତ ହେଲା । ଅଶିକ୍ଷିତ ଦେଶର ସବୁ କିମ୍ଭୂତକିମାକାର ଦୃଶ୍ୟ ଆସି ତାଙ୍କର ସ୍ଥୂଳଦେହ ଓ ତରଳ

ତରୁଣ ମନରେ ଠୁଳ ହେଲା । ପ୍ରେତାତ୍ମାମାନଙ୍କର ଶକ୍ତି ଓ କର୍ମପଥର ଧାରଣାରେ ତାଙ୍କର ଭାବନା ଜୁଡ଼ୁବୁଡ଼ୁ ହେଲା । ପଞ୍ଚମ ମଶାଣିରେ ରାତ କଟାଇଲା ପରେ ସେ ଆଉ ନିଜର ହୋଇ ରହିଲେ ନାହିଁ । ମନେହେଲା, ସ୍ଥୂଳଦେହ ଧରି ସେ ପ୍ରେତରାଜ୍ୟରେ ଯାତାୟାତ ହେଉଛନ୍ତି । ଯାହାକୁ ଛୁଇଁଲେ ତାର ସ୍ଥୂଳଦେହକୁ ସେ ଦେଖିପାରୁ ନାହାନ୍ତି । ଦେଖୁଛନ୍ତି ତାର ପ୍ରେତଦେହ । କେବଳ ମଣିଷ ନୁହେଁ, ପଶୁପକ୍ଷୀ, କୀଟପତଙ୍ଗ, ଘରଦ୍ୱାର ।

ଯାହା ସେ ଅନୁଭବ କରନ୍ତି, କାପାଳିକଙ୍କ ପାଖରେ ବର୍ଣ୍ଣନା କରନ୍ତି । କାପାଳିକ ସନ୍ତୁଷ୍ଟ ହୁଅନ୍ତି । ଅନ୍ଧାରିଆ ସନ୍ଧ୍ୟାରେ ପ୍ରେତଦେବଙ୍କର ଦେହ ମୁଣ୍ଡ ଆଉଁସି ଦିଅନ୍ତି । ହାତଟିକୁ କଟମଟ କରି ଧରନ୍ତି, କହନ୍ତି, ତୁ ଧନ୍ୟ । କେତେ ସାଧସାଧନା କରି ବହୁବର୍ଷ ପରେ ମୁଁ ଯାହା ପାଇପାରି ନ ଥିଲି, ତୋର ନିଷ୍ଠା ଓ ଗୁରୁଙ୍କ ପ୍ରତି ଅଚଳା ଭକ୍ତି ପାଇଁ ତୁ ଏତେ ଶୀଘ୍ର ଅକ୍ଳେଶରେ ପାଇପାରିଲୁ ।

ସେମାନଙ୍କୁ ତୁ ସବୁଦିନେ ଦେଖିପାରୁଛୁ । ଯାହା ତୁ ଦେଖୁଛୁ ଓ ସ୍ୱପ୍ନ ବୋଲି ମଣୁଛୁ, ସବୁ ସତ୍ୟ । ନିଦ୍ରାବସ୍ଥାରେ ତୋର ପ୍ରେତାତ୍ମା ତୋ ଦେହରୁ ବାହାରିଯାଏ । ପ୍ରେତଲୋକରେ ବୁଲେ, ସବୁ ଅମୋକ୍ଷ ପ୍ରେତଙ୍କୁ ଦେଖେ । ସେମାନଙ୍କ ସଙ୍ଗେ ବୁଲେ, କଥାଭାଷା ହୁଏ; ପୁଣି ନିଜ ଦେହକୁ ଫେରିଆସେ । ଷଷ୍ଠ ମଶାଣିରେ ତୁ ସେମାନଙ୍କର କଥାଭାଷା ଶୁଣିବୁ । ସପ୍ତମ ମଶାଣିରେ ସେମାନଙ୍କୁ ତୋର ସ୍ଥୂଳ ଆଖିରେ ଦେଖିପାରିବୁ । ସେଇଠି ତୋର ସିଦ୍ଧି ହେବ । ଆଉ କି ଚିନ୍ତା ?

ପ୍ରେତପଥ ପରଶିଲେ, ସିଦ୍ଧି ହେଲେ ମୁଁ କଅଣ କରିପାରିବି ଗୁରୁଦେବ ? କି ଲାଭ ହେବ ?

କାପାଳିକ ମୁଣ୍ଡ ଆଉଁସି ପିଠି ଥାପୁଡ଼ି କହିଲେ, ତୁ ଯାହା କହିବୁ ପ୍ରେତମାନଙ୍କୁ କହିଲେ ସେମାନେ ତୋପାଇଁ ସବୁ କରିଦେବେ । ଶତ୍ରୁ ଦମନ, ଅର୍ଥଲାଭ, ଏକ ମୁହୂର୍ତ୍ତରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗମନ, ନିଜର ଦେହକୁ ଛାଡ଼ି ଅନ୍ୟ ଦେହର ଆତ୍ମାକୁ କିଛି ସମୟ ପାଇଁ ତଡ଼ି ତା ଦେହରେ ପ୍ରବେଶ କରି ଆବଶ୍ୟକ ସ୍ଥଳେ ନିଜର କାର୍ଯ୍ୟ ସାଧନ, ଇଚ୍ଛାମତେ ଅନ୍ୟ ନାରୀର ଆତ୍ମାକୁ ଅସ୍ଥାୟୀ ଭାବରେ

ତା ଦେହରୁ ଆଣି ନିଜ ନାରୀ ଦେହରେ ସ୍ଥାପନ ଇତ୍ୟାଦି । ପ୍ରେତାତ୍ମାମାନଙ୍କୁ ଆୟତ୍ତ କଲେ ଭୂ ନ କଶପାଶରୁ ଏପରି ବିଷୟ କରୁ ନାହିଁ ।

ଅତ୍ୟଧିକ ଭୟ ଅତସୀ ମନର ଅନ୍ଧମାନଙ୍କୁ କେତେବେଳରୁ ଚଢ଼ି ଯାଇଲାଣି । ନିଜ ଅଜାଣତରେ ସେ ତାର କମ୍ପିଲ ହାତଗୋଡ଼ରେ ଧୀରେ ଧୀରେ ଅସିତଙ୍କୁ ବାନ୍ଧି ପକାଇଲାଣି ।

ଅସିତ କହିବାକୁ ଲାଗିଲା, ପ୍ରେତପତି ସନ୍ନ୍ୟାସୀର କଥାରେ ବିଶ୍ୱାସ କଲେ । ତାଙ୍କର ଭକ୍ତି ଆହୁରି ବଢ଼ିବାକୁ ଲାଗିଲା । ସେ ସନ୍ନ୍ୟାସୀ କାପାଳିକଙ୍କ ସଙ୍ଗରେ ଅମାବାସ୍ୟା ରାତିରେ ପାସ୍ତ ମଶାଣିରେ ଉପସ୍ଥିତ ହେଲେ । କାପାଳିକ ଅଗ୍ନି ଘୀରଣଗାର ମଧ୍ୟରେ ପ୍ରେତପତିଙ୍କୁ ରଖିଲେ । ପଦ୍ମାସନରେ ବସିବାକୁ ଉପଦେଶ ଦେଲେ, ନିଜେ ସେ ଯୋଗରେ ବସିଲେ ।

ରାତି ଅଧ ହେଲା । ପ୍ରେତପତିଙ୍କର ଭୟ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ତାଙ୍କୁ ବୋଧହେଲା, ସତେ କି ସେ ନିଜ ଭିତରେ ନାହାନ୍ତି । ଦେହରୁ ବାହାରି ଦୂରରେ ଠିଆ ହୋଇଛନ୍ତି । ନିଜର ଦେହ ଓ କାପାଳିକଙ୍କ ଦେହକୁ ଦେଖି ପାରୁଛନ୍ତି । କାନରେ ବାଜୁଛି କେତେ ପ୍ରକାର ଶବଦ । ପ୍ରେତାତ୍ମାମାନଙ୍କର ହୋଇଥିବ ! ବିକଟାଳ ହସ, କରୁଣ କାନ୍ଦଣା, ପରସ୍ପର ମଧ୍ୟରେ ଖୁଣ ଖେଳିବ, ଦଉଡ଼ା ଦଉଡ଼ି, କଏ କାହାକୁ ନିର୍ଦ୍ଦୟ ଭାବରେ ମାରିବାର ଶବ୍ଦ, କଥାଭାଷା, ଗୀତ ଓ ନାଚ ।

ପ୍ରେତପତି ସବୁ ଅନୁଭବ କରୁଛନ୍ତି । ମନେହେଉଛି, ଯେପରି ଶହ ଶହ ପ୍ରେତ ତାଙ୍କର ଚାରିପାଖେ ଗଦା ହୋଇଛନ୍ତି । କିନ୍ତୁ ସେ କାହାରିକୁ ଦେଖିପାରୁ ନାହାନ୍ତି, ତାଙ୍କର ଚାରିପାଖରେ ତ ଅନ୍ଧାରର ଅଭେଦ୍ୟ ପ୍ରାଚୀର ।

କାପାଳିକ ପ୍ରେତପତିଙ୍କ ଦେହରେ ହସ୍ତ ସ୍ଥାପନ କଲେ । ସହସା ତାଙ୍କର ପ୍ରେତାତ୍ମାଟି ବାହାରୁ ଆସି ବିଜୁଳି ବେଗରେ ତାଙ୍କ ଶରୀର ମଧ୍ୟରେ ପ୍ରବେଶ କଲା । ସେ ଚମକି ଉଠିଲେ, ତାଙ୍କର ମୋହନିଦ୍ରା ଭାଙ୍ଗିଲା ।

ଅନ୍ଧାର ପାତଳ ହୋଇ ଆସିଲାଣି । ରାତିର ଶେଷ ପ୍ରହର । ଟଳଟଳ ଘରକୁ ଫେରିଲେ ।

ବାପ ମାଆଙ୍କର ତାଡ଼ନା ସହିବାକୁ ହେଲା ।

ଶେଷ ପରୀକ୍ଷାର ଫଳ ବାହାରିଲା । ପାଠ ନ ପଢ଼ି ପରୀକ୍ଷା ଦେଇଥିଲେ । ସମସ୍ତେ ଭାବିଥିଲେ ପ୍ରେତପତି ନିଶ୍ଚୟ ଫେଲ୍ ହେବେ । ସେ ପାସ୍ କରିବା ଜାଣି ଗ୍ରାମଲୋକେ ଓ ବାପ ମା ବାବାଜୀଙ୍କ ଗୁଣ ବୁଝିଲେ । କିନ୍ତୁ, ବାବାଜୀ ଅର୍ଥାତ୍ କାପାଳିକ ଗ୍ରାମରୁ କୁଆଡ଼େ ଉଭେଇଗଲେ । ପ୍ରେତପତି ବାଇଆ ବାଉଳା ପରି ତାଙ୍କୁ ଖୋଜିଲେ । କେତେ ଗଡ଼ ଏ ମଶାଣି ସେ ମଶାଣି ବୁଲିଲେ । କାପାଳିକଙ୍କ ଦେଖା ମିଳିଲା ନାହିଁ ।

ତାଙ୍କର ଉଦାସିଆ ପଣ ଦେଖି ବାପା-ମା ଚିନ୍ତିତ ହୋଇପଡ଼ିଲେ । ଭାବିଲେ, ପିଲାଟାକୁ ବାନ୍ଧି ନ ପକାଇଲେ ସେ ଘର ଛାଡ଼ି ପଳାଇପାରେ । ସେଥିପାଇଁ ସ୍ନେହମୟୀ ଜନନୀ ଅଧିକ ପାଠ ପଢ଼ିବାର ପ୍ରସ୍ତାବକୁ ନାକଚ କରିଦେଲେ । କହିଲେ, ଆଉ ପାଠ ଲୋଡ଼ା ନାହିଁ । ପୁଅ ଘରକାମ କରୁ । ଯାହା ସମ୍ପତ୍ତି ଅଛି କରିଯାଇଥିଲେ, ବାପେ ତହିଁରୁ ଧନ ମାଣ ଗମେଇଛନ୍ତି, କିନ୍ତୁ କ ଶୋଏ କମେଇ ନାହାନ୍ତି । ପାଠୁଆ ପୁଅ ସମ୍ପତ୍ତି କଥା ବୁଝିଲେ ମାଣକ ସେରେ କରିପାରିବ ।

ସୁନାନାକୀ, ଓଢ଼ଣିଢାଙ୍କିଲି, ଚଉଦ ପୂରି ପନ୍ଦର ଚାଲିଥିବା ଭଲ ଘରର ଝିଅଟିଏ ଆଣି ପ୍ରେତପତିଙ୍କ ହାତରେ ଛନ୍ଦିଦେଲେ । ଝିଅଟିକୁ ସମସ୍ତେ ଭଲ ପାଇଲେ । ରୂପ ଯେପରି ସୁନ୍ଦର, ଗୁଣ ବି ସେହିପରି । ମହାରଥୀଙ୍କ ପାଖରେ ଠିଆ ହୋଇଥିଲେ ଯିଏ କହିବ ଭାଇ ଭଉଣୀ । ମହାରଥୀ ଘର କାମରେ ଯୋଗଦେଲେ । ମଶାଣିକୁ ରାତିରେ ଯିବାର ଖୋଜ ଛାଡ଼ିଲେ ସିନା, ଅଜାଙ୍କ ପୋଥିପତ୍ରା କାମ ଛାଡ଼ିଲେ ନାହିଁ ।

ଦୁର୍ଯୋଗ କଥା କି ସୁଯୋଗ କଥା ତୁମେ ବିଚାର କରିବ, ଅଚାନକ ଦିନେ ପାଖ ଗ୍ରାମର ଉପକଣ୍ଠରେ ପ୍ରେତପତିଙ୍କର କାପାଳିକଙ୍କ ସାଙ୍ଗରେ ଦେଖା ହୋଇଗଲା । ବେଳ ରତରତ ହେଉଥାଏ । ସେଦିନ ବି ଅମାବାସ୍ୟା ବର୍ଷାଘର ସାତ ମାସ ପୂରିଯାଇଥାଏ । ଗ୍ରାମଆଡ଼େ ବସନ୍ତ ଲାଗିଥାଏ ଯେ ଠାକୁରାଣୀ-ମାନେ ପଦୋପାଣି ମାନୁ ନ ଥାନ୍ତି । ଗାଁମାନଙ୍କରୁ ବେଳେ ବେଳେ ଜଣେ ଦୁ'ଜଣଙ୍କୁ ଓଟାରି ନେଉଥାନ୍ତି ।

ସେଇ ଗ୍ରାମରେ ସେଦିନ ଗୋଟାଏ ମର୍ଡର କେସ୍ ହୋଇଥାଏ । ମା ବସନ୍ତେଇ ଠାକୁରାଣୀ ଗୋଟିଏ ନିରୀହା ନବବିବାହିତା ବୋହୂର ବେକମୋଡ଼ି ପ୍ରାଣ ଶୋଷିଦେଇଥାନ୍ତି । ନିର୍ଦ୍ଦୋଷ ଝିଅଟିଏ ସେ । ତାର କି ଅପରାଧ ଥାଇପାରେ ?

ମୋଟାସୋଟା ମାଉଁସିଆ ଗୋଲଗାଲିଆ ଖାସିଟିଏ ପରି ସେ ଝିଅଟି ଥିଲା । ଡାଆଣିଆ ଖରାବେଳେ ଏକା ଯାଇଥିଲା ବାଗଆଡ଼କୁ । ଠାକୁରାଣୀଙ୍କ ଦୃଷ୍ଟି ପଡ଼ିଲା ପରା ! ସେ ନେଇଗଲେ । କଂସେଇମାନେ ସେପରି ଜନ୍ତୁ ମାରଲେ ମର୍ଡର ହୁଏ ନାହିଁ, ଠାକୁରାଣୀମାନେ ମଣିଷଙ୍କର ଜୀବନ ନେଲେ ସେଥିକୁ ଆଇନ ନାହିଁ, ବିଚାର ମଧ୍ୟ ନାହିଁ । ତେଣୁ...

ଅତସୀ ଅସିତର ଦେହ ଉପରୁ ହାତ ଉଠାଇ ତାର ପାଟିକୁ ଜାବୁଡ଼ି ଧରିଲା । କହିଲା, ତୁମେ ଠାକୁରାଣୀମାନଙ୍କ ନାମରେ ନିନ୍ଦାକର ନାହିଁ । ତୁମକୁ ମୋ ରାଣ, ସେମାନେ ସବୁଠି ଥାଆନ୍ତି । କାଳେ କାନରେ ବାଜିବ ? ମହାରଥୀଙ୍କ କଥା କହ ପଛେ ମୁଁ ଶୁଣିବି ।

ଅତସୀ ମୁହଁରୁ ହାତ ଖସାଇ ଅତି ଧୀରେ ଅସିତର କାନମୋଡ଼ି ତା ଦେହରେ ଟିକିଏ ଚୁପ ପକାଇଦେଲା । ସଳଖ ହୋଇ ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଇ ଧୀର ସ୍ୱରରେ କହିଲା, ମାଆ ଗୋ, ନେହୁରା ହେଉଛି, କଣ ତାଙ୍କ ପାଟିରୁ ଖସିଗଲା, ସେଥିପାଇଁ କ୍ଷମାକର ।

ଅସିତ କହିଲା, ଦେଖ, ମୁଁ କେବଳ ଘଟଣା କହୁଛି । କାହାରି ନିନ୍ଦା ପ୍ରଶଂସା ମୁଁ କରୁନାହିଁ । କିଏ କେଉଁଠି ଅଛନ୍ତି ନ ଅଛି ମୋର ସେ ବିଷୟରେ ଧାରଣା ନାହିଁ, ଯା ହା ଶୁଣିଛି କହୁଛି । ପିଲାଦିନେ ପାଠ ପଢ଼ିଲାବେଳେ ମୋ କାନ ମୋ ଗୁରୁଦେବମାନେ ଧରି ନ ଥିଲେ । ଏତିକି ବାକି ରହିଯାଇଥିଲା । ହଁ, ମନେପଡ଼ିଲା ଥରେ କାନ ପାଚିଥିଲା ଯେ ଡାକ୍ତର କାନଧରି ପରୀକ୍ଷା କରିଥିଲେ । ତୁମେ ଆଜି ଦୁଇଥର ମୋ କାନ ମୋଡ଼ିଲଣି, ମୁଁ ନ ରାଗି ରହିଛି କିପରି ?

ଅତସୀ କହିଲା, ମୁଁ ଦୋଷ କରିନାହିଁ । ଏପରି କାନମୋଡ଼ି ଠିକ୍‌ବେଳରେ ଚେତାଇ ଦିଆଯାଏ, ସେଥିପାଇଁ ତୁମେ ଯେଉଁ ଦଣ୍ଡଦେବ ମୁଁ ସହିବି ।

—ସେ ତ ଭିନ୍ନେ କଥା । ଲୋକେ ଶୁଣିଲେ କହିବେ, ଅସିଦ୍ଧ ମାଇଗ୍ର, ମାଇପିପୋଲ ଇତ୍ୟାଦି । ମୁଁ ଏପରି କଥା ସହିପାରିବି ନାହିଁ । କ'ଣ କରିବି କହ ।

—ଲୋକେ କପରି ଜାଣିବେ ?

—ସତେ ତ, ଏଠି ଆଉ କେହି ନାହିଁ । ତେବେ ମୁଁ ଜଣେ ତ ଅଛି ! କେଜାଣି, ମୁଁ ନ ହୋଇ ଆଉ କାହାର ପ୍ରେତାତ୍ମା ଆସି ଯଦି ମୋ ଭିତରେ ପଶିଥିବ ?

—ମତେ ଡରାଉଛ, ନା ? ମୋ ଭିତରେ ସେମିତି ଆଉ କେଉଁ ଝିଅ ବୋହୂର ପ୍ରେତାତ୍ମା ଆଣି ତୁମେ ରଖିଛ କି ? ମୁଁ ଦି'ଥର ତୁମର କାନ କୁଣ୍ଢିଛି । ତୁମେ ଶହେ ଥର ମୋର କାନ ମୋଡ଼, ତୁମ ମାଇଗ୍ରପଣିଆ ଭାଙ୍ଗିଯିବ ।

—କାନମୋଡ଼ିବି ନାହିଁ ନାକ ମୋଡ଼ିବି ।

—ଆଃ, ଅଲଜୁକ ! କହ ମ, ତୁମ ପ୍ରେତପତିଙ୍କ କଥା କାପାଳିକ କଣ କଲା ?

ବୋହୂଟି ଶୋଇପଡ଼ିଲା ପରେ ପ୍ରେତପତି ଧୀରେ ଧୀରେ ତା ପାଖରୁ ଉଠିଆସିଲେ । ଯାଉଁଳ କବାଟ ଭଲକରି ଆଉଜାଇ ନେଲେ, ପଦାକୁ ଆସିଲେ । ଘୋର ଅନ୍ଧାର । ଅତି ସାହାସିଆ ଲୋକର ବୁକି ବଣା ଛୁଟି ଚମକିବ । କିନ୍ତୁ, ପ୍ରେତପତିଙ୍କ ମନରେ ଶଙ୍କା ନାହିଁ, ତୁଣ୍ଡରେ ମନ୍ତ୍ର ।

କାପାଳିକ ତାଙ୍କୁ ବାଇ କରିଛି । କହିଛି, ଆଜି ତାଙ୍କର ସପ୍ତମ ମଶାଣିରେ କର୍ମସିଦ୍ଧି ହେବ । ସେ ଅମୋକ୍ଷ ପ୍ରେତମାନଙ୍କୁ ଦେଖିପାରିବେ । ମରିଯାଇଥିବା ଚିହ୍ନା ଲୋକଙ୍କୁ ଚିହ୍ନିପାରିବେ । ପ୍ରେତପତିଙ୍କର ଆଗ୍ରହର ସୀମା ନାହିଁ । ସେ ଆଜି ତାଙ୍କର ମହାପରିବଜମୀ ଅଜାକୁ ଦେଖିବାକୁ ବ୍ୟଗ୍ର ।

ନିର୍ଦ୍ଦିଷ୍ଟ ସ୍ଥାନରେ କାପାଳିକ ଅପେକ୍ଷା କରି ରହିଥିଲା । ଉଭେଁ ମିରବରେ ଶ୍ମଶାନରେ ପହଞ୍ଚିଲେ । ବହନ୍ତ ସ୍ରୋତରେ ଆଗରୁ ମରିଥିବା ଦୁଇଜଣଙ୍କର ଷତଦେହର

କସ୍ତୂରୀ ଶ ଭଗ୍ନାବଶେଷ ହୋଇ ପଡ଼ିଥିଲା । ନିଶାଚରମାନେ ହେଗୁଡ଼ିକ ଝଣାଝଣି କରି ଖାଉଥିଲେ । ଅନ୍ଧାରରେ ବେଣ୍ ବାରି ହେଉଥିଲା । ସଦ୍ୟମୃତା ବୋହୂଟିର ଫୁ ଦେହଟା ବରଗଛ ମୂଳେ ଅକ୍ଷତ ହୋଇ ପଡ଼ିଥିଲା । ବିଲୁଆ, କୁକୁର ସେଇ ଶବଟାକୁ ଜଗି ରହିଥିଲେ । କାପାଳିକର ଆଦେଶ ମାନି ଶବଟିକୁ ସେମାନେ ସ୍ପର୍ଶ କରି ନ ଥିଲେ ।

କାପାଳିକର ଆଦେଶ ମାନି ପ୍ରେତପତି ଶବଟିକୁ ଚିତ୍କରି ଶୁଆଇବାରେ କାପାଳିକକୁ ସାହାଯ୍ୟ କଲେ । ଶୀତଳ ଶବର ସ୍ପର୍ଶରେ ସାରା ଦେହରେ ଚୋଟାଏ ଶୀତୁଳିଆ ପ୍ରବାହ ଖେଳିଗଲା । ପୁଷ୍ୟମାସର ସକାଳୁଆ ଶୀତରେ ସାରାଦେହ ଥରିଲା ପରି ପ୍ରେତପତିଙ୍କ ଦେହ କେଉଁ ଅଜଣା ଭୟରେ ଥରିବାକୁ ଲାଗିଲା । ଦାନ୍ତକୁ ଦାନ୍ତ ବାଜିଲା । ମନ୍ତ୍ର ପଢ଼ି ଭୟ ଓ ଦୁର୍ବଳତାକୁ ମନରୁ ଯେତେ ତଡ଼ିବାକୁ ଚେଷ୍ଟା କଲେ, ହେଲା ନାହିଁ । ମୂର୍ଚ୍ଛାଳିଆ ଲାଗୁଥାଏ, ମୁଣ୍ଡ ବୁଲାଉଥାଏ । ଭାବନା ଶକ୍ତି ଲୋପ ହୋଇ ଆସୁଥାଏ ।

କାପାଳିକ କହିଲେ, ଭୟ ନାହିଁ ! ଶବ ଉପରେ ହାତ ରଖି ଆସନ କରି ପାଖରେ ବସ । ଆଗକୁ ଅନାଅଁ । ଘୃଣା କର ନାହିଁ । ଏଇ ଦେହଟାରୁ ପ୍ରେତାତ୍ମା ବାହାରିଗଲା ପରେ ଏହା ମାଟି ପଥରଠାରୁ ହୀନ । ହଁ, ସେହିପରି ବସ । ଆଗକୁ କେବଳ ଚାହିଁ ରହିଥାଅ, ସେମାନେ ଆସିବେ, ତୁମେ ନିଜ ଆଖିରେ ଦେଖିବ ।

ଥରି ଥରି ପ୍ରେତପତି କାପାଳିକର ବଚନ ମାନିଲେ । ଶବର ଗୋଡ଼ରେ ହାତ ପକାଇ ନିକଟରେ ବସିଲେ । ନିଜେ କାପାଳିକ ଉଲଗ୍ନ ଶବର ଛାତି ଉପରେ ପଦ୍ମାସନରେ ବସି କରି ଭୁହ୍ନ୍‌ଭୁହ୍ନ୍ ହୋଇ ମନ୍ତ୍ର ପଢ଼ିବାକୁ ଲାଗିଲେ ।

ପ୍ରେତପତିଙ୍କର ଦେହରୁ ପ୍ରାଣ ଛାଡ଼ିଲା ପରି ଲାଗିଲା । ଶବର ଶୀତଳ ସ୍ପର୍ଶ ତାଙ୍କର ସାରା ଶରୀର ଓ ମନକୁ ଶୀତଳ କଲା । ଦେହ ନିଷ୍ପନ୍ଦ ହେଲା । କୌଣସି ସ୍ପର୍ଶର ଅନୁଭୂତିଜ୍ଞାନ ରହିଲା ନାହିଁ । ଜିହ୍ୱା ନୁହେଁ, ମନର କେଉଁ ଅଜଣା କୋଣରେ ତାଙ୍କର ଅବଚେତନ ଅସ୍ତିତ୍ୱ କେବଳ ଦୁର୍ଗାନାମ ସ୍ମରଣ କରୁଥାଏ । ସେ ଆଗକୁ ଚାହିଁ ରହିଥାନ୍ତି । ଦେହରେ ଲାଗିଥିବା ଚକ୍ଷୁ ଦୁଇଟି ଜଳଜଳ କରି ଚାହିଁ ରହିଥାଏ । ଦୃଷ୍ଟିଶକ୍ତି ହରାଇ ବସିଥାଏ, କିଛି ଦିଶୁ ନ ଥାଏ । ମଶାଣିଭୂଇଁର ବିଭିନ୍ନ ଶବଦ କାନରେ ପଶି ମଧ୍ୟ ତାଙ୍କୁ କିଛି ଶୁଭୁ ନ ଥାଏ ।

କାପାଳିକର ମନ୍ତ୍ର ବନ୍ଦ ହେଲାଣି ।

କେତେ ସମୟ ପ୍ରେତପତି ଏପରି ଅବସ୍ଥାରେ ମୋହଗ୍ରସ୍ତ ହୋଇ ବସିଲେ, ସେ ଜାଣନ୍ତି ନାହିଁ । ଧୀରେ ଧୀରେ ଆଗ ତାଙ୍କର ଶ୍ରବଣଶକ୍ତି ଫେରିଆସିଲା । ସେ ଶୁଣିବାକୁ ପାଇଲେ କେତେ ମଣିଷ ମଶାଣିଭୂଇଁରେ ଜମା ହୋଇ କଥାବାର୍ତ୍ତା ହେଉଛନ୍ତି । ହସ, କାନ୍ଦ, ବିକଟାଳ ରଡ଼ି, ଶିଶୁର କାନ୍ଦଣା, ମାଇପି ଲୋକର ଗର୍ଜ୍ଜନ, ପୁରୁଷଙ୍କର ରେ-ରେ କାର, ପିଟାପିଟି ଶବଦ, କଥାବାର୍ତ୍ତା । କିଛି ସ୍ପଷ୍ଟ ନୁହେଁ ସବୁ ମିଶାମିଶି, ସବୁ ଶୁଣୁଛୁ, କିଛି ବୁଝିହେଉ ନାହିଁ ।

ଡର ନା ଅତସୀ ! ମୁଁ ପ୍ରେତପତି ମହାରଥୀ ଅର୍ଥାତ୍ ତୁମର ମଉନାବଣା, ଉର୍ମ୍ମିର ଆମାଳନୀ, ଶ୍ରୀମତୀ ଉର୍ମ୍ମିର ଜନନୀ, ଆଉ ବୁଢ଼ୀଙ୍କର ସ୍ୱାମୀଙ୍କର ଅନୁଭୂତ କଥା ବର୍ଣ୍ଣନା କରୁଛି । ସେ ଯେପରି କହୁଥିଲେ, ମୁଁ ଠିକ୍ ସେହିପରି କହିବାକୁ ଚେଷ୍ଟା କରୁଛି । କଥା ମାଙ୍କିଲେ ମୋଟ. ଏହା ତୁମକୁ ଜଣା । କହୁ କହୁ ଭାଷା କିଛିଏ ବଦଳୁଥିବ । ସେଥିକି ଚିନ୍ତା କର ନାହିଁ, ଡର ନାହିଁ । ନିଜ ଦେହର ଆଠଣା ଓଜନ ମୋ ଉପରେ ଲଦିଦେଲେ ମୁଁ ଆଉ କହିପାରିବି ନାହିଁ । ଷୋଳଣା ଓଜନ ଲଦିଦେଲେ ତୁମେ ହେବ କାପାଳିକ ଆଉ ମୁଁ ହେବି···

—ଏ ବୁଢ଼ା କି ଅଲକ୍ଷଣା କଥା କହୁଛି ? ଆଉଥରେ କାନଆଡ଼କୁ ହାତ ବଢ଼ାଇବ କି ? ଡର କଥା ତୁମେ କହୁଛ, ମୁଁ କଣ ଜାଣି ଜାଣି ପଶୁଆସିଲି, କହୁଛ ? କେବେ ଯେପରି ମତେ ଠେଲି ଠେଲି ଆଣିଲ ଜାଣିପାରିଲି ନାହିଁ । ଯିଏ ଯୋଗ ସମ୍ପନ୍ନ, ତାଙ୍କର ଦେହରେ ଲୀନ ହୋଇ ସବୁ ଡର ଭୟ ଆଡ଼େଇ ଦେବାକୁ ମନ ସଙ୍ଗେ ଦେହ ଟାଣି ହୋଇ ଆସିଲି ।

—ଭଲ ହେଲା, ଦୂରେଇ ଯାଅ ନାହିଁ । ଡର ନାହିଁ । ଇଏ ପ୍ରେତପତିଙ୍କ ଶ୍ମଶାନ ନୁହେଁ । ଇଏ ଫୁଲବାଣୀର ବଡ଼ ଅଫିସରଙ୍କ କୋଠି । ଏଠି କାପାଳିକ ନାହିଁ, ଉଲଗ୍ନ ନାରୀର ଶବ ନାହିଁ । ସେସବୁ ଥିଲା ପ୍ରେତପତିଙ୍କର ଆଗରେ, ପଞ୍ଚାବନି ଶ ବର୍ଷ ତଳେ ।

ପ୍ରେତପତି ସବୁ ଶବଦ ଶୁଣିପାରୁଥିଲେ । କିଛି ଦେଖିପାରୁ ନ ଥିଲେ । ସହସା ତାଆର ଦିବ୍ୟଦୃଷ୍ଟି ଖୋଲିଗଲା । ସେ ପ୍ରେତମାନଙ୍କୁ ଦେଖିବାକୁ ପାଇଲେ ।

ଶବଦ ଶୁଭୁଛି, ଶ୍ରେଷ୍ଠ ବଡ଼ ଆକାର ଗୁଡ଼ିଏ ଦିଶୁଛି । ସେହି ମୁହଁ ଦାଗହେଉ ନାହିଁ । ସ୍ତ୍ରୀ ପୁରୁଷ ଜାଣି ହେଉ ନାହାନ୍ତି । ମଶାଣିର ବୃକ୍ଷଆଡ଼େ ଘୂରି ବୁଲୁଛନ୍ତି । ନାଚ କରୁଛନ୍ତି । ଗଣିହେଉ ନାହାନ୍ତି, ଚିହ୍ନି ହେଉନାହିଁ । ମନର ଭୟଭ୍ରାନ୍ତି ଦୂର ହେଲାଣି, ସେମାନେ ଅନିଷ୍ଟ କରୁନାହାନ୍ତି ।

ପ୍ରେତପଡ଼ଙ୍କର ଦିବ୍ୟଦୃଷ୍ଟି ଖୋଜିବାକୁ ଲାଗିଲା, ଅଜା କାହାନ୍ତି ? ମନରେ ପ୍ରଶ୍ନ ଉଠିବା ସଙ୍ଗେ ସଙ୍ଗେ ଗୋଟିଏ ଛାୟାମୂର୍ତ୍ତି ଆଗକୁ ଆସିଲା । ହାତ, ଗୋଡ଼, ମୁହଁ ବାଗ ହେଉନାହିଁ । ମନରେ ପ୍ରଶ୍ନ, ତୁମେ ମୋର ଅଜା ?

—ହଁ. ମୁଁ ଦିନେ ସେଇଆ ଥିଲି, କଣ ଚାହଁ ?

—ମୁଁ ତୁମକୁ ଚାହେଁ ।

—ପ୍ରେତମୂର୍ତ୍ତି ହସିଉଠିଲା । କହିଲା, ତୁମେମାନେ ମୋତେ ଚାହଁ ନାହିଁ । ଦେହ ଛାଡ଼ି ଚାଲିଆସିବା ପରେ କେତେ ବର୍ଷଯାଏ ମୁଁ ତୁମମାନଙ୍କ ପାଖକୁ ଯାଇଛି । ଜଣ ଜଣ କରି ସମସ୍ତଙ୍କ ଆଗରେ ଠିଆ ହୋଇଛି । କେହି ଚିହ୍ନିଲେ ନାହିଁ । ତୁମକୁ ଜଣ ଜଣ କରି କେତେ କଥା କହିଛି । କେହି ଶୁଣିଲେ ନାହିଁ । ତୋ ମା, ଯିଏ ମୋର ଏତେ ଗେଲବସର ବୋହୂ ଥିଲା, ଦି ଚାରି ଥର ସେ ମୋତେ ମୋ ଶୋଉଥିବା ଘରେ ମୁହୂର୍ତ୍ତେ କରି ଦେଖି ଭୟରେ ପଳାଇଛି ।

ଆରେ, ଭୟ କାହିଁକି ? ମୁଁ ତୁମର ଅନିଷ୍ଟ କରିବାକୁ ଯାଇ ନ ଥିଲି । ନିଜ ଘରକୁ ମୁଁ ନିଜେ ଯାଇଥିଲି । ଗୁଣିଆ ଡକାଇ ମତେ ଘର ବାରଣ କଲ । ଦଣ୍ଡା ପିଟାଇଲ । ସେସବୁ ମୁଁ ମାନି ନ ଥାନ୍ତି । ଯେତେ ଉପାୟରେ ଧନସମ୍ପତ୍ତି ତୁମମାନଙ୍କ ପାଇଁ କରିଆସିଥିଲି, ତୁମେ ସବୁ ଅପବ୍ୟୟ କରୁଛ । ବାରଣ କରିବାକୁ ଯାଇଥିଲି । ଘରୁ ତଡ଼ିଲ, ଆଉ ମୁଁ ଯାଇ ନାହିଁ, ଯିବି ନାହିଁ ।

—ତୁମକୁ ମୁଁ ଭଲପାଏ, ଅଜା !

ପ୍ରେତାତ୍ମା ହସିବାକୁ ଲାଗିଲା !

କାହାର ହାତର ପରଶ ମୋ କପାଳରେ ଲାଗିଲା । ଚହିଁକି ଉଠିଲି । ବାବୁମାନେ, ଶବ ଉପରୁ ମୋ ହାତ ଖସିଗଲା । ପ୍ରେତପଲ ଉଭେଇ ଗଲେ ।

ନେବେଦ ଶୃଙ୍ଖଳ: କିନ୍ତୁ ପ୍ରେତଙ୍କର ନୁହେଁ, ମଶାଣିରେ ବିଚରଣ କରୁଥିବା ନିଶାଚରଙ୍କର ।

କାପାଳିକ ଶବ ଉପରୁ ଆସି ପ୍ରେତପତିଙ୍କର ହାତ ଧରି ଉଠାଇଲେ । ତାଙ୍କୁ ମଶାଣିରୁ ଫେରାଇଲେ । ରାତି ଶେଷ ହୋଇ ନ ଥାଏ । ବାଟ ସାରି ପ୍ରେତପତି ଘରମୁହାଁ ହୋଇ ଛୁଟିଲେ । ସବୁ ତାଙ୍କୁ ସ୍ୱପ୍ନ ପରି ଲାଗୁଥାଏ । ସତ୍ୟ କେବଳ ଏତିକି ଯେ ସେ ତାଙ୍କର ଯୁବତୀ ପତ୍ନୀଙ୍କୁ ଏକା ଛାଡ଼ି ଆସିଛନ୍ତି । ଭାବିଥିଲେ, ସେ ନିଘୋଡ଼ ନିଦରେ ଅଚେତନ ହୋଇଥିବେ ।

ଘରେ ପଶି ସେ ପଲଙ୍କ ଉପରେ ହାତ ମାରିଲେ, ସ୍ତ୍ରୀ ନାହାନ୍ତି ।

ନାମଧରି ଡାକିଲେ, ଉତ୍ତର ମିଳୁନାହିଁ । ଛାତି ଥର ଥର କମ୍ପିବାକୁ ଲାଗିଲା । ଅଗଣାକୁ ଆସିଲେ । ଦୁଆରେ କଅଣ ପଡ଼ିଥିବାର ଦେଖି ସେ ପାଖକୁ ଚଲେ । ହାତମାରି ଜାଣିଲେ, ସେଇ ଅଚଳ ବସ୍ତୁଟି ତାଙ୍କର ସ୍ତ୍ରୀ, ସେ ସଂଜ୍ଞାହୀନା ।

ଅକୁଳ ହୋଇ ସେ ପାଟିକରି ଉଠିଲେ ।

ଅତଏବ ଅଧିରତାର ସନ୍ଧାନ ପଚାରିଲ, ତାଙ୍କର କଅଣ ହୋଇଥିଲା ? କାହିଁକି ପଦାରେ ମୂର୍ଚ୍ଛା ହୋଇ ପଡ଼ିଥିଲେ ? ଭଲ ହେଲେ ତ ?

ଅସିତ କହିଲ, ତାଙ୍କର ମୂର୍ଚ୍ଛା ଆଉ ଭାଙ୍ଗିଲା ନାହିଁ । ପ୍ରେତପତି ପ୍ରକୃତ ଘଟଣାଟି ଲୁଚାଇଲେ । ଲୋକ ଅନୁମାନ କଲେ, ଅଜାଙ୍କର ପ୍ରେତାତ୍ମାକୁ ଦେଖି ସେ ବୋହୂଟି ମୂର୍ଚ୍ଛା ହେଲା । ପ୍ରେତାତ୍ମା ଆତଯ ତ ହେବାର କେହି କେହି ଦେଖିଛନ୍ତି । ସେଇ ଘରେ ସେ ପ୍ରାଣ ହରିଥିଲେ ।

ସ୍ତ୍ରୀଦେହ କଷ୍ଟ ପାଇ ଝାଡ଼ାବାନ୍ତି ରୋଗରେ ବୋହୂଟି ସେ ପୁରକୁ ଚାଲିଗଲା । ମହାରଥୀଙ୍କର ଗୋପନ କଥା ସେ ପେଟରେ ଲୁଚାଇ ରଖିଲେ । ଅନୁତାପ ଓ ଅନୁଶୋଚନାରେ ସେ ସନ୍ତୁଳ ହେବାକୁ ଲାଗିଲେ । କାନ୍ଦ କାନ୍ଦ ଉପାୟ ଶୋକରେ ସେ ସମସ୍ତ କଟାଇଲେ ।

ଖବର ପାଇ କାପାଳିକ ବନେ ଆସି ଉପସ୍ଥିତ ହେଲେ । ମହାରଥୀଙ୍କୁ ପାଖରୁ ଡାକି ହସି ହସି କହିଲେ, ଶ୍ମଶାନରେ ପ୍ରେତାତ୍ମାମାନଙ୍କୁ ଆଖିରେ ଦେଖି ମଧ୍ୟ ତୁ ମୂର୍ଖଙ୍କ ପରି ଆତୁର ହେଉଛୁ ? ଦେହଟା ଛାଡ଼ି ସେ ଚାଲିଗଲା । କିନ୍ତୁ, ତା'ର ପ୍ରେତାତ୍ମା ବଞ୍ଚିରହିଛି । ଯେବେ ମନ କରିବୁ ତେବେ ତାକୁ ଶ୍ମଶାନରେ ଦେଖିପାରିବୁ ।

—ସତେ ତାକୁ ଦେଖିବି ?

—କେବଳ ଦେଖିବୁ ନାହିଁ ତ କଥାଭାଷା ହେବୁ । ମନକଲେ ତା'ଦେହର ସ୍ପର୍ଶ ଅନୁଭବ କରିବୁ । ମନେ ରଖିଥା, ସେ ତୋର ପତ୍ନୀ ନୁହେଁ । ଶିବ ଯାହାର ସ୍ୱାମୀ, ଶିବ ଯାହାର ସ୍ତ୍ରୀ, ସେ ବିଶ୍ୱ ସୃଷ୍ଟିକାରିଣୀ ଜଗତ୍‌ଜନନୀ ସୃଷ୍ଟି ଆରମ୍ଭରୁ ସ୍ଥିର କରିଛନ୍ତି । ନିଜ ଦେହର କଣିକାମାନ ନେଇ ପ୍ରତ୍ୟେକଙ୍କୁ ଦି'ଭାଗକରି ବିଶ୍ୱ ଚରାଚରରେ ବାଣ୍ଟି ଦେଇଛନ୍ତି । ପ୍ରଜାପତିଙ୍କୁ ତାଙ୍କ ଆଦେଶ ଦେଇଛନ୍ତି, ଜନ୍ମେ ଜନ୍ମେ ଯେ ଯାହାର କଣିକାର ଅଂଶ, ତାକୁ ଏକାଠି କରିବାର ଦାୟିତ୍ୱ ତୁମର ରହିଲା ।

ଦୁଇଟି ଅଂଶ ଦୁଇଟି ଦେହରେ ଥିବେ । ନାରୀ ଓ ପୁରୁଷ । ଏକାଠି ହେବେ । ବିଚ୍ଛିନ୍ନ କଣିକାର ଅର୍ଦ୍ଧ ଅଂଶମାନଙ୍କୁ ଦେହ ଦେଇ ସଂସାରକୁ ଆଣିବେ । ସେମାନେ ହେବେ ଭାଇ ଓ ଭଉଣୀ ।

ସେମାନଙ୍କର ଅନ୍ୟ ଅଂଶମାନେ ସେମିତି ବିଭିନ୍ନ ସ୍ଥାନରେ ବିଭିନ୍ନ ଘରେ ନିଜ ନିଜର କର୍ମଫଳ ନେଇ ଜନ୍ମ ହୋଇଥିବେ । ସେମାନଙ୍କୁ ଜନ୍ମଲାଭ କରାଇବାର ଓ ମରଣ କରାଇବାର ଗୁରୁ ଦାୟିତ୍ୱ ଯମଙ୍କୁ ଦିଆହୋଇଛି । ମିଳନ କରାଇବାର ବଡ଼ ଦାୟିତ୍ୱ ତମର ରହିଲା, ପ୍ରଜାପତି ! ଏଥିରେ ଭ୍ରମ ହେଲେ ବ୍ରହ୍ମାଙ୍କୁ ତୁମେ କଇଫତ ଦେବ ।

ଅତସୀ କହିଲା, ସେ କାପାଳିକଙ୍କୁ ମୋର କୋଟି ନମସ୍କାର । ସେ ନିଶ୍ଚୟ ମହାଯୋଗୀ, ବ୍ରହ୍ମଜ୍ଞାନୀ । ସାରା ସଂସାରରେ ଥିଲା-ଅଛି-ଥିବାର ସବୁଖବର ଜାଣନ୍ତି । ତୁମେ ମୋ ଜୀବନର ଅଂଶ ଓ ମୁଁ ତୁମ ଜୀବନର ଅଂଶ । ଏକଥା ଜାଣି

ସୁଚ୍ଛା ତୁମ ସ୍ତନ ଉପରେ ମୋ ହାତ ପଡ଼ିଲା, ଗୋଡ଼ ଉପରେ ଗୋଡ଼ ପଡ଼ିଗଲା ବୋଲି ମୋତେ ଥଣ୍ଡା କରି କହିଲ ? ମୁଁ ଜାଣି ଜାଣି ସେପରି କରି ନ ଥିଲି । ଆପେ ଆପେ କେତେବେଳେ ହାତଗୋଡ଼ ଘୁଞ୍ଚିଯାଇଥିଲା । କହିଲ ଭଲା, ଏଥିପାଇଁ ମୋତେ କାନ୍ଦ ମାଡ଼ିବ ନାହିଁ ?

—ଅସିତ କହିଲା, କାନ୍ଦ ମାଡ଼ିବା ଉଚିତ । କିନ୍ତୁ, ବିଦେଶୀଆ ଘରେ ରାତି ଅଧରେ ପ୍ରକୃତରେ କାନ୍ଦି ଆଖିରୁ ଲୁହ ଗଡ଼ାଇବା ଅନୁଚିତ ବୋଲି ମା-ମାଉସୀମାନେ ନିୟମ କରିଛନ୍ତି, କାନ୍ଦିଲେ ଯାହା ଦୋଷରୁ କାନ୍ଦିବ ତାର ଅମଙ୍ଗଳ ହେବ ।

—ମୁଁ କାନ୍ଦିବି ନାହିଁ ।

—ନା । କାଲି ସକାଳେ କାନ୍ଦିପାରି, କେହି ବାରଣ କରିନାହାନ୍ତି । ତୁମର କଥା ଶୁଣି ହସ ମାଡ଼ୁଛି, କିନ୍ତୁ ମୁଁ ହସିବି ନାହିଁ । ତୁମେ ଓ ମୁଁ ଗୋଟିଏ କର୍ଣ୍ଣିକାର ଦୁଇ ଅଂଶ । ତୁମେ ବିଯୁକ୍ତ ଓ ମୁଁ ଯୁକ୍ତ । ତୁମକୁ କାନ୍ଦ ମାଡ଼ିଲେ ମତେ ହସ ମାଡ଼ିବ । ତୁମେ ହାତଗୋଡ଼ ଖସାଇନେଲେ ମୁଁ ହାତଗୋଡ଼ ପକାଇବି । ତୁମେ ଥଣ୍ଡା ହେଲେ ମୁଁ ଗରମ କରିବି । ତୁମେ ଗରମ ହେଲେ ମୁଁ ଥଣ୍ଡା କରିବି । ଏଇ, ହାତ ଲମ୍ବିଲା ।

—ଓଃ, ରହ ମ ! ପୁଣି ତୁମର ହାତ ଗୋଡ଼ କଥା କହିଲଣି, ଶୁଣ । ମତେ କହ, ଜଗତ୍‌ଜନନୀ ତାଙ୍କ କର୍ଣ୍ଣିକାମାନଙ୍କୁ ଦ'ଢ ଭାଗ କଲାବେଳେ ଚଢ଼କ ଯାଇ ବେଳେ ବେଳେ ତିନି ଭାଗ, ପାଞ୍ଚ ଭାଗ, ଦଶ ଭାଗ ହୋଇଯାଏ କି ? ଗୋଟିଏ ଗୋଟିଏ ପୁରୁଷଙ୍କର ଦୁଇ ବା ଦୁଇରୁ ଅଧିକ ସ୍ତ୍ରୀ ଅଛନ୍ତି । ଶୁଣିଛୁ, ଗୋଟିଏ ଗୋଟିଏ ରାଜା ଓ ଜମିଦାରଙ୍କର ଦଶ ପଚିଶ ରାଣୀ ଅଛନ୍ତି । ସେମାନଙ୍କୁ ପ୍ରଜାପତି ନିଶ୍ଚୟ ଜୁଟାଇଥିବେ ।

ତମର ଅନୁମାନ ନ୍ୟାୟସଙ୍ଗତ । ଶୁଣିଥିବ ତ, ବିଲାତ, ଆମେରିକା ଓ ଆହୁରି କେତେ ଦେଶରେ ଜଣେ ଜଣେ ରମଣୀ ଗୋଟିକ ପରେ ଗୋଟିଏ ବରକୁ ଛାଡ଼ପତ୍ର ଦେଇ ବେଳେ ବେଳେ ଚତୁର୍ଥ, ପଞ୍ଚମ ଗେରସ୍ତ ନେଇ ଗୃହସଂସାର କରୁଛନ୍ତି । ପ୍ରେତପତି ମହାରଥୀଙ୍କୁ ପଚାରିଲେ ସେ କହିବେ, ସେ ବି ଭୁକ୍ତଭୋଗୀ । ପ୍ରଥମାର ମରଣ ପରେ ସେ ତୁମର ଆଈଙ୍କୁ ଦ୍ୱିତୀୟା କରି ସବତ୍ସା ଧେନୁ ଆଣିଥିଲେ !

—ଧେତ୍ ! 

ଆଉକୁ ପରୁଶ ବୁଝିବ । ତାଙ୍କର ଯେଉଁ ନାରୁଣୀ, ତାଙ୍କ ଝିଅ ଠାରୁ ବଡ଼ । ସେ ଆଇଙ୍କର ବଡ଼ ଝିଅର ପୋରୁଆଁ ଝିଅ ! ଆଉ ମୁହଁ ଖୋଲନ୍ତି ନାହିଁ. କାରଣ ସ୍ୱେ ମୌନ । ପ୍ରେତପତି ନଳେ ଡାକ ବଜାଇ କହନ୍ତି, କାରଣ ସେ ମାନ ।

କାପାଳିକର କଥା ତାଙ୍କ ମନକୁ ପ'ଇଲା ସେ ତାଙ୍କର ଅଂଶ କେଉଁଠି କେବଠୁ ଜନ୍ମ ହୋଇ ସାରଲେଣି । ଯିଏ ପତ୍ନୀ ହୋଇ ତାଙ୍କ ଘରକୁ ଆସିଥିଲା, ସେ ତାଙ୍କର ନୁହେଁ, ସେ ଅନ୍ୟର । ପ୍ରଜାପତିଙ୍କର ଲକ୍ଷ ଲକ୍ଷ ଭ୍ରମ ମଧ୍ୟରୁ ଏହା ବ ଗୋଟିଏ ବଡ଼ ଭ୍ରମ, ଯାହାକୁ ସୁଧାରିବାକୁ ଯମରାଜାଙ୍କର ସେ ସାହାଯ୍ୟ ନେଉଥିଲେ ।

ଏ ପୃଥିବୀରେ ଯମଙ୍କର ଅନେକ କ୍ଷମତାପ୍ରାପ୍ତ ଦଲାଲ ଅଛନ୍ତି । ଯଥା ସାପ, ବାଘ, ଭାଲୁ, କୁମ୍ଭୀର, ମଗର । ଅତସ୍ତେଷ୍ଟ କେତେ ଅଶିକ୍ଷିତା ଜନନୀ, ଯିଏ ଗିଳେଇ ଗିଳେଇ ମାରନ୍ତି । ଅତଳେଶ୍ୱ ଧନପ୍ରସ୍ୟାଶୀ 'ବେପାରୀପଲ ଯିଏ ଦୁଧରେ ପାଣି ମିଶାନ୍ତି, ଚର୍ବି ମିଶାନ୍ତି ଘିଅରେ, ଏଣ୍ଡୁଡେମ୍ବ ମିଶାନ୍ତି ତେଲରେ ସମାଜ ଦ୍ରୋହୀ ଡକାୟତ, ଲମ୍ପଟ ପୁରୁଷ, କୁଳଟା ସ୍ତ୍ରୀ, ଧନ-ମାନ କ୍ଷମତାଲୋଭୀ ପାଣିରେ ସର ପକାଇଲା ଦଳେ ନେତା । ଯମଙ୍କର ଏପରି ଅନେକ ଏଜେଣ୍ଟ ଅଛନ୍ତି । କେତେ ମୁଁ କହିବ ? ଏବେ ପ୍ରେତପତିଙ୍କ କଥା ଶୁଣ ।

କାପାଳିକ ଆଶୀର୍ବାଦ କରି ତାଙ୍କ ମୂଲ୍ୟବାନ୍ ଉପଦେଶର ବୃଦାକ ଦେଇ ଚାଲିଗଲେ । ଲୋକେ କହନ୍ତି, ସେ ଅନ୍ତର୍ଦ୍ଧାନ ହୋଇଗଲେ । ଯାଉନ୍ତୁ ସେ, ତାଙ୍କର ଅର୍ଦ୍ଧାଂଶ କେଉଁଠି ଅଛୁ ଖୋଜିବାକୁ । ପ୍ରେତପତି ମହାରଥୀଙ୍କର ମନର ଦୁଃଖ ଦୂର ହେଲା ନାହିଁ । ବାଇଆ ବାଉଳ ପରି ହେଲେ । ଝିଅ-ପିଅ ଗୁଡ଼ କାନ୍ଦିବାକୁ ଲାଗିଲେ । ଭାବିଲେ, ତାଙ୍କର ଅବିବେକତା ପାଇଁ ସେ ତାଙ୍କର ପ୍ରେମମୟୀ ପତ୍ନୀଙ୍କୁ ହରାଇ ବସିଲେ ।

ବୋଧହୁଏ ଯେଉଁ ମୃତା ନାରୀର ଉଲଗ୍ନ ଦରପୋଡ଼ା ଦେହଟା ଉପରେ କାପାଳିକ ବସି ଯୋଗ କରୁଥିଲା, ଯାହାର ଶୀତଳ ପାଦ ଧରି ସେ ଆତ୍ମବିସ୍ମୃତ

ହୋଇ ଅନ୍ଧାର ରାତିରେ ପ୍ରେତଦଳଙ୍କର ଛାୟାମୂର୍ତ୍ତିମାନ ଦେଖୁଥିଲେ, ସେହି ନାରୀର ପ୍ରେତାତ୍ମା ଆସି ତାଙ୍କର ପଡ଼ସୋହାଗିନୀ ପତ୍ନୀଙ୍କୁ ଓଟାରି ଗଲା । ଶେଷକୁ ସଙ୍ଗରେ ନେଇଗଲା ।

ଏ କାଣ୍ଡ ଅଜାଙ୍କ ପ୍ରେତର ବି ହୋଇପାରେ । ପିଲାଦିନୁ, ଅର୍ଥାତ୍, ବାପାଙ୍କ ଜନ୍ମର ମାତ୍ର କେତୋଟି ବର୍ଷ ପରେ ସେ ଆଈକୁ ହରାଇ ଥିଲେ । ଦ୍ୱିତୀୟ ଦାର ଗ୍ରହଣ ନ କରି ଅନ୍ୟ ନାରୀମାନଙ୍କର ନଖ-କେଶ-ବାସର ଆଶ୍ରୟ ନେଇଥିଲେ । ଏପରି ଦୁର୍ନାମ ତାଙ୍କର ଥିଲା, ସେ ସୁଶ୍ରୀ ଓ ବଳିଷ୍ଠ ଲୋକ ଥିଲେ । ବେପରୁଆ ଲୋକ, ଦୁର୍ନାମକୁ ଦେହର ମଳିଠାରୁ ଅଧିକ ମୂଲ୍ୟହୀନ ମଣୁଥିଲେ ।

ଇତିହାସ କଣ ଓଲଟି ଆସିବ ? ପ୍ରେତପିତା ହେବେ ତାଙ୍କ ଅଜାଙ୍କ ପରି ? ଏହି ଧାରଣା ରେ ପ୍ରେତପିତା ଥରି ଉଠିଲେ । ନା, ନା, ନା । ସେ ଶିକ୍ଷିତ, ସେ ସ୍ୱାନ ହେବେ ନାହିଁ । ଦୁଷ୍ଟଗଣ ସମାଜଦ୍ରୋହୀ ହେବେ ନାହିଁ । ପ୍ରଥମାଙ୍କର ମୃତ୍ୟୁକୁ ମନରେ ଧରି ସେ ବ୍ରହ୍ମଚାରୀ ପରି ଜୀବନ କାଟିବେ । ଅଜାଙ୍କର ପୋଥିଗୁଡ଼ିକ ତାଙ୍କ ସଙ୍କଳ୍ପର ଅନ୍ତରାୟ ହେବ । କେତେ ହଟଚମଟ କର୍ମର ମନ୍ତ୍ର ଓ ମନ୍ତ୍ରସାଧନର ପ୍ରଣାଳୀ ସେଥିରେ ଅଛି । ନଖ-କେଶ-ବାସ ଓଉଁରିଆ ମନ୍ତ୍ର ରହିଛି, ଅବଶ୍ୟ ସେ ମନ୍ତ୍ରକୁ ଆଗରୁ କଣ୍ଠସ୍ଥ କରିଦେଇଛନ୍ତି ।

ପୋଥିଗୁଡ଼ିକ ସେ ପୋଡ଼ିପାରିଲେ ନାହିଁ । ବଢ଼ିଲା ନଦୀର ସ୍ରୋତରେ ଅନ୍ଧାର ରାତିରେ ଭସାଇଦେଲେ । ଯାଉ, ସବୁ ଭାସିଯାଉ । ଏସବୁ ବିଦ୍ୟାଦ୍ୱାରା ଲାଭ ହୁଏ ନାହିଁ, ନିଜର ଓ ସମାଜର କ୍ଷତି ହୁଏ ।

ଅନ୍ଧାର ରାତିରେ, ତଳିବାଟରେ ସେ ଘରକୁ ଫେରିଆସୁଛନ୍ତି । ଭବିଷ୍ୟତର କର୍ମପନ୍ଥା ଖୁବ ସ୍ଥିର କରିବାକୁ ଚେଷ୍ଟା କରୁଛନ୍ତି । ହଠାତ୍ କାନରେ କାହାର ଖିଲଖିଲ୍ ହସର ଶବ୍ଦ ବାଜିଲା । ପଛକୁ ଫେରିଚାହିଁଲେ । କିଛି ଦେଖିପାରିଲେ ନାହିଁ । ଦୂରରୁ ଶୁଭୁଛି ଚଳନ୍ତି ନଈର ଅବିରାମ କ୍ଷୀଣ ଗର୍ଜନ । ଝିଗ ବି ଗର୍ଜୁଛି । ଦୁଇ କଡ଼କୁ ଚାହିଁଲେ । କାଳି ଅନ୍ଧାର ମଝିରେ ଛୋଟ ବଡ଼ ଝାଁ-ଝାଁ ଗଛଗୁଡ଼ିକର ଆକୃତି ଦିଶୁଛି । ଜୁଳୁକି ପୋକ ପଲ ପଲ ଆଲୁଅ ଜାଳି ଏପାଖେ ସେପାଖେ ଉଡ଼ୁଛନ୍ତି ।

ପୁଣି ସେଇ ଝିଲ ଝିଲ ସ୍ୱନ । ଶବଦ ଆସୁଛି ଆମ୍ବରୁ । ଘର ପାଖେଇ ଆସିଲାଣି । କଣ୍ଟା, କାନଭୋଳା, ବେନ୍ତ, ଭର୍ଲିଚ, ବାଉଁଶ ଓ ମୁଣ୍ଡି ସାହାଡ଼ା ବଣ ଯାତମାଣିଆ ଗୋଚର କଡ଼ରେ ବାଟ । ଗୋଚର ପାର ହେଲେ ପାଞ୍ଚ ମାଣ ଖଣ୍ଡି ବିଲ । ଚନ୍ଦଡ଼ା ହୁଡ଼ା ଉପରେ ଗଲେ ପ୍ରେତପଣ୍ଡଙ୍କ ଦ'ମାଣିଆ ଆମ୍ବ, ଜାମୁ, ନଡ଼ିଆ ଓ ଖଜୁରୀ ଗଛଭରା ଅବୁଜା ଅରମା ବଗିଚା । ବଗିଚା ଶେଷରେ ଶାଗସବଜ ବାଡ଼, କୂଅ ଓ ମହାରଥୀଙ୍କ ପାଞ୍ଚଖଣିଆ ଉଚ୍ଚା ଘର । ଇଟା କାନ୍ଥ, ଉପରେ ଖଡ଼ ଛପର ।

ପ୍ରେତପଣ୍ଡ ସଫା ଦୁଇ ଆଖିରେ ଦେଖିପାରଲେ ଯେ ପ୍ରାୟ ଦୁଇଶ ହାତ ଦୂରରେ ଜଣେ ସ୍ତ୍ରୀଲୋକ ଗୋଚର ପାଖ ବାଟ ଉପରେ ଠିଆହୋଇଛି । କେଜାଣି କାହିଁକି, ଆଉ ଜଣେ ସ୍ତ୍ରୀ ତରତର ହୋଇ ଅରମା ଗୋଚର ଭିତରକୁ ପଶିଯାଉଛି ।

ସେ ଭାବିଲେ, କେଉଁମାନେ ମଇଦାନକୁ ଆସିଥିବେ । ଗଳା ଖଙ୍କାରି ସେ ଆଗକୁ ଚାଲିଲେ । ସ୍ତ୍ରୀ ଲୋକଟି ମଧ୍ୟ ଆଗେଇ ଚାଲିଲା । ବିଲ ପାରହେଲା । ମହାରଥୀଙ୍କ ବଗିଚା ଭିତରେ ପଶିଲା । ମହାରଥୀ ପଛେ ପଛେ ଯାଉଛନ୍ତି । ସେ ଦେଖିଲେ, ସ୍ତ୍ରୀଟି କୂଅମୂଳକୁ ଗଲା । ସେଇଠୁ ବାଣ କବାଟ ପାଖରେ ଠିଆ ହେଲା । ମହାରଥୀ ଭାବିଲେ, ବୋଉ ହୋଇଥିବେ, ଡାକିଲେ, ବୋଉ !

ଉତ୍ତର ନାହିଁ ।

ପ୍ରେତପଣ୍ଡ ମହାରଥୀ ଦେଖିଲେ, ବାଣ କବାଟ ପାଖରେ ସ୍ତ୍ରୀଟି ଅଦୃଶ୍ୟ ହୋଇଗଲା ।

ପ୍ରେତପଣ୍ଡଙ୍କର ଆପାଦମସ୍ତକ ଥରି ଉଠିଲା । ଛାତି ପଡ଼ିଲା ଉଠିଲା । ଯାହା କହନ୍ତି, ଗୋଟାଏ ମରଣ ଝାଳ ଦେହରୁ ବୋହିଗଲା । ମୁଣ୍ଡ ଘୂରିବାକୁ ଲାଗିଲା ! ଅନ୍ଧାର ଭିତରେ ଘନପୂର ଅନ୍ଧାର ଦିଶିଲା ।

ବାଣ କବାଟରେ ଭରାଦେଇ ଆଖି ବୁଜି ସେ କେତେକ୍ଷଣ ରହିଲେ । ମନ ମଧ୍ୟରେ ଦୁର୍ଗା ନାମ ଘୋଷିହେଲେ । ତୁଣ୍ଡ ଖୋଲିଲା ନାହିଁ । ଚିନ୍ତାଶକ୍ତି ରହିତ ହେଲା । ଚେତନ ମନ ଡର ଡରକା ଅବଚେତନ ମନକୁ ପୁଣି ପୁଣି ପ୍ରଶ୍ନ ପଚାରିଲା, ସେ କିଏ, ସେ କିଏ ?

ନରମ ଉଷ୍ମ ଅତସୀ ଅସିତର ଛାତିରେ ମୁହଁ ଲଗାଇଲା । ସ୍ୱର ଅସ୍ପଷ୍ଟ ସେ ମଧ୍ୟ ସେହି ପ୍ରଶ୍ନ କଲା ସେ କିଏ, ସତେ ସେ କିଏ ?

ଅସିତ କହିଲା, ଏତିକି ଶୁଣି ଭୟ କରୁଛ ? ଆତୁର ଅଛ । ଚିନ୍ତା କର ନାହିଁ, ଡର ନାହିଁ । ଅନେକ ବର୍ଷ ତଳର କଥା, ବହୁ ଦୂରରେ ଅନ୍ୟର କୁଟୀରରେ ଘଟିଥିଲା । ଆମ ସଙ୍ଗେ ତାର କୌଣସି ସମ୍ବନ୍ଧ ନାହିଁ । ଆମର ଆତ୍ମାକଣିକା ମୋଟେ ଦୁଇ ଭାଗ ହୋଇ ଜନମିଥିଲା । ତୁମେ ଓ ମୁଁ କେଉଁ ଜନ୍ମରେ ତୁମେ ହୁଅ ପୁରୁଷ, ପୁଣି କେଉଁ ଜନ୍ମରେ ନାରୀ । ପଜିଟିଭ୍ ଚାର୍ଜ ଅର୍ଥାତ୍ ଯୁକ୍ତଶକ୍ତି କେଉଁ ପ୍ରକ୍ରିୟା ଫଳରେ ନେଗେଟିଭ୍ ଚାର୍ଜ ଅର୍ଥାତ୍ ବିଯୁକ୍ତଶକ୍ତି ହୋଇଯାଏ, ବୁଝିପାରୁନା ?

—ନାହିଁ !

—ମୋ ଛାତିରେ ତମ ଥଣ୍ଡା ନାକ ବାଜି ସଲ୍ ସଲ୍ ଲାଗୁଛି ଅତସୀ, ସିଧା ହୋଇ ଶୁଅ, ଡର ନାହିଁ । ଯୁକ୍ତ ଓ ବିଯୁକ୍ତ କଥା ଆଉ ଭାବ ନାହିଁ, ଦେଖିଥିବ । ତ, ଅନେକ ଘରଣୀ ଅତି ଜବରଦସ୍ତ ପ୍ରକୃତିର । ସେମାନଙ୍କ ଶାଶୂ ଶଶୁର ସ୍ୱାମୀ ଦିଅର, ପେଟରୁ ଜନମିଲା ପୁଅଝିଅ, ଚାକରବାକର, ବନ୍ଧୁବାନ୍ଧବ, ଦାଣ୍ଡ ଲୋକ କରପଦ ଯୋଡ଼ି ରହନ୍ତି । ସେମାନେ ସଦାକୁ ନ ଯାଇ ଘରେ ଥାଇ ମଧ୍ୟ ମାମଲାତି କରନ୍ତି । ଯେଉଁମାନେ ସଦାକୁ ବାହାରନ୍ତି, ସାତ ଘରେ ଅଶାନ୍ତି ଭିଆଣ କରନ୍ତି । ଲେଖାପଢ଼ା ଜାଣିଥିଲେ ଓ ଦେହରେ ରୂପ, ସେ ରୂପକୁ ବିଭିନ୍ନ ଭଙ୍ଗୀରେ ସଜାଇବାର ଦକ୍ଷତା, ଆଖିରେ ବିଜୁଳିଆ କଟାକ୍ଷ, ଓଠରେ ଚେରିଛି ଗୋଲାପୀ ହସ, ତୁଣ୍ଡରେ ଟଇଫଟା ଭାଷା ଥିଲେ ସେମାନେ ନେତା ହୁଅନ୍ତି, ରାଜ୍ୟ ଶାସନ୍ତି ।

—ହିଁ ହିଁ ହିଁ !

—ହସ ମାଡ଼ୁଛି, ଅତସୀ ? ହଁ, ସେମାନେ ବେଳେବେଳେ ଏମିତି ଯୋଡ଼ା ପର କଥା ଅକଥାରେ ହସିଉଠନ୍ତି । ଜାଣି ରଖିଥା ଯେଉଁମାନେ ଆର ଜନ୍ମରେ ଯୁକ୍ତଶକ୍ତି ପାଇ ପୁରୁଷ ହେବେ । ଅନେକ ଜନ୍ମର ଅଭ୍ୟାସ ଫଳରେ ସାନ୍ଧି ଆତ୍ମାକଣିକା ଫାଲଗୁଡ଼ିକର ଲିଙ୍ଗ ପରିବର୍ତ୍ତନ ହୁଏ । ତୁମର ଟିକିଏ ଡେରି ହୋଇପାରେ । ତେବେ ତୁମେ ଦୃଢ଼ ପଦକ୍ଷେପରେ ଧୀର ସ୍ଥିର ହୋଇ ଆଗଉଛ । ଦୁଃଖ କରନା । ମୁଁ ଏ ପ୍ରସେସ୍ ଅର୍ଥାତ୍ ବିବର୍ତ୍ତନର ପ୍ରକ୍ରିୟା, ଅର୍ଥାତ୍ ଯୋଗ ଓ

ବିଯୋଗର ଓଲଟ ପାଲଟ ଘଟ, ଅର୍ଥାତ୍ ତୁମର ଆତ୍ମାକଣିକା ଫାଲ ପୁରୁଷ ହେବା ଓ ମୋର ଆର ଫାଲକ ସ୍ତ୍ରୀ ହୋଇ ଜନମ ହେବାର ଗତକୁ ଏ ଜନ୍ମରେ ବନ୍ଧୁଦୂର ଆଡେଇ ନେଇପାରବ ।

—ହୁଁ ହୁଁ ହୁଁ ।

—ଏଥିରେ ଭାବିବାର କଣ ଅଛି ?

—ତୁମେ ମୋତେ ଘୋଡ଼ା ସଙ୍ଗେ ସମାନ କଲ କାହିଁକ ?

— ମୋ ସୁଣ, ଶୁନନ୍ତୁଅ । କନ୍ତୁ କନ୍ତୁ ପାଟିରୁ ପଦେ କଣ ଖସିଗଲା ବୋଲ କାନ୍ଧଉଠୁଛ ? ଆମ ବଦଳା ବଦଳର ଗତଟା ତେର ହୋଇଯିବ ଯେ ! ହେଲ ଏବେ, ମୁଁ ଆଜଠୁଁ ଘୋଡକ ହେବ । ତୁମେ ସବାର ହୋଇପାର । ମନେରଖ, ଆମ ଯୁଗର ଅନେକ ପୁରୁଷକଣିକା, ସ୍ତ୍ରୀ ସ୍ୱାଧୀନତା ସରଠାରୁ ସେମାନଙ୍କୁ ଯେଉଁ ସୁବିଧା ଓ ସୁଯୋଗ ଦିଆହେଉଛି, ସେତକ ଦେଖି ହନ୍ତସନ୍ତ ହୋଇ ନାସ୍ତିକର ଉଦ୍ଭବରୁ କରୁଛନ୍ତି ।

ପ୍ରେତପତି ମହାରଥୀ କନ୍ତୁ ଅନ୍ୟ ପ୍ରକୃତିର ଲୋକ । ତାଙ୍କର ପୂର୍ଣ୍ଣ ଆସ୍ଥା ଓ ବିଶ୍ୱାସ ନିଜର ପୁରୁଷତ୍ୱ ଉପରେ । ସେଥିପାଇଁ ସେ ଦଣ ରଖନ୍ତି । ନାରୀମାନଙ୍କୁ ଘୃଣା କରନ୍ତି । ସ୍ୱାଧୀନତା ଦେବାକୁ ପସନ୍ଦ କରନ୍ତି ନାହିଁ । ସେମାନଙ୍କ ମନରେ ଭୂତପ୍ରେତଙ୍କର ଭୟ ଜନ୍ମାଇ ସୁନାହାର ପରିବର୍ତ୍ତେ ବେକରେ ତେଉଁଶଅ ମାଳ ପକାଇବାକୁ ଉପଦେଶ ଦିଅନ୍ତି, ସେମାନଙ୍କୁ ମୌନୀ କରନ୍ତି ।

ତାଙ୍କର ପୌରୁଷରେ ମୁଗ୍ଧ ହୋଇ ଗ୍ରଡଅଧରେ ତାଙ୍କ ପତ୍ନୀର ପ୍ରେତନୀ ପୁଣି ଆସି ପହଞ୍ଚିଲା । ମହାରଥୀ ଘରଭିତରୁ କବାଟ ବନ୍ଦକରି ଶୋଇଥିଲେ । କବାଟ ଖଡ଼ଖଡ଼ ଶୁଣି ତାଙ୍କର ଗ୍ରଭନଦ ଭାଙ୍ଗିଲା । ତଥାପି ଅଜଣା ଭୟରେ ତାଙ୍କର ଗୋ ଡ଼ହାତ ଚଳିଲା ନାହିଁ । ସେ ନିର୍ଜୀବ ପରି ଅନ୍ଧାରରେ ମଶାରିଭିତରେ ପଲଙ୍କ ଉପରେ ପଡ଼ିରହିଲେ ।

ଆଖି ଖୋଲିଲେ । ଅନ୍ଧାର ପାତଳ ଦିଶିଲା । ସେ ସ୍ପଷ୍ଟ ଦେଖିପାରିଲେ, ନାରୀମୂର୍ତ୍ତିଟିଏ ତାଙ୍କ ପାଖକୁ ଆସୁଛି । ହାତ ଝ... ଶୁଭୁଛି । ...

ମକାଉଛି । ଉପରେ ଦେହରୁ ଖୋଲ ଫିଟିପଡ଼ିଲା । ପାଟିକବି କାହାକୁ ଡାକ ଛାଡିବାକୁ ମନ ହେଲା । ଓଠ ଖୋଲିଲା ନାହିଁ । ଅଚଳ ପଥରମୂର୍ତ୍ତି ପରି ସେ ଯେମିତି ପଡ଼ିରହିଲେ । ଆଖି ଦିଓଟି ଡବ ଡବ କରି ଘୂରିରହିଲା । କିଏ ସେ ? ଏହି ପ୍ରଶ୍ନଟି ମନମଧ୍ୟରେ ଉଚ୍ଚାରିତ ହେଲା ।

ନାରୀଟି ପଲଙ୍କ ପାଖକୁ ଆସିଲା । ମଶାରିଟେକ ମୁହଁ ଗଳାଇଲା । ମହାରଥୀ ଦେଖି ସୁନ୍ଦର ମୁହଁଟିକୁ ଚହ୍ନିଲେ । ଅତି ପରିଚିତ ମଥାର ଗନ୍ଧ ବାରିଲେ । ଭୁଲିଗଲେ ଯେ ସେ କେଉଁଠି ମରିଯାଇଛି । ଅଥବା, ଭୁଲିଗଲେ ଯେ ତାଙ୍କର ସ୍ତ୍ରୀକୁ ଦେହରୁ ସୂକ୍ଷ୍ମଶରୀର ବାହାରି ଆସିଛି । ଉପଭୋକ୍ତା ହେଉଥିଲେ ଯାହାକୁ ସେ ଅବହେଳା କରିଥିଲେ, ଯାହାର ତିରୋଧାନରେ ସେ ତାଇଆ ବାଉଳି ହୋଇଥିଲେ, ଝିଅଟି ଆସିଆ ଭୁଲିଗଲେ, ସେଇ ତ ସେ । ପନ୍ଦର ବର୍ଷର ସାନ ଝିଅଟିଏ ! ତାଙ୍କର ପ୍ରେମର ପ୍ରତିମା, ବିବାହିତା ଦୁଃଖପାସୋରା ସ୍ତ୍ରୀ ।

ସେ ଦୁଇହାତ ଟେକି ପ୍ରେମମୟୀର ମୁହଁଟିକୁ ଧରି ଗ୍ରାଡକୁ ଟାଣିଲେ । ପ୍ରେତପ୍ରତିମା ଆପେ ପଲଙ୍କ ଉପରକୁ ଉଠିଆସିଲା । ପାଦ ଦିଓଟି ତାରି ଜଙ୍ଘ ଉପରେ ରଖି ମଞ୍ଚ କଲାକୁ ଲାଗିଲା । ସେମିତି କୋମଳ ହାତର ନରମ ଉଷୁମ ପରଶ । ମୃଦୁମନ୍ଦ କଙ୍କଣୀ ନିକ୍ୱଣ, ଶ୍ରମକ୍ଲାନ୍ତ ଉପଚ ନିଶ୍ୱାସ । ଉତ୍ତେଜନାର ତେଜାଳ ମୂର୍ଚ୍ଛନା; ରଜତର ପ୍ରତି କଣିକାରେ ଛୁଟାଇଲା ସେ ପ୍ରେମବାଈଆଣୀ । ମଦପାଣ ଉଚାଟ କଲା । ଯିଏ ଦିନେ ହଜି ଯାଇଥିଲା, ଅହ୍ୟଗଣୀ କରି ମଶାଣିକୁ ଯାହାକୁ ନେଇଥିଲେ ବାଜା ବଜାଇ, ଲିଆ କଉଡ଼ି ପକାଉ ଛିଞ୍ଚି, ଯାହାର ଦେହଟିକୁ ଘିଅ, ଚନ୍ଦନକାଠ ପକାଇ ପୋଡ଼ି ପଉଁଶ କରିଥିଲେ, ସେଇ ସେ ଆସିଛି, ମନୋହାରଣୀ !

ମହାରଥୀଙ୍କର କବିତା ଶୁଣି କେହି କେହି ଉପହାସ କରି କହିଲେ, ଆସିଥିଲା ସେ ମନୋହାରିଣୀ ସତ; କିନ୍ତୁ ସେ ଆପଣଙ୍କର ଗୃହିଣୀ ନୁହେଁ, ଆଉ କିଏ । ଘଟଣାଟି ବେଶ୍ ଅନୁମାନ କରିହେଉଛି । ନିଦ ବାଉଳାରେ ଆପଣ ନିଜେ ଉଠି କବାଟ ଖୋଲି ଦେଇଥିବେ ।

ପ୍ରେତପତି ରାଗି ଉଠିଥିଲେ । କହିଲେ, ଯାହା ମୋ ପାଖେ ନିରାଟ ସତ୍ୟ, ଆପଣମାନଙ୍କୁ ତାହା ଅସମ୍ଭବ ପରି ଲାଗୁଛି । ମୋର ପତ୍ନୀକୁ ମୁଁ ଚହ୍ନେ ନାହିଁ ?

ଯେ ମୋର ନୁହେଁ ଏହା ସତ୍ୟ, ପ୍ରଜାପତିଙ୍କ ଭୁଲ ପାଇଁ ମୋ ସଙ୍ଗେ ଯୋଡି ହୋଇଥିଲା । ସେଥିପାଇଁ ଯମରାଜ ତାକୁ ମୋଠାରୁ ଛଡ଼ାଇ ନେଇଥିଲେ ଏହା ମଧ୍ୟ ସତ୍ୟ, କିନ୍ତୁ ଯୌବନର ପୂର୍ଣ୍ଣସମ୍ଭାର ଦେଇ ସେ ଜୀବନକୁ ଭୋଗ କରିବାକୁ ଅତୃପ୍ତ ଥିଲା । ଆଶା ନ ମେଣ୍ଟୁଣୁ ତାର ଜୀବନ ଗଲା । ଭରା ଯୌବନର ସବୁ ସମ୍ଭାର ତାର ପୋଡ଼ି ପାଉଁଶ ହେଲେ । ତାର ପ୍ରେତାତ୍ମା ସେଇ ଅପୂର୍ଣ୍ଣ ବାସନା ଚରିତାର୍ଥ ପାଇଁ ଦେହ ଧରି ଆସିଥିଲା ।

କିଏ ଜଣେ ପଚାରିଲେ, ଆପଣଙ୍କର ଲୋଭିଲା ମନର ଉଦ୍ବେଳବିକଳ, ଅପୂର୍ଣ୍ଣ ଛଟପଟ ବାସନା ଓ ଯୁବତୀ ପତ୍ନୀ ପ୍ରତି ନିଷ୍ଠୁର ଅବହେଳା ଆପଣଙ୍କର ଅବଚେତନ ମନକୁ ଅନୁତାପର ନିଆଁରେ ସନ୍ତୁଳି ଥିଲା କି ? ଆପଣ ନ ଥିଲା ପତ୍ନୀର ସ୍ୱପ୍ନମୟୀ ପ୍ରତିମାକୁ ସ୍ୱପ୍ନରେ ଧରି କ୍ରୀଡ଼ା କରୁଥିଲେ, ଏହା ବି ସମ୍ଭବ ହୋଇପାରେ ।

ଫରେଷ୍ଟ ରେଞ୍ଜର ତ୍ରିପାଠୀବାବୁ କହିଲେ, ଦେଖନ୍ତୁ, ଅବିଶ୍ୱାସୀର ଚକ୍ଷୁରେ ନିଜର ଅସ୍ତିତ୍ୱ ବି ସନ୍ଦେହଜନକ । ଦେହରେ ଆତ୍ମା ଅଛି । ସେ ଆତ୍ମା ପୁନର୍ଜନ୍ମ ଲଭୁଛି । ଏହା ଶାସ୍ତ୍ରସମ୍ମତ, ସର୍ବବାଦୀସମ୍ମତ । ଅମୋକ୍ଷ ଆତ୍ମା ପୁନର୍ଜନ୍ମ ଲଭିବା ପୂର୍ବରୁ ପ୍ରେତ ରୂପେ ବିଚରଣ କରେ । ପ୍ରେତ ବେଳେ ବେଳେ ନିଜର ନରନାରୀ ରୂପ ଧରେ, ଏହା ବି ପ୍ରମାଣିତ । ଋଷି ଅଭେଦାନନ୍ଦ ପ୍ରେତାତ୍ମାମାନଙ୍କର ଦେହର ସ୍ପର୍ଶ ଅନୁଭବ କରିଛନ୍ତି । ସେମାନଙ୍କ ସଙ୍ଗରେ କଥାବାର୍ତ୍ତା ହୋଇଛନ୍ତି । ମୁଁ ନିଜ ଆଖିରେ ବିଗତ ଆତ୍ମାର ଚଳନ୍ତ ରୂପ ଦେଖିଛି, ଶୁଣିବେ ?

ପ୍ରେତପତି ମହାରଥୀ ତ୍ରିପାଠୀଙ୍କ କଥା ଶୁଣି କହିଲେ, ଅନେକ ଲୋକ ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଦେଖିଛନ୍ତି । ସାତଦିନ ତଳେ ମୋର ଏଇ ଫୁଲବାଣୀ ଘରେ ଦିନ ଦ୍ୱିପ୍ରହରରେ କଣ ଘଟିଲା ସେ କଥା ଅନେକ ଲୋକ ଜାଣନ୍ତି । ତ୍ରିପାଠୀବାବୁ ନିଜେ କହିବେ । ଗୋଟିଏ ରାତିର ଘଟଣା ହୋଇଥିଲେ ମୋ ଜୀବନର ଅଭିଜ୍ଞତାକୁ ମୁଁ ହୁଏତ ଦୁଃସ୍ୱପ୍ନ ବୋଲି ଗ୍ରହଣ କରିଥାନ୍ତି । କିନ୍ତୁ, ଗୋଟିଏ ରାତିରେ ସେ ଆସି ମୋତେ ନିଷ୍କୃତି ଦେଇ ନାହିଁ ।

ଅତସୀ, ତା ପରେ ମହାରଥୀ ଯାହା ବର୍ଣ୍ଣନା କଲେ ଶୁଣିଲେ ଲୋମ ଟାଙ୍କୋରି ଉଠିବ ! ପ୍ରଥମ ରାତିରେ ପ୍ରେତପତ୍ନୀ ସୂଦେହରେ ତାଙ୍କର ଗୃହ ଉପରେ

ଶୋଇପଡ଼ିଲା । ତାଙ୍କ ଦେହର କୋମଳ ସ୍ପର୍ଶ ସେ ଅନୁଭବ କଲେ । ହାତ ବଢ଼ାଇ ପିଠି ଉପରେ ଘୁଷାଇଲେ । କେବଳ ଏତିକି ସେ ବୁଝିପାରୁଥାନ୍ତି ଯେ ସେ ନାରୀଟିର ଓଜନ ଅତି ଊଣା । କେବଳ ମୁହଁ ଖୋଲି ନ ଥାନ୍ତି । କାଳନିଦ୍ରା ମାଡ଼ିଆସିଲା, ରାତି ପାହିଲା । ଆଖି ଖୋଲି ପ୍ରେତପତି ଦେଖିଲେ, ଘରେ ତାଙ୍କ ପାଖରେ କେହି ନାହିଁ, ସୋହାଗିନୀ ପତ୍ନୀର ପ୍ରେତାତ୍ମାର ଦେହ ଅପସରିଯାଇଛି ।

ଗୋଟିଏ ରାତି ବି ସେ ଭୁଲିଯାଇ ନାହିଁ । ଆସିଛି, ସେବା କରିଛି, ପାଖରେ ବସି, ଶୋଇ, ସ୍ନେହ ଆଦର ପାଇ ରାତି ନ ପାହୁଣୁ ଚାଲିଯାଇଛି । ମାସ ମାସ କଟିଲା । ଭୁଲରେ କେବେ ସେ ମୁହଁ ଖୋଲି କଥା କହିନାହିଁ । ମନକୁ ମନ ଥରଥର କରି ହସିଛି । ଅଭିମାନ କରି ସୁଁ ସୁଁ ହୋଇ କାନ୍ଦିଛି । ଆଲିଙ୍ଗନ, ଚୁମ୍ବନ ଓ ଆଦର ସ୍ନେହର ନୀରବ ଉତ୍ତର ଦେଇଛି । ମହାରଥୀଙ୍କର ମନର ସବୁ ପ୍ରଶ୍ନ ମନରେ ସମାଧି ନେଇଛି । କେଜାଣି କାହିଁକି ସେ ମଧ୍ୟ କେବେ ମୁହଁ ଖୋଲିପାରି ନାହାନ୍ତି ।

ସେ ଅନୁଭବ କଲେ ଏବଂ ବାପ ମା ଓ ଅନ୍ୟମାନେ ଦେଖିପାରିଲେ ଯେ ପ୍ରେତପତି ମହାରଥୀ ଦିନୁ ଦିନୁ ଦୁର୍ବଳ ଓ ଅନ୍ୟମନସ୍କ ହେଉଛନ୍ତି । ଯେଉଁଠି ବସିଲେ ସେଇଠି, ଯୁଆଡ଼େ ଚାହିଁଲେ ଚାହିଁଛନ୍ତି । ବୁଝିବେଳେ କଅଣ ଚିନ୍ତା କରୁଛନ୍ତି । ସେ ନିଜେ ଜାଣିଲେ ଯେ ଚାଲିଲାବେଳେ ତାଙ୍କର ଦେହ ଥରୁଛି । ଗୋଡ଼ ଟଳମଳ ହେଉଛି । ଅତ୍ୟନ୍ତ ଦୁର୍ବଳ ଲାଗୁଛି । ଏତେସବୁ ହେଲେ ମଧ୍ୟ ପ୍ରେତପତ୍ନୀ ତାଙ୍କୁ ଛାଡ଼ୁ ନ ଦେଉ ନାହିଁ । ଠିକ୍ ସମୟରେ ଆସି ତାର ଅପୂର୍ଣ୍ଣ କାମନା ପୂରଣ କରି ସେ ଚାଲିଯାଉଛି । ଶୁଣ୍ଡଯାଉଛି ମହାରଥୀଙ୍କ ମନରେ ଗୋଟିଏ ହା-ହତାଶ ଭାବ ।

ଆଗଲିକ ଜାଳି ସେ ଶୋଇଛନ୍ତି । କେଜାଣି କପଟ ଆଲୁଅ ଲିଭିଛି । ସେ ଆସି ପହଞ୍ଚିଛି । ଆଜି ରକ୍ଷା ନାହିଁ, ଦୁର୍ବଳତା ମନରେ ବିରକ୍ତିଭାବ ଆଣିଛି । ସେ ଆସି ଉପସ୍ଥିତ ହେଲେ ଓ ପାଦରେ ହାତଦେଇ ମୁଖ ଚୁମ୍ବନ କଲେ । ବିରକ୍ତି ସଙ୍ଗେ ସଙ୍ଗେ ଦେହ ମନର ଦୁର୍ବଳତା ଲୋପ ହୁଏ । ବାସରଘରର ପ୍ରାଣପୁତଳିକା ଆନନ୍ଦ ଉତ୍ତେଜନାରେ ରାତି ବିତେ । ରାତି ପାହିଲେ ଲାଗେ ସତେ କି ଦେହରେ ଜୀବନ ନାହିଁ । ବିଛଣାରୁ ଉଠିହୁଏ ନାହିଁ । ସ୍ନେହମୟୀ ଜନନୀ ଆସି କପାଳରେ ହାତ

ମାରିଲେ, ଡକା ଛାଡ଼ିଲେ, ଝଟାଝଟ ଯାଇ କବାଟ ଖୋଲନ୍ତି । ଅକ୍ଷମଣୀସ୍ତ କେଉଁ ଅନ୍ୟାନ୍ୟ କଲ୍ପ ପରି ତରଙ୍ଗ ତରଙ୍ଗ ହୋଇ ପଦାକୁ ଆସନ୍ତି ।

ପ୍ରେତପତି ଭାବନ୍ତି, କେତେ ଔଷଧ ଖାଇଲେଣି, ଉପକାର ହେଉନାହିଁ । ମର୍ତ୍ତ୍ୟ ଘଟଣା ପ୍ରକାଶ କରିବାକୁ ଲଜ୍ଜା ହେଉଛି । ମନରେ ସଙ୍କୋଚ ଆସୁଛି । ପ୍ରେତନୀ ତାର ଜୀବିତାବସ୍ଥାରେ ପାଇଥିବା ଅବହେଳାର ପ୍ରତିଶୋଧ ନେଉଛି । ସେ ଧୀରେ ଧୀରେ ପ୍ରତି ରାତିରେ ଜୀବନ ଶୋଷୁଚି ।

ଆଉ ବେଶୀ ଦିନ ନୁହେଁ । ଦୁନିଆର ତାଙ୍କର ଲୀଳାଖେଳା ସରିବ । ପ୍ରେତପତ୍ନୀ ତାଙ୍କର ହାତଧରି ସେ ପୁରକୁ ନେବ । ଆତ୍ମରକ୍ଷାର ଚେଷ୍ଟା କରିବାକୁ ସେ ପ୍ରତିଜ୍ଞା କରନ୍ତି, କିନ୍ତୁ ଯେତେବେଳେ ରାତି ଅଧରେ ସେ ଆସି ତାର ହାତ ଦଉଡ଼ିରେ ପଦ ମଞ୍ଜାଳେ, ସେଇ କାଉଁରି ପରଶରେ ସବୁ ପ୍ରତିଜ୍ଞା ଲୋପ ହୁଏ । ଦେହରେ ନୂତନ ଶକ୍ତି ସଞ୍ଚରେ । ସୁବୋଧ ନବରସିକ ପ୍ରେମିକ ପରି ହାତ ବଢ଼ାଇ ସେଇ ପ୍ରେମମୟୀକୁ ପ୍ରେତପତି ଛାତି ଉପରକୁ ଟାଣିନିଅନ୍ତି । ନିବିଡ଼ ଆଲିଙ୍ଗନ କରି ମୁହଁରେ ମୁହଁ ଲଗାନ୍ତି । ଅସୀମ ଆନନ୍ଦରେ ନୟନ ଯୁଗଳ ନିମୀଳିତ ହୁଏ । ପ୍ରେତପତି ଆତ୍ମହରା ହୁଅନ୍ତି, ମୋହନିଦ୍ରାର କୋଳରେ ଅଚେତ ହୁଅନ୍ତି ।

ଅସିତ ନୀରବ ହେଲା । ଅତି ଭୟଙ୍କର ସେ ନୀରବତା । ବେଳୁବେଳ ରାତି ଗମ୍ଭୀର ହୋଇଛି । ରାତିର ଘନ ଅନ୍ଧକାର ଓଜନ ଲାଗୁଛି । ବାହାରର ଶବଦଧାରର ନିସ୍ତଳ ହେଲାଣି କେତେବେଳେ ରହିରହିକା କେଉଁ ଅଜଣା ସ୍ୱରର ଡେଣାଟିଏ ଉଠୁଛି ପଡ଼ୁଛି । ବାଟବଣା ହୋଇ କେଉଁ ଛୁଞ୍ଚବାଟେ କୋଠରିରେ ପଶୁଛି । ଭୟଙ୍କର ରାତିକୁ ସେ ଆହୁରି ଭୟଙ୍କର କରୁଛି । ଅସିତ କୋଳରେ ଅତସୀ ନିଷ୍ପନ୍ଦ ହେଲେ ବି ମହାରଥୀଙ୍କର ପ୍ରଥମା ପତ୍ନୀଙ୍କ କଥା ଭାବୁଛି । ଯଦି ସତ୍ୟ ହୋଇଥାଏ, ଦେହଧାରୀ ମଣିଷ ପ୍ରେତାତ୍ମା ମାନଙ୍କର ଅନୁଗତ ଦାସ, ଯାହାବାଣୀଟା ଦେହ ଧରି କାହିଁକି ଆସୁ ନ ଥିବ ? ରାଣୀ ବାରଜାଣୀ କାହିଁକି ମଶାଣିଚଣ୍ଡୀ ହୋଇ ବିଲମାଳରେ, ଅପନ୍ତରାରେ ବୁଲୁ ନ ଥିବ ?

—ଅତସୀ ପଚାରିଲା, ମହାରଥୀ ବର୍ତ୍ତିଲେ କିପରି ?

ଅସିତ କହିଲ, ସେ ବଂଶୀଛନ୍ଦ କ ଲୋଓଁଠି ଜେନେ ସମସ୍ତଙ୍କର ଅଜ୍ଞାତରେ ନରଦେହକୁ ନିକ୍ଷେପ କରି ସାପକାଠ ଗ୍ରନ୍ଥି ଏଥର୍ବର୍ଷ ନୂତନ ଦେହ, ନହୁ ପ୍ରେତ ଦେହ ଧରିଲ ପରି ସେ ପ୍ରେତଦେହ ଧରି ଆମ ଭିତରେ କାରବାର କେହିଛନ୍ତି, ଏହା କିଏ କହିପାରିବ ? ଯେତେଦୂର ଅନୁମାନ କରାଯାଉଛି, ସେ ବଞ୍ଚିନେ. ଏବେ ବି ବଞ୍ଚିଛନ୍ତି । ସେଥିପାଇଁ ଅନ୍ୟମାନଙ୍କୁ ତାଙ୍କର ପ୍ରେତପତ୍ନୀ ସଙ୍ଗେ ସାକ୍ଷାତ ମୁକ୍ତ କରିବାକୁ ପଡ଼ୁଛି ।

ପ୍ରେତପତିଙ୍କର ଗୋପନ ପ୍ରେମିକାପ୍ରେମ ଅଧିକ ଦିନ ଲୁଚିରହିଲ ନାହିଁ । ପ୍ରାଣଭୟରେ ଦିନେ ସବୁ ଘଟଣା ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ଆଗରେ ପ୍ରକାଶ କଲେ, ବନ୍ଧୁ ଆସି ରାତିରେ ତାଙ୍କର ଘରେ ଶୋଇଲେ ।

ପ୍ରେତପତି ଭାବିଥିଲେ, ସେ ନିଶ୍ଚିନ୍ତ ହୋଇ ଶୋଇପାରିବେ । ରାତିକୁ ହାତ ବାଦ ଯୋଡ଼ିଦିନ । ପ୍ରେମିକା ଆସି ନ ଥିଲ, ବୃଦ୍ଧଅଧରେ ଗାଁ ଗାଁ ଶବ୍ଦ ଶୁଭିଲ । ପ୍ରେତପତିଙ୍କର ନିଦ ଭାଙ୍ଗିଲ । ଆଲୁଅ କମ ଲଗାଇ ଦେଇଛୁ । ପାଖ ଖଟରେ ବନ୍ଧୁ ଗାଁ ଗାଁ ହେଉଛନ୍ତି । ପ୍ରେତପତି ବନ୍ଧୁର ନାମ ଧରି ଡାକ ପକାଇଲେ । ପାଞ୍ଚ ଥର ଡାକିବା ପରେ ତାଙ୍କ ତୁଣ୍ଡର ଶବ୍ଦ ବନ୍ଦ ହେଲ, ସେ ଜବାବ୍ ଦେଲେ ।

—କାହିଁକି ପାଟି କଲୁରେ ?

ସେ ଆସିଥିଲ । ମୋ ଗୁଡି ଉପରେ ବସି ଦୁଇ ହାତରେ ତଣ୍ଟିକୁ ଚିପିଧରିଲ । ମୁଁ ତାକୁ ନିଜ ଆଖିରେ ଦେଖିଛି, ଭୟଙ୍କର ରୂପ ଧରିଆଏ । ସେ ତୁମର ସ୍ତ୍ରୀ, ଯାହାକୁ କାନ୍ଧରେ ବୋହି ମଶାଣିକୁ ନେଇଥିଲୁଁ, ଯାହାର ଦେହକୁ ଆମେ ଜଳାଇ ଦେଇଥିଲୁ । ତୁମେ ଡାକ ନ ଥିଲେ ସେ ମୋ ତଣ୍ଟି ଚିପି ମାରି ଦେଇଥାନ୍ତା, ତୁମେ ଉଠି ପୁଣି ଆଲୁଅ ଜାଳ ।

ଅଡସୀ ପଚାରିଲ, ସବୁ କଥା ସେହି ବନ୍ଧୁ ଜଣକ ଆଗରୁ ଜାଣିଥିଲ । ମହାରଥୀଙ୍କଠାରୁ ଶୁଣିଥିଲ । ସାହାସ କରି ଚଢ଼ିହୋଇ ଶୋଇଥିଲ । ଗୁଡି ଉପରେ ହାତ ଦେଇଁ ଛାତିନକୁ ଶୋଇଥିଲ କି ?

—ତୁମର ଅନୁମାନ ଠିକ ହୋଇପାରେ । ମୁଁ ସେହି ପ୍ରଶ୍ନଟି ମହାରଥୀଙ୍କୁ ପଚାରିବାରୁ ସେ ମୋତେ ନାସ୍ତିକ ବୋଲି କହାକଲେ । ପିତଳକୁ ସୁନା ବୋଲି

ଶୁଣେ ନ ଜଣ କହନ୍ତି ପଥରରେ ପରୀକ୍ଷା କରିବାକୁ ଗାର ଟାଣିଲେ ଠିକ ବସିଥା ଯାଗିଛନ୍ତି କହେ, କେଉଁଠୁ କଷିଥିଲ ? ଝାଙ୍କି ଦୁନାଛି, କାଦୁଅ ପରି ନରମ, ଗନ୍ଧଣା ଗୋଡ଼ ହୋଇଯିବ । ତମ ଗାଳ୍ପନାଙ୍କ ପକ୍ଷିଆ ଜଣା ପଡ଼ିଲା, ଆଣ ଦେ, ରଖ । ସେମିତି ପ୍ରେତପତିଙ୍କ କୋଧ । କିନ୍ତୁ ତୁମ ମନରେ ସନ୍ଦେହ ହେଲା କାହିଁକି ଅରୂପୀ ?

—କେତେ ଥର ତୁମେ ସେପରି ବଳିବଳେଇଛ । ମୋତେ ଡର ମାଡ଼େ । ଝର୍କି ଡିଏଁ ଦେଖେ, ତୁମେ ଶବ ହୋଇ ଶୋଇଛ । ତୁମର ଗୋଟିଏ ହାତ ଛାତି ଉପରେ ପଡ଼ିଛି । ଧୀରେ ଧୀରେ ହାତଟି ଟେକି କଡ଼କୁ ରଖିଦିଏ ତୁମେ ସେଇଠୁ ନିଶ୍ଚିନ୍ତ ହୋଇ ଶୋଇପଡ଼ । ମହାରଥୀଙ୍କର ବନ୍ଧୁ ଓ ନିଜେ ମହାରଥୀ ସେପରି ଶୋଇ ସପନ ଦେଖୁଥିବେ ।

—ତୁମେ ଠିକ୍ ଅନୁମାନ କରିଛ ଅରୂପୀ ! ପ୍ରେତପତି ମହାରଥୀ ଯୁବତୀ ପତ୍ନୀକୁ ଏକାକୀ ଛାଡ଼ି ମନରେ ଭୂତପ୍ରେତଙ୍କର କାଳ୍ପନିକ ଛବିଗୁଡ଼ିକ ଧରି ମଶାଣିକୁ ଯାଇଥିଲେ । କାପାଳିକ ଏପରି ପରିସ୍ଥିତି ସୃଷ୍ଟି କରିଥିଲା ଯହିଁରେ ଭୟଗ୍ରସ୍ତ ଯୁବକ ମହାରଥୀ ମୃତବତ୍ ବସି ରହିଥିଲେ । ଚେତନ ମନ ଝାଉଁଳି ପଡ଼ିଲା । ଅବଚେତନ ମନରେ ସେଉଁମାନଙ୍କ ଛବି ଲାଖି ରହିଥିଲା, ସେଇ ଛବିର ଚଳନ୍ତି ରୂପ ସେ ମନ ଭିତରେ ଦେଖିଥିଲେ । ଆଖିରେ ଦେଖିଲା ପରି ମନେ ହେଉଥିଲା । ସେଇ ଧାରଣା ନେଇ ସେ ଘରକୁ ଫେରି ଯାହା ଦେଖିଲେ ଓ ଯାହା ଘଟିଲା, ସବୁ ଶୁଣିଲ । ଅନୁତପ୍ତ ମନ ସ୍ୱପ୍ନରେ ପତ୍ନୀଙ୍କୁ ଲାଭ କରୁଥିଲା । ନିଜେ ବାଉଳା ହୋଇ ନିଜ ଅଜ୍ଞାତରେ ନିଜ ହାତରେ ଆଲୁଅ ଲିଭାଉଥିଲେ ।

—ପ୍ରେତ ତେବେ ମଣିଷ ରୂପ ଧରି ଆସେ ନାହିଁ ?

—ପ୍ରେତପତିଙ୍କୁ ଏ ପ୍ରଶ୍ନ ପଚାରିଲେ ସେ ବିରକ୍ତ ହେବେ । ସେ ଭାବନ୍ତି, ସେମାନେ କେବଳ ଆସନ୍ତି ନାହିଁ ତ, ମଣିଷ ପରି କାରବାର ହୁଅନ୍ତି । ତାଙ୍କର ସ୍ତ୍ରୀଙ୍କର ପ୍ରେତାତ୍ମା ଗୁଣିଗାରେଡ଼ି ମାନିଲା ନାହିଁ । ପରେ ସେ କଲେଜରେ ପଢ଼ିବାକୁ ଚାଲିଗଲେ । ବିଦେଶରେ ଥାଇ ପାଠ ପଢ଼ିଲାବେଳେ ସ୍ତ୍ରୀଙ୍କର ପ୍ରେତାତ୍ମାକୁ ବିଦେଶରେ କେବେ ସେ ଦେଖିନାହାନ୍ତି । ଛୁଟିରେ ଘରକୁ ଫେରିଲେ ପୁଣି ସେ

ପ୍ରେତାତ୍ମା ଆସି ହରବର କରେ । ଏହାର ପ୍ରତିକାର ପାଇଁ ପିତାମାତା ଓ ନନ୍ଦୁବାବୁ ସ୍ଥିର କଲେ ଯେ ତାଙ୍କୁ ଅନ୍ୟ ଘରେ ବାହା କରିଦେଲେ ପ୍ରେତ ଅପସରି ଯିବ ।

କୌଣସି ଘଟଣା ଛପି ରହେ ନାହିଁ । ମହାରଥୀଙ୍କ ପ୍ରଥମା ଯେ ପ୍ରେତନୀ ରୂପ ଧରି ଆସୁଛି, ଏ ଘଟଣା କ୍ରମେ ମୁହଁରୁ ମୁହଁ ଡେଇଁ ସହରଆଡ଼େ ପ୍ରଚାରିତ ହେଲା । ଏହା ଯେ ଚୁଣ୍ଡପିଶାଚ ଓ କର୍ଣ୍ଣପିଶାଚଙ୍କ କୃତ, ତାହା ତୁମେ ଜାଣ । ତାଙ୍କୁ କେହି ଝିଅ ଦେବାକୁ ରାଜି ହେଲେ ନାହିଁ । କହିଲେ, କଅଁଳା ସବୁଜୁଣୀଠୁଁ ମଲା ସଉତୁଣୀର ପ୍ରେତନୀ ଆହୁରି ଭୟଙ୍କର । ମାରି ତ ଦେବ । କିନ୍ତୁ କେତେ ପ୍ରକାରେ କେଳେଙ୍କାରୀ କରାଇ ଶେଷକୁ ଦଦନ ମାରିବ । କାହାକୁ ମାରିବ କିଏ ଜାଣେ ? ନିଜର କୋଳ ଝିଅକୁ ମାରିଦେବାଠାରୁ ମହାରଥୀଙ୍କ ଘରକୁ ବୋହୂ କରି ପଠାଇବା ଅଧିକ କଦର୍ଯ୍ୟ କଥା । କେଉଁ ବାପ ଧବକୁଅଁ ଦେଲେ ନାହିଁ । ସମସ୍ତେ ଜାଣିଗଲେ, ମହାରଥୀ ଆଉ ବାହା ହୋଇପାରିବେ ନାହିଁ । ପ୍ରେତନୀକୁ ନେଇ ସଂସାର କରିବେ ।

—ଅନିସୀ ପଚାରିଲା, ଡଲିବୋଉଆଈ ଆସିଲେ କିପରି ? ତାଙ୍କର ବାପ ମା ନ ଥିଲେ କି ?

— ଅସିତ କହିଲା, ତମ ଡଲିବୋଉ ଆଈଙ୍କର ବାପ-ମା ଥିଲେ । ଏବେ ବି ବୁଢ଼ାବୁଢ଼ୀ ବଞ୍ଚିଛନ୍ତି । ପ୍ରେତପରି ଗପ କରି କହନ୍ତି । ପ୍ରସ୍ତାବ ନେଇ ସେମାନେ ଆସି ନ ଥିଲେ । ମହାରଥୀଙ୍କ ଉଦ୍‌ବିଗ୍ନ ପିତା ସେମାନଙ୍କ ପାଖକୁ ଯାଇ ତୁମ ଆଈଙ୍କୁ ବୋହୂ କରିବେ ବୋଲି ମାଗିଲେ । ବୁଢ଼ାବୁଢ଼ୀ ଆଗରୁ ସବୁ ଖବର ଜାଣିଥିଲେ । ତଥାପି, ସେମାନେ ରାଜି ହେଲେ । ସେମାନେ ଏମିତି ପାଞ୍ଚଟିଏ ଲେଡ଼ୁଥିଲେ । ତାଙ୍କ ଝିଅଟି ସ୍ୱାମୀ ହରାଇ ଶାଶୁଘରେ ଥିଲା; କିନ୍ତୁ ପୂର୍ବର ପ୍ରେତାତ୍ମା ସେ ଘର ଛାଡ଼ିଲା ନାହିଁ ! ସେତପଡ଼ିଙ୍କ ପ୍ରଥମା ଯେପରି ରାତି ଅଧରେ ଆସି ତାଙ୍କୁ ହରବର କରୁଥିଲା, ଅତକାଳ ସେହିପରି ନରଦେହ ଧରି ଆଈମାଙ୍କର ପ୍ରଥମ ପତି ପ୍ରତି ରାତିଅଧରେ ଆସି ଆଈଙ୍କୁ ହରବର କରିବାକୁ ଲାଗିଲା ?

— ଯାଃ, ମିଛ କଥା ! ଆଈ ତାଙ୍କୁ ସ୍ୱପ୍ନ ଦେଖୁଥିବେ । ତୁମେ ମୋତେ ବଯାରେ ଏକା ଛାଡ଼ି ଦୁଇ ବ୍ୟବଦନ ପାଇଁ କେବେ ଗସ୍ତରେ ଗଲେ ମନ ଧକଧକ

ହୁଏ । ବର୍ଷକତଳ ପାହାଡ଼ ଖୋଲ କଥା ମନେପଡ଼େ । ନାମ କରିବାକୁ, ପଢ଼ି ପଢ଼ି କରିବାକୁ ଇଚ୍ଛା ହୁଏ ନାହିଁ, ଖାଲି ଜାନ ମାନେ ।

ରାତିରେ ତୁମକୁ ସ୍ୱପ୍ନ ଦେଖେ । କିନ୍ତୁ, ସ୍ୱପ୍ନ ବୋଲି କେବେବେଳେ ମନେହୁଏ ନାହିଁ । ତୁମର ସବୁ ସ୍ନେହଆଦରର ଉଚ୍ଛ୍ୱାସ ହାସ୍ୟତାମସା ଖେଳକୌତୁକ, ରାଗରୋଷ, ମାନ-ଅଭିମାନ ମୋ ମନରେ, ଆଖିରେ, ଦେହରେ, ରକ୍ତରେ, ସତ ହୋଇଉଠେ । କେତେବେଳେ ନିଦ ବାଉଳାରେ, କି ସପନ ଘୋରରେ ହାତ ବଢ଼ାଇ ଲାଜରେ ହୋଇ ଛୁ, ଛୁ କହି ଟିପୟ ଉପରେ ଜଳୁଥିବା ଆଲୁଅକୁ ଲିଭାଇଦିଏ । କେତେବେଳେ ସେ ଲିଭି ଯାଇଥାଏ ମୋତେ ଅଜଣା । ତୁମରି ପାଖରେ ମୁଁ ଲୁଟ୍‌କରି ଶୋଇପଡ଼େ ।

ରାତି ପାହିଲେ ନିଦ ଭାଙ୍ଗିଲେ ମୁଁ ଆଖି ଖୋଲି ଆବାକାବା ହୋଇ ଚାହେଁ ଗୋ ! ହଠାତ୍ ମନେହୁଏ, ତୁମେ ମୋ ଆଗରୁ ଉଠି କେତେବେଳୁ ପଢ଼ାକୁ ଚାଲିଗଲଣି । ଧଡ଼ପଡ଼ ହୋଇ ପଲଙ୍କରୁ ଉଠି ତଳକୁ ଓହ୍ଲାଇ ଦେଖେ ଯେ କବାଟ ବନ୍ଦ ଅଛି । ବଡ଼ ଆଇନାରେ ନିଜକୁ ଚାହେଁ, ହସ ମାଡ଼େ । ଜାଣ, ମୁଁ ସପନ ଦେଖିଲି, କେତେଥର ତୁମକୁ କହିଛି ।

ଅସିତ ମୁଗ୍ଧ ହେଲା, ଉତ୍ତେଜିତ ହେଲା । ଅତସୀକୁ ନିବିଡ଼ ଆଲିଙ୍ଗନ କରି ସ୍ନେହର ଚୋଟାନରେ ନିସ୍ତାନ୍ତ କଲା । କହିଲା, କେତେ ଥର କହିଛ ଯେ ଏତେ ସୁନ୍ଦର ଭାବରେ ଓ ଭାଷାରେ କହି ନ ଥିଲ । ତୁମର କଥାକୁ ତୁମର ନିଜ ଟାଣି ଓଟାରି ଧରେ । ଧୀରେ ଧୀରେ ପଦା ହୁଗାଳେ । ଆଜି କହିବାକୁ ଲାଜର ବାଧା ନାହିଁ ।

—ତୁମର ସ୍ନେହ ଅତି ଚୋଫାନିଆ, ଅତି ଉତ୍ପାତିଆ ପୁଣି ବାଘମୁହାଁ । ଚିର୍ଷିବିଦାରି ପୁଳା ପୁଳା କରି ମାଂସ ଖାଇବାକୁ ମନକର ନାହିଁକି ? ଏକାଥରେ ଚାକୁଳିକରି ଗିଳି ଦେଉ ନ ? ମୋ ନିଜ ସରମ ସବୁ ତ ତୁମକୁ ସମର୍ପି ଦେଇଛି ।

—ମତେ କ୍ଷମାକର ଅତସୀ, ଦେହି ପଦପଲ୍ଲବମୁଦାରମ୍ । ମୁଁ ଅଜାଣତରେ ଟିକିଏ ଉନ୍ମାଦିଆ ହେଲି । ତୁମେ ପ୍ରତିଶୋଧ ନିଅ, ଶଠେ ଶାଠ୍ୟଂ ସମାଚର । ମୁଁ

ବାଧା ଦେବ ନାହିଁ । ହଁ, ମନେ ପଡ଼ିଲା, କଦବୁଝଠି ତୁମେ ଯେତେବେଳେ ଦେଖ ଯେ ମୁଁ ପାଖରେ ନାହିଁ, ତୁମେ କଅଣ କର ମୁଁ ଜାଣେ । ସେତକ ତୁମେ ନ କହି କପଟ ଭଗ ଲୁଚାଇଲ, କହିବ ?

—କଏ ମନାକରୁଛି ?

—ଚେତ ଚମୁଙ୍ଗ ଘୁଞ୍ଚିଲ ଜଣି ନାଣେ ପାଣେ ନାହିଁ ଦବ୍ୟ ଚତୁଣ । ହେଇଠୁ ତୁମେ କଣ କଲକ, ଶେଷ ଲେଞ୍ଜଟାଇ କବଣ୍ଣ ଫିଟାଇ···

—ଅତସୀ ଅସିତର ପଂକ୍ତିରେ ହାତଦେଇ ବାକି ଅଂଶଟା କୁହାଇ ଦେଲା ନାହିଁ । କେବଳ କହିଲା, ମୁଁ ରାଜକନ୍ୟା ଲାବଣ୍ୟବତୀ ନୁହେଁ । ତୁମେ ମୋର ପ୍ରେମିକ ଚନ୍ଦ୍ରଭାନୁ ନୁହଁ । କପଟ ଦେଖି ବେତାଳ ନାମରେ ମୁଁ ଅଜଣା ଲୋକର ପ୍ରୀତି ଭାଗୀକୁଣୀ ହୋଇ ସ୍ୱପ୍ନ ଦେଖି ନ ଥିଲି । କାଳେ ମୋର ମନର ଆଶା ନ ଫଳିବ ଏଇ ଅନିଶ୍ଚିତତା ପାଇଁ ବିକଳ ହୋଇ ରାଧା-ବଇଅଣୀ ହେବାର ପ୍ରୟୋଜନ ମୋର ନ ଥିଲା । ତେଣୁ, କବାଟ ଖୋଲି ପଦାକୁ ବାହାରିଲି ଘରର ଘରଣୀ ହୋଇ । କାମରେ ମନଦେଲି, ଆଜିର ଅଭି ସେମିତି ସ୍ୱପ୍ନ ଦେଖୁଥିଲେ । ସତ ପରି ତାଙ୍କର ମନେ ହେଉଥିଲା ।

ଅସିତ କହିଲା, ପ୍ରେତପତି ସେ କଥା ମାନିବେ ନାହିଁ । ଯେ ଆସୁଥିଲା ସେ ସ୍ୱଦେହରେ ଆସୁଥିଲା ।

ଦଶ ମାସ ପରେ ଶାଶୁଘରେ ଅଭିଙ୍କର ଦିବ୍ୟ ସୁନ୍ଦରୀ କନ୍ୟାଟିଏ ହେଲା । ଅବିକଳ ତା ବାପର ମୁହଁ ନାକ କାନ ଭ୍ରୂଲତା କପାଳ । ସ୍ୱାମୀ ମରଣର ପାଞ୍ଚଦିନ ପରେ ସେ ନାରୀପ୍ରସ୍ତ୍ରବିନୀ ହୋଇଥିଲେ । ସେ ଝିଅଟି ଯେ ପ୍ରେତ-ପିତାର କନ୍ୟା, ଏଥିରେ ସନ୍ଦେହର ଅବକାଶ ନାହିଁ ।

ସଂସାର ଜାଣିଲା, ଝିଅ ପେଟରଣ୍ଡା କିନ୍ତୁ ଆଭିଙ୍କର ଶାଶୁ ଜାଣିଲେ ଝିଅଟି ତାଙ୍କ ପୁଅର ପ୍ରେତପୁରୁଷର । ପିଲା ସଂସାରକୁ ଆସିଲାଦିନୁ ପ୍ରେତାତ୍ମା ଆଉ ଆସିଲା ନାହିଁ । ଥରେ ହେଲେ ସ୍ୱପ୍ନରେ ଦେଖିବାକୁ ଯୁବତୀଆଭି ଯେତେ ମନେପକାଇ କନ୍ଦାକଟା କଲେ, ସ୍ୱାମୀଙ୍କୁ ସ୍ୱପ୍ନରେ ଦେଖିଲେ ନାହିଁ ।

ପିଲାଟିକୁ ବର୍ଷ ପୂରିଲା ପରେ ପ୍ରେତପଣ୍ଡା ଆଉଙ୍କୁ ବିବାହ କଲେ । ଝିଅ ଅବଶ୍ୟ ତାର ଅଜା ଆଈଙ୍କ ପାଖରେ ଆଉ ବର୍ଷମାସ ରହିଥିଲା, କିନ୍ତୁ ପ୍ରେତପଣ୍ଡା ନିଜେ ଯାଇ ପରେ ସେ ଟିକି ଝିଅକୁ ନେଇଆସିଲେ ।

—ମଧୁରଥୀବାବୁ ଆଉ ଥରେ ବିବାହ କଲା ପରେ ତାଙ୍କର ପ୍ରଥମା ଆସି ସପତ୍ନୀ ବାଦ ସାଧିନାହାନ୍ତି ?

ସେ କଥା ଯାହୁ କେବେ ତାଙ୍କୁ ଦେଖିନାହାନ୍ତି; କିନ୍ତୁ ପ୍ରଥମା ଥରେ ଦ୍ୱିତୀୟାଙ୍କ ଦେହରେ ଅଗ୍ନି ନେଇ ତାଙ୍କୁ ହଟହଟା କରାଇଥିଲେ । ଏ ଘଟଣା ବାହାଘରର ଦଶଦିନ ପରେ, ଦିନେ ସନ୍ଧ୍ୟାରେ । ରୁମର ସେବକାର ପୁତଣୀଆଈ ତା'ହାତିଆ ଖସ୍ତନେଲେ ବାରିଆଡ଼କୁ ଯାଇଥିଲେ । ବଗିଚା ଭିତରେ ଯେଉଁ ଚଳବଟ ଗୋଟାର ଦଣ୍ଡାଅଟେ ପଡ଼ିଛି, ସେହି ବାଟରେ ପ୍ରଥମାଙ୍କର ପ୍ରେତାତ୍ମା ଯା-ଆସ କରେ ବୋଲି ପ୍ରେତପଣ୍ଡା ଓ ଅନ୍ୟ ଲୋକଙ୍କଠାରୁ ସେ କେତେ ଥର ଶୁଣିଥିଲେ । ଜଙ୍ଗଲିଆ ବାଟରେ ଭଣ ଖସ୍‌ଖସ୍ ହେଲା । ସେ ମଣିଲେ, ତାଙ୍କର ସହୋଦରଙ୍କର ପ୍ରେତଦେହ ! ଡରିଲେ, କାହାକୁ କିଛି ନ କହି ତରତର ହୋଇ ଘରକୁ ଫେରିଲେ । ପ୍ରଥମା ସେ ତାଙ୍କ ଦେହରେ ପଶିଛି, ଏହା ସେ ଜାଣିପାରିଲେ ନାହିଁ, ଶୋଇପଡ଼ିଲେ ।

ପନ୍ଦରଦିନ ଲାଗିଲା । ନୂଆବୋହୂ କାହିଁକି ଅବେଳାରେ ଶୋଇଛି ବୋଲି ଶାଶୁ ଦେଖିବାକୁ ଗଲେ । ପ୍ରେତପଣ୍ଡା ଘରେ ନ ଥାନ୍ତି । ନୂଆ ସ୍ତ୍ରୀକର ପାଇ ସେ ଅଛନ୍ତି ତାଙ୍କ ସ୍ତ୍ରୀକର ଗାଁରେ । ବୋହୂ କଣ ଭୁଣ୍ଡୁଭୁଣ୍ଡୁ ହୋଇ କହୁଛି ନିଦରେ । ଦାନ୍ତ ରଗଡ଼ୁଛି ।

ଶାଶୁଙ୍କର ହାଲୁକ ଶୁଖିଲା । ସେବକାଳର ସୋଟଡା ବୁଦ୍ଧିମତୀ ଘରଣୀ ସେ ଅଭଗୀ, ନୂଆବୋହୂର ନିଦ୍ରିତ ମୁହଁକୁ ଚାହିଁଦେଇ ସେ ଚିହ୍ନିପାରିଲେ ସେ ପୁଅକୁ ଛାଡ଼ି ତାଙ୍କ ଆଗବୋହୂ ଅପଣା ନୂଆବୋହୂ ଠେଇଁ ବାଦ ସାଧିବାକୁ ଆସିଲାଣି, କାବୁଛ ହୋଇ ସେ ବୋହୂକୁ ହଲାଇଦେଲେ ।

ଅନ୍ତବ୍ୟସ୍ତ ହୋଇ ଗୃହ ଆଈ ଉଠି ବସିଲେ । ବଲ ବଲ କରି ଚାରିଆଡ଼କୁ ଚାହିଁଲେ, ସତେ କି କାହାକୁ ଖୋଜୁଛନ୍ତି ! ଶାଶୁଙ୍କୁ ଦେଖି ମଧ୍ୟ ସେ ଦେଖିପାରୁନାହାନ୍ତି ।

ବୁଢ଼ୀ ଶାଶୂ ଉପସ୍ଥିତ ହୋଇ ପଚାରିଲେ, ହଇ ଲୋ, ତୁ କିଏ ବା ?

—ମୁଁ ଅପର୍ଣ୍ଣା ।

—ଆଲୋ, ତୁ ପୁଣି କାହିଁକି ଏ ଘରକୁ ଆସିଲୁ ? ମଲୁ ତ ଗଲୁ । ମୋ ପୁଅକୁ ହରବର କରି ଏତେ ସର୍ବନାଶ କଲୁ । ତା କଣ୍ଠ ଦୋହଲିଲା । ମନ୍ତ୍ରଯନ୍ତ୍ର ମାନିଲୁ ନାହିଁ । ଯେତେ କେହୁରି ହେଲି ଶୁଣିଲୁ ନାହିଁ । ସୁବର୍ଣ୍ଣ ପ୍ରତିମା ପରି ଅଧିଅଠା ବୋହୂଟିଏ ମୁଁ ଘରକୁ ଆଣିଲି । ତୋ ଉତ୍ପାତ ଖବର ପାଇ କେହି ଝିଅ ଦେବାକୁ ମଙ୍ଗିଲେ ନାହିଁ ଲୋ ସତ୍ୟାନାଶୀ ! ଏଇ ବୋହୂଟିକୁ ଆଣିବାପାଇଁ କେତେ ତପସ୍ୟା କଲୁ । ତା ବାପ ମଙ୍ଗିଲେ; କିନ୍ତୁ ତା ଆଗ ଶଶୁର ମଙ୍ଗିଲା ନାହିଁ । କେତେ କୁହାବୋଲା କରି ଦାନ୍ତରେ ତୃଣ ଧରି ତୋ ଶଶୁର ତା ଶଶୁରକୁ ମନେଇଲେ । ପେଟରେଣ୍ଡ ସାନ ଝିଅଟା କେମିତି ବଞ୍ଚନ୍ତା ? ମା କ୍ଷୀର ତ ଖାଉଛି । ଏକଥା ସେ କହିଲାରୁ ଦୁହାଁଳୀ ଗାଈ ଓ ବାଛୁରୀ ଦେବାକୁ ତୋ ଶଶୁର ମଙ୍ଗିଲେ । ଆଉ ଆଉ ଖରଚ ପାଇଁ ଲୁଚେଇ କରି ଦୁଇଶ ଟଙ୍କା ଦେଲେ ।

—ସେ ଗାଈବାଛୁରୀ ମୋର, ସେ ଟଙ୍କା ମୋର ।

—ତୁ ସତ ନା ଲୋ ଅପର୍ଣ୍ଣା ! ତତେ ମୁଁ ଏତେ ଗେହ୍ଲା କରି ବଢ଼େଇଥିଲି । କୋଳରେ ବସାଇ ଛତାଣିପିଲି ପରି ଖୋଇ ଦେଉଥିଲି । ନିଜ ହାତରେ ଘଷି ମାଜିଦେଇ ଗାଧୋଇ ଦେଉଥିଲି । ପେଡ଼ିରୁ କାଢ଼ି ସରସିଆ ଶାଢ଼ି ପିନ୍ଧାଇ ନିଜ ହାତରେ ସଜେଇ ଦେଉଥିଲି ଲୋ ଅପର୍ଣ୍ଣା ! ମୋର ତ ଆଉ ଛଅଟା କି ନଅଟା ନ ଥିଲେ, ତୁ ତ ଥିଲୁ ମୋର ଦୁଇ ଆଖି । କାଲେ କେଉଁଠି ଚମକିପଡ଼ି ଡରିବୁ ବୋଲି ଗୁହ ପରି ମୁଁ ତୋ ପଛେ ପଛେ ଥାଏ, ତୁ ଅପଢ଼ଥାଣୀଟା ପରି !

ତୋ ହାତରେ ପାଣି ଟିକେ ଲଗାଇ ଦେଇ ନ ଥିଲି । ଶାଶୂ ବୋଲି ତୁ ଗୋଡ଼ରେ ହାତ ଦେଲେ ତତେ ମୁଁ କୋଳକୁ ଟାଣିନେଉଥିଲି । ତତେ କୋଳ ଦେଇ କହୁଥିଲି, ଏବେ ମୋର ବଳ ବୟସ ଅଛି; ବୁଢ଼ୀ ହେଲେ, ଗୋଡ଼ହାତ ଅଚଳ ହେଲେ ସେବା କରିବୁ । ଏବଠୁ କାହିଁକି ତରତର ? ଗାଁର ଝିଅପଣ ପାଞ୍ଚ ମାଇପେ ମତେ ଛଳେଇ କହୁଥିଲେ, ଆଲୋ, ବୋହୂ କରି ଆଣିଛ ନା ଝିଅ

କଣ ବା ? ମୁଁ ତାଙ୍କୁ କହିବ ଯେ, ସେଇ ମୋ ବୋହୂ, ସେଇ ମୋ ଝିଅ । ବୁଢ଼ୀ ମାଇପେ ଅଙ୍କଟି କହନ୍ତି, ଏବେ ଶରଧା ଭଲ ଲୁହେ ।

—ଶାଣ୍ଢ ବାଛୁରୀ ମୋର, ଝଙ୍କା ମୋର !

—ମୁଁ ମନାକରୁ ନାହିଁ ଲୋ ଅପଣା : ହେଲେ, ତୁ ମୋ ଘରେ କାଠ ମାଳ ଗ୍ଳଲଗଲୁ । ସେ ଗାଈ, ସେ ଝଙ୍କା ତୋର କ ଲଭରେ ଆସନ୍ତା ? ଏଇ ବୋହୂର ଶାଶୁ ମର୍ଚ୍ଛିଲ ପିନା, ବୋହୂ ମୁଣ୍ଡ ଢ଼ଳେଇଦେଲ । କହିଲ, ପିଲକୁ ଗ୍ରହି ମୁଁ ନ ଯାଏ । ଆଲେ କାହିଁକି ? ଏକଥା ତା ଶାଶୁ ତାକୁ ପଗ୍ଗରଲରୁ ସେ କହିଲ, ତମ ପୁଅ ସେ ପୁରକୁ ଗଲ ଦନ ଏ ଝିଅ ମୋ ପେଟରେ ନ ଥିଲ । ତମ ପୁଅ ନଜ ରୂପ ଧର ନଢ ଘଢରେ ଆସେ, ଝିଅ ପେଟରେ ରହିଲ ।

ଝିଅ ଜନମ ହେଲ ଦନୁ ସେ ସିନା ଆସିନାହିଁ । ତାକୁ ଗ୍ରହି ଗଲେ ସେ ପୁଣି ଆସିବ, ମୋ ଝିଅକୁ ନେବ, ମତେ ନବ ।

ତା ଶାଶୁ କହିଲ, ଆଉ ସେ ଆସିବ ନାହିଁ । ମୁଁ କମିଆ କରୁଛୁ । ଏ ଟିକ ଝିଅକୁ ମୁଁ ପାଳବ । ତୋ ଦୁଃଖ ମୁଁ ସହିପାରିବ ନାହିଁ । ଆଜଯାଏ ତୁ ବୋହୂ ହୋଇଥିଲୁ । ଏବେଠୁ ହେଲୁ ମୋ ଝିଅ, ପରଘରକୁ ଯାଇ ସୁଖରେ ରହ ।

ସେ ମର୍ଚ୍ଛିଲ । ତୁ ଗ୍ଳଲ ଯା ଅପଣା ! ଆଉ ହଟହଟା, ଲୋକହସା କର ନାହିଁ ! ତୋ ଶରଣ ପଶୁଛୁ ।

ମୁଁ ନ ଯାଏଁ । ଏଇଟା ମୋ ଘର, ଏଇ ପଲଙ୍କରେ ମୁଁ ଶୋଉଥିଲ । ସେଇ କାଠ ଅଲମାରୀରେ ମୁଁ ଶାଢ଼ି ରଖୁଥିଲ । ଏଇ ଘରେ ମୁଁ କାରବାର ହେଉଥିଲ । ମତେ ଘର ଅଧରେ ଏକା ଗ୍ରହି ତମ ପୁଅ ମଶାଣିକ ପଳେଇଥିଲ । ମଶାଣିଭୂତ ପର ସେଇ ଘରଅଧରେ ତମ ଶଶୁରବୁଢ଼ାର ଭୂତ ଆସି ମୋ ହାତ ଧର ଘିଚି ଘିଚି କର ପଲଙ୍କରୁ ଘୋଷାରନେଇ ଦୁଆରେ କରିଦେଲ । କହିଲ, ପଳା ପଳା, ମୋ ଖଟରେ ମୋ ଘରେ କାହିଁକ ଶୋଇଛୁ ? ମୋ ମୂର୍ଚ୍ଛା ଭାଙ୍ଗିଲରୁ ଦେଖିଲ, ଆଗରେ ସେ ବୁଢ଼ା ନାହିଁ । ଠିଆ ହୋଇଚୁ ଚଣ୍ଡୀ ! କ ଭୟଙ୍କର ଦଶୁଚୁ ! କହିଲ, ତୋ ରକ୍ତ ଶୋଷିବ, କେତେ ଦନରୁ ଉପାସ ଅଛୁ । କେହୁ ମତେ ପାଣି ପଣ୍ଡା ଦେଲେ ନାହିଁ ।

—ସେ ସବୁ କଥା ଅଉ କହ ନା । ଯାହା ହେବାର ହୋଇଯାଇଛି ଲୋ ଅପର୍ଣ୍ଣା, ଏବେ ତୁ ଫିରୁଛି, ଯାଆ ।

—ତମ ନୂଆବୋଉ, ସପନଙ୍କୁ ନେବ । ତେବେ ଯାଉଁ ଫିର । ବାପ ଘରେ ମିଶଗର ନାହିଁ ଦେଖି ନାହିଁ !

ଅପର୍ଣ୍ଣା କହିଲା, ଜାଣିଲ ଏଥର, ଆମ ଉଲ୍ଲବୋଉ ଅଣ୍ଟନ ନାମ ମ. ସପନା, ଶ୍ରୀମତୀ ସ୍ୱପ୍ନାବତୀ ଦେବୀ ହୋଇଥିବ । ହେଲେ ପଚାରିଲେ ସେ କହନ୍ତି ନ ଥିଁ ଖାଲି ସ୍ୱପନ୍ତ । ଅତ ଜିଗର ଲଗାଇଲେ କହନ୍ତି, ଚୁଲ୍, ପାଉିଶ । ନିଜ ନାମ ତୁଣ୍ଡରେ ଉଚ୍ଚାରିବାକୁ ତାଙ୍କୁ ଲଜ ମାଡ଼େ କ ଡର ମାଡ଼େ । ଏଥର ଦେଖି ହେଉଛି ଡାକିବ ସପନା ଆଈ ।

ଅସିତ କହିଲା, ଖାଲି ଆଈ ବୋଲି ଡାକିଲେ ଯଦି ଚଳିବ ସପନା ନାମଟା ନ ଉଚ୍ଚାରିଲେ ଭଲ । ଯେଉଁ ନାମଟା ତୁଣ୍ଡରୁ ଖସିଲେ ଭାଲେ କଏ ଶ୍ରେୟ ବିଇକେବ, ଏପରି ଧାରଣା ତାଙ୍କ ମନରେ ନ ଥାଇ ପାରେ, ତେବେ ସେଇ ନାମଟା ସଙ୍ଗେ କେତେ ଦୁଃଖସ୍ମୃତି ଜଡ଼ିତ ହୋଇଥିବ । ମନେପଡ଼ିଲେ ଦୁଃଖ ହେଉଥିବ । ପୁଣି, ତାଙ୍କ ସ୍ୱର୍ଗତ ସ୍ୱାମୀଙ୍କ ଘର ଛାତରୁ ଡ଼ୁଇ ଭୂତ ତାଙ୍କ ନାମରେ ଯୋଡ଼ିହୋଇ ରହିଛି । ନିଜ ନାମ ଉଚ୍ଚାରିଲା ବେଳକୁ ସେଇ ଭୟଙ୍କର ପ୍ରେତାତ୍ମାର ମୂର୍ତ୍ତି ଆସି ଆଖି ଆଗରେ ଠିଆହୋଇଯାଉଥିବ । ପ୍ରେତପେତଙ୍କ ଧାରଣା, ସେଇଟା ଏବେ ବି ଘରେ ଘରେ ଗୋଡ଼େଇଛି । କେବେ କେବେ ନିଜ ରୂପ ଧରି ଠିଆ ହେଉଛି । ସର୍ବନାଶବାଦ ସେ ସନ୍ଧ୍ୟାପାରୁ ନ, ଅପର୍ଣ୍ଣା !

ଅପର୍ଣ୍ଣା ପଚାରିଲା, କହ ମ, ସପନା ଆଈଙ୍କର ଶାଶୁ କ ବୁଦ୍ଧି କଲେ ? ସପନାଙ୍କ ଦେହରୁ ଅପଶକ୍ତି ପ୍ରେତକୁ କପରି ତଡ଼ିଲେ ?

ଅସିତ କହିଲା, ତାଙ୍କର ବୁଦ୍ଧି ଦିଶିଲା । ବୋହୂର ଜୀବନ ରଖିବାକୁ ସଙ୍ଗେ ସଙ୍ଗେ ଗୁଣିଆ ଡକାଇଲେ । ଗୁଣିଆମାନେ ଯାହା କରନ୍ତି, ସେ ସେଇଆ କଲା । ମନ୍ତ୍ରପାଠ, ଜପ, ଉତ୍ର ଗନ୍ଧର ଧୂପ, ଯାଉଁଳି ବେତରେ ଭୂମିକୁ ପ୍ରହାର, ନିଜ ଦେହରେ ବ୍ରହ୍ମଗୁଣ୍ଡା, ସପନାଙ୍କ ମୁହଁରେ ପାଣି ଛିଟା ଇତ୍ୟାଦି । ତା ପରେ ଗର୍ଜନ

ତର୍କ କରି ପୁଣିଆ ପଚାରିଲେ, ମିଛ କି ନାହିଁ କହ. ନୋହିଲେ ମଶାଣିଚଣ୍ଡୀ ଉଜାଡ଼ିବ । ସେ ଆସି ତୋତେ ଗୋଷ୍ଠୀ ନେବ ନେ ଆମ । କହ, ମିଛ କି ନାହିଁ ।

ତେଣୁ, ମଗଜ ଝଣଝଣେଇ ଉଠିଲା. ହେଉ ସେ ଆସୁ, ମଶାଣିଚଣ୍ଡୀ ଆସୁ, ମୁଁ ମିଛ, ମୁଁ ମିଛ, ମତେ ପାଣି ଗଣ୍ଡାଏ ଦେ ।

ଜଣେ ଆସି ପାଣି ଗଣ୍ଡାଏ ଦେଇଗଲେ । ମନର ବୋଝଏ ନେଇ ହେବ ବା ଗଲା । ମଗଜ ମଳଙ୍ଗରୁ ଉଠିଆସିଲା । ପାଣି ଗଣ୍ଡକ ତା'ପରେ ଆଣ୍ଠୁ ଉପରେ ପେଟ ଭିତରକୁ ଆସିଲା । କୁଆଡ଼େ କମ୍ପ ହୋଇ ପଡ଼ିଲା, ମୂର୍ଚ୍ଛା ଗଲା । ପାଣି ଗ୍ରହଣରୁ ଚେତେଚେତେ ଚେତନା ଆସିଲା । ଆଖିଆଗରେ ଓ ଏତେ ଲୋକଙ୍କୁ ଦେଖି ସେ ହାତେ ଓଢ଼ଣା ଦେଇ ଉଠିବସିଲା ।

ଶାଶୁଙ୍କୁ ପଚାରିଲେ. ବାହାର କଣ ହୋଇଛି ? ଏତେ ଲୋକ ଏଠାରେ କୁଣ୍ଢ ହୋଇଛନ୍ତି କାହିଁକି ? ଶାଶୁ କହିଲେ, ଅପଣାର ପ୍ରେତ ଗ୍ରସ୍ତ ପରି ଲାଗିଥିଲା । ବୋଧହୁଏ ପିଠି ଆଉଁସି ତା ହାତ ଧରି ଘରକୁ ନେଲେ ।

ପାଳି ଭାଙ୍ଗିଲା, ଜିଏ ଯାଆନ୍ତେ ଗଲେ ।

— ହଇ ହୋ, ଅଗଣାର ପ୍ରେତ ଯଦି ନ ଥିଲା ତ ତାଙ୍କ ଦେହରେ କିଏ ପଶି ଏତେ ହଟହଟା କରେଇଲା ?

— ପ୍ରେତାତ୍ମା ନାହିଁ, କି ସେ ଭଳି ନ ଥିଲା ଏହା ସାହସ କରି କିଏ କହି-ପାରିବ, ଜାଣିଛି ? କିଏ ପୁଣି ଚାଣକ୍ୟର କହୁଥାଏ ଯେ ପ୍ରେତ କେଉଁ ରୂପ ଧରି ଆସେ ନାହିଁ ? ଏତେ ଶାସ୍ତ୍ରପୁରାଣ ଗ୍ରନ୍ଥ ପଢ଼ିଛି ପୁଣି ଚିନ୍ତିଛି. ସେଥିରେ ଯାହା ସବୁ ଲେଖାହୋଇଛି ତାକୁ ଜନମାନଙ୍କର କଳ୍ପନା ଓ ମିଛ ବୋଲି ଯଦି ଉଡ଼ାଇଦେବ ତ ମୋର କିଛି କହିବାର ନାହିଁ ।

— ମିଛ ବୋଲି ଉଡ଼ାଇଦେବ କିଏ ? ପାପ ହେବ, ନରକରେ ସ୍ଥାନ ମିଳିବ । ଭକ୍ତିପଦ ପଢ଼ି ବିଶ୍ୱାସ କଲେ ଧର୍ମ ହେବ, ମଲେ ମୋକ୍ଷ ମିଳିବ । ଶାସ୍ତ୍ରପୁରାଣରେ ଏହା ବି ଲେଖାହୋଇଛି, ବିଶ୍ୱାସ କରିବାକୁ ପଡ଼ିବ ।

— ଲେଖା ହେବା ସ୍ୱାଭାବିକ ଗୋ ଅତସୀ, ନୋହିଲେ ତୁମେ ଆମେ କପରି ବିଶ୍ୱାସ କରିବା ଯେ ପଶୁପକ୍ଷୀ, ସାପ ଇତ୍ୟାଦି ମଣିଷ ପରି କଥା କହୁଥିଲେ, ବୃକ୍ଷସମାନେ ନିଜ ଇଚ୍ଛାମତେ ରୂପ ବଦଳାଇ ପାରୁଥିଲେ ? ଦେବାଦେବୀ କାହାର କାହାର ଅଧିକ ଆଖି, ହାତ ଓ ମୁଣ୍ଡ ଥିଲା, ମଣିଷ ଦେହରେ ହାତୀର ମୁଣ୍ଡ ଥିଲା । ଭୁବନମୋହିନୀ ସୁନ୍ଦର ସ୍ତ୍ରୀ ଦେଖି ଅଶରୀରୀ ଦେବତାମାନେ ନାରୀମାନଙ୍କ ପରିବେଶ ଧରି ପତିର ଅନୁପସ୍ଥିତିର ସୁବିଧା ସୁଯୋଗ ନେଇ ପତିତ୍ୱ କରୁଥିଲେ । ଫଳେ ସ୍ତ୍ରୀ ବି ଚିହ୍ନିପାରୁ ନ ଥିଲା ।

ଏପରି ଅନେକ ଉପାଖ୍ୟାନ ଅଛି ।

ଆହୁରି ମଧ୍ୟ ବର୍ଣ୍ଣନା ଅଛି, ପବନ, ଧର୍ମ, ସୂର୍ଯ୍ୟ ଇତ୍ୟାଦି ନରଦେହଁ ଧରି ଆସି ପରସ୍ତ୍ରୀକୁ ପ୍ରେମ କରି ପୁତ୍ରବତୀ କରାଉଥିଲେ । ଯଦି ଏସବୁ ସତ ବୋଲି ଗ୍ରହଣ କରାଯାଏ ତେବେ ପ୍ରେତପତିଙ୍କ ଏ ଯୁଗର 'ପ୍ରେତାତ୍ମା ପୁରାଣ' ଗ୍ରହଣ କରିବାରେ ବାଧା ଉପୁଜିବ କାହିଁକି ? ପ୍ରେତପତିଙ୍କ ପ୍ରଥମାର ପ୍ରେତନୀ ନାରୀରୂପ ଧରି ଆସିବା ଓ ସପନୀ ଆଈଙ୍କର ପ୍ରଥମ ପତି ନରରୂପ ଧରି ମରଣ ପରେ ଆସିବା ଅସମ୍ଭବ ନୁହେଁ । ଶ୍ରୀମ ଯଦି ପବନନନ୍ଦନ ହୋଇପାରନ୍ତି, ତେବେ ପ୍ରେତର ପ୍ରେମରୁ ସପନୀ ଦେବୀଙ୍କର କନ୍ୟାଲାଭ ନ ହୋଇଥିବ କାହିଁକି ? ହାହାକାରିଣୀ ପ୍ରେତନୀ, ଯାହାକୁ ତୁମେ ଏବେ ଦେଖିଲ, ସେ ତାର ଦୁଃଖର କାହାଣୀ କହିବାକୁ ତୁମ ପାଖକୁ ଆସିଥିଲା କି ତୁମେ ନିଦ୍ରିତା ଅଛ ଜାଣି ବିରୁଣ୍ଣୀ ପ୍ରେମ କାଙ୍ଗାଳୁଣୀ ପ୍ରେମଭିକ୍ଷା କରିବାକୁ ଆସିଥିଲା, ଏକଥା କିଏ ଜାଣେ ? ହତାଶ ପ୍ରେମିକା ମନଦୁଃଖରେ ଫେରିଲା । ସେ ଅଭିମାନ କରିଯାଇଛି । ସେ ଆଉ ନ ଫେରେ ।

ଅପଣୀ ଆଈଙ୍କର ପ୍ରେତନୀ କୋଳରେ ପୁଅଝିଅ ଜନମି ନ ଥିବେ କାହିଁକି ଅତସୀ, ସପନୀ ଆଈଙ୍କ କୋଳକୁ ଯଦି ପ୍ରେତପୁରୁଷର କନ୍ୟା ଆସିଲା ? ସେ ପ୍ରେତନୀ ବାରମ୍ବାର ପ୍ରେତପତିଙ୍କ ପାଖକୁ ଆସିଥିଲା । ପ୍ରେତପୁରରେ କେଉଁ ଧନଲୋଭୀ ଡାକ୍ତର, କେଉଁ ପ୍ରେମପାଗଳିନୀ କଳଙ୍କିନୀ ନର୍ସ ଇତ୍ୟାଦିଙ୍କର ପ୍ରେତାତ୍ମାମାନେ ଥିବେ ଓ ବ୍ୟବସାୟ କରୁଥିବେ । ସପନୀ ଆଈ ତାର ପ୍ରେତ ପୁଅଝିଅଙ୍କୁ ସେମାନଙ୍କ ମାରଫତରେ ଛାଡ଼ିଦେଇ ସତରେ ପ୍ରେତପତିଙ୍କ ପାଖକୁ ଆସୁଥିବ ।

ଅତସୀ କହିଲା, ଏସବୁ କଥା ତୁମର ଅନୁମାନ, ନୋହିଲେ ମତେ ମିଛରେ ଭୁଲେଇବାକୁ କହୁଛ । ମତେ ତୁମେ ଏତେ ହୀନୀ ମନେ କରନା ମ ! ବାପଘରେ ଝିଅ ହୋଇଥିବାଯାଏ ଝିଅ ମୂର୍ଖା ଓ ଓଳମୀ ଥାଏ । ଶାଶୁଘରକୁ ଆସିବା ପରେ ସଙ୍ଗେ ସେ ଚାଲାକ ହେବାକୁ ଲାଗେ । ଆଜ୍ଞା, ରାତି ପାହିଲା ବେଳଠୁଁ ରାତି ଅଧରେ ବିଛଣାରେ ଶୋଇବାଯାଏ କେତେ ମାଷ୍ଟର, ପ୍ରଫେସର, ଧର୍ମଜ୍ଞ, ରାଜନୀତିଜ୍ଞ, ବ୍ୟବସାୟୀପ୍ରାଣୀମାନଙ୍କଠାରୁ ଆମେ ଶିକ୍ଷା ପାଇ ଜ୍ଞାନ ଅର୍ଜନ କରୁଁ । ତୁମ ସ୍କୁଲ କଲେଜ ବଡ଼ ବଡ଼ କୋଠାମାନଙ୍କରେ ବସେ, ପାଞ୍ଚ ସାତଟା ବିଷୟ ପଢ଼ାହୁଏ । ଜଣେ ଜଣେ ପ୍ରଫେସର ପଢ଼ାନ୍ତି । ଆମର ସ୍କୁଲ କଲେଜ ବସେ ସବୁଠାରେ । ସବୁ ବିଷୟରେ ଶିକ୍ଷା ମିଳେ । ଗୋଟିଏ ଗୋଟିଏ ବିଷୟରେ ପଟଳ ପଟଳ ମାଷ୍ଟର, ପ୍ରଫେସର । ଆମେ ଅତିଶୀଘ୍ର ସବୁ ଶିଖୁଁ, ଚାଲାକ ଚତୁର ହେଉଁ, ତୁମେ ଆଉ ମତେ ଭୁଲେଇପାରିବ ନାହିଁ !

ଅସିତ ନୀରବ ହେଲା । ନିଶ୍ଚଳ ହେଲା । ଭାବିବାକୁ ଲାଗିଲା, ଅତସୀ ପ୍ରଫେସର ହେଲାଣି । ତାକୁ ଏଥର ସ୍ତବ୍ଧ ହେବାକୁ ପଡ଼ିବ । ସେ ଆଉ କିଛି କହିବ ନାହିଁ । ପୁଣି ଭାବିଲା, ଏତେ ଶିକ୍ଷା ପାଇଲେ କି ହେବ, ସେଗୁଡ଼ିକ ନିଜକୁ ଚତୁର ବୋଲି ମଣି ଅବୋଧ ହୋଇପଡ଼ନ୍ତି । ଏହା ସତ୍ୟ ଯେ ସେମାନଙ୍କର ମୂର୍ତ୍ତିମାନ ଦେଖିଲେ କିଛି ନ ଜାଣିଲା ସରଳିଆ ଝିଅ ପରି ଦିଶନ୍ତି । ସେମାନେ ପ୍ରକୃତରେ ତାହା ନୁହନ୍ତି । କିନ୍ତୁ ଅତସୀ ଅବୋଧ, ଏଥିରେ ସନ୍ଦେହ ନାହିଁ । କାହା ମୁହଁରୁ ଶୁଣିଲା କଥା ଶୁଆପରି ବେଶ୍ ଆବୃତ୍ତି କରିପାରୁଛି ।

—ତୁମେ ରାଗିଲ ?

ଅସିତ ନିରୁତ୍ତର । ସେ ଜାଣେ, ତାର ନୀରବତା ଓ ନିଶ୍ଚଳତା ଦୁଇଟି ଅମୋଘ ଅସ୍ତ୍ର । ଏ ଦୁଇଟି ଅତସୀର ଦାନ । କିନ୍ତୁ କିନ୍ତୁ ଓଠପଟା ଫୁଲା ହୋଇଗଲେ ଟିକିଏ ତୁଣ୍ଡରୁ ରାଗ, ଦ୍ୱେଷ, ଛଳ କି ଅଭିମାନ ବୋଲି କଟା ବାହାରିପଡ଼େ । ଆରକର ନିଶ୍ଚଳ ତୁଣ୍ଡର ନୀରବ ମନ୍ତ୍ର ସେଇ ଅସାବଧାନ କଥାର ଠିକଣା ଉତ୍ତର ଦିଏ । ସେ ଉତ୍ତରର ପ୍ରତ୍ୟୁତ୍ତର ଦିଏ ବ୍ୟାକୁଳତା । ଦୁଇଟି ମନ ଓ ଦୁଇଟି ଦେହକୁ ଏକାଠି କରେ ଅଦେହର ସର୍ବଭୁଲା ଉଚ୍ଛୁଳିଆ ମୂର୍ଚ୍ଛାଳିଆ ଆବେଗ ।

—କହ ମ, ଭୁଲ ହେଲ କାହିଁକି ? ତୁଣ୍ଡରୁ କଣ ଖସିଗଲା । ସେଇଟା ମୋ ତୁଣ୍ଡପିଶାଚର କାମ । ସେ କଉଁଠଣା ପଳାଇଲାଣି, ମୋର ଦୋଷ ହୋଇଛି । ତୁମେ ସତ କହୁଥିଲ, ମୋତେ ଭୁଲାଇବ କାହିଁକି ? ସୁନାଟା ପରି, କହ ମୋତେ, ଅପଣା ଆଈଙ୍କର ବେଦ୍ରତ ପୁଅଝିଅମାନେ କେବେ ଜନମିଲେ ? ସେମାନେ କେଉଁଠି ରହୁଥିଲେ ? କିଏ ତାଙ୍କୁ କ୍ଷୀର ଦେଉଥିବ ? ଧୂଆଁରେ ବାଇଆ ଯାଉ କିଏ କରୁଥିବ ? କହିବ ନାହିଁ ? ମୁଁ ମୋ ଦୋଷ ମାଗିନେଉଛି ।

ଅତସୀ ତାର କୋମଳ ତନୁ ଲତା'ରେ ଅସିତଙ୍କୁ ବାନ୍ଧିପକାଇଲା । ଅସିତ ଗମ୍ଭୀର ହୋଇ କହିଲ, ମତେ ମିଛୁଆ କପଟୀ ବୋଲି ତୁମେ ଉପାଧି ଦେଇଛ । ଭାବିଥିଲି ରାଗିବି । ରାଗିପାରିଲି ନାହିଁ. ତୁମ ଉପରେ ରାଗିବା ସମ୍ଭବ ନୁହେଁ । ତୁମେ ସତ କହୁଛ. କିନ୍ତୁ ତୁମେ ମୋର ପ୍ରିୟା ହୋଇ ଅପ୍ରିୟ ସତ୍ୟ କହିବାର ପାପ ଅର୍ଜିଛ, ତେଣୁ ଅଭିମାନ କରିବାକୁ ମନ ହେଲା ।

ପୂର୍ବକାଳରେ ପୁରୁଷମାନେ ନାରୀମାନଙ୍କର ମାନଭଞ୍ଜନ କରୁଥିଲେ । କାରଣ, ପୁରୁଷମାନେ ବହୁପତ୍ନୀକ ଥିଲେ, ଯଥା : ଶ୍ରୀକୃଷ୍ଣ । ଯେଉଁମାନେ ଏକପତ୍ନୀ ବ୍ରତ ସାଧୁଥିଲେ, ସେମାନେ ଘରଣୀମାନଙ୍କ ମୁହଁମୂଲଚଳା ରଖୁ ନ ଥିଲେ. ଯଥା : ଶ୍ରୀରାମ । ସୀତାଙ୍କୁ କହିଲେ ନିଆଁରେ ପଶ । ପୁଣି କହିଲେ, ହେ ଲକ୍ଷ୍ମଣ, ଲୋକେ ନିନ୍ଦା କରୁଛନ୍ତି, ଶିଘ୍ରଟି ସୀତାଙ୍କୁ ନେଇ ଜଙ୍ଗଲରେ ଛାଡ଼ିଦେଇ ଆ ।

ଲକ୍ଷ୍ମଣ ପୁଣି କଣ କରିଥିଲେ ? ଊର୍ମିଳାଙ୍କୁ ଛାଡ଼ିବାର ବରଷ କାଳ ଭାଇ ଭାଉଜଙ୍କ ପଛରେ ଗୋଡ଼ାଇ ବଣକୁ ଗଲେ । ବାରବର୍ଷ ପରେ ଫେରିଲେ । ବୁଦ୍ଧ ଓ ଚୈତନ୍ୟ ମଧ୍ୟ ଏହାପରି କରିଥିଲେ ।

ଏଇଟା ଓଲଟା ଯୁଗ । ସ୍ତ୍ରୀମାନେ ପୁରୁଷମାନଙ୍କର ମାନଭଞ୍ଜନ କରିବାର କଥା । ପତିବ୍ରତା ପତ୍ନୀମାନଙ୍କର ଏହା କରିବା ଉଚିତ କି ନୁହେଁ ଅଭିଜ୍ଞା ପ୍ରଫେସରାଣୀମାନେ ସେ କଥା କହିଥିବେ ଅବା କହିପାରିବେ । କିନ୍ତୁ, ତୁମେ ନିଦ୍ରାମନ୍ତ୍ରରେ ବାନ୍ଧି ମୋ ଅଭିମାନ ଭାଙ୍ଗିଦେଇଛ । ବର୍ତ୍ତମାନ ଭାବୁଛି, ମୋର ପରଜନ୍ମ ପାଇଁ ମୁଁ କାନ୍ଦିବି, କାନ୍ଦ ମାଡ଼ିଆସୁଛି ଯେ !

—ତାକୁ ଅଟକେଇ ରଖ, ମୋ ମଲଉନ କାନ୍ଦିବ ।

—ପୁଣି ତୁମେ ଭୁଲ କରୁଛ, ଅତସୀ ! ଶାସ୍ତ୍ର କହୁଛି, ମଣିଷ ମରେ ନାହିଁ । ଦେହଛାଡ଼ି ଆତ୍ମା ପଳାଏ । ଲୋକେ କହନ୍ତି ଯିଏ, ଯାହାର, ଜନ୍ମଜନ୍ମାନ୍ତରରେ ସେ ତାହାର । ବେତ୍ରଚପଳ ମହାରଥୀ ଓ ଶ୍ରୀମନ୍ତ ସଧନୀ ଆଉ ଏହା ପ୍ରମାଣ କରିଛନ୍ତି । ଯେଉଁଠି ପ୍ରଗାଢ଼ ପ୍ରେମର ବନ୍ଧନ ଥାଏ, ସେଠାରେ ପତ୍ନୀର ପ୍ରେତାତ୍ମା ଦେହ ଧରି ଆସି ପ୍ରିୟତମ ସ୍ୱାମୀଙ୍କୁ ଆନନ୍ଦ ଦିଏ । ପୁଣି ପତିର ପ୍ରେତାତ୍ମା ପ୍ରିୟତମା ପତ୍ନୀକୁ ସୁଖୀକରି ସନ୍ତୁଷ୍ଟ କରେ । ପୁତ୍ରବତୀ ବି କରେ; କେଶୁ ଖାଇବାର ସୁଯୋଗ ଓ ଛୁଟିଲ-ସନ୍ତୋଷ ଆଉ ମିଳିବ ନାହିଁ ଗୋ ଅତସୀ ! କଥା ଅଛିଥାଏ ଅଭିମାନ କରି ଯେତିକି ଖାଇବାର ଆନନ୍ଦ ଏ ଜନ୍ମରେ ପାଇଥିବ ସେତିକି ।

—ଏମିତି ଅସନା ଅଶୁଭ କଥା କହିଲେ ମୁଁ ଅଭିମାନ କରିବ ନାହିଁ, ଖାଇବି ନାହିଁ, କେତେ ଛୁଆଁଲେଇ କରି କହିବ କହ ।

—ମୋର ବି ସେଇ ଇଚ୍ଛା । ତେବେ ମଣିଷର ଇଚ୍ଛା କି ସବୁବେଳେ ପୂରଣ ହୁଏ ? ଅଣଗଣ ଦୁଷ୍ଟ ପ୍ରେତମାନେ ମଣିଷକୁ ଲୋଭ ଦେଖାଇ ଆଉ କେଉଁଆଡ଼େ ଟାଣିନିଅନ୍ତି । ମଣିଷର ଇଚ୍ଛା ପୂରଣ ହୁଏ ନାହିଁ । ସବୁ ଉଦ୍ୟମ ତାର ବ୍ୟର୍ଥ ହୁଏ ।

ମୋର ମାମୁଁ ପୁଅ ଭାଇ କିଶୋରଙ୍କୁ ତୁମେ ଜାଣ; ଦେଖି ନାହଁ । ସେ ସୁନ୍ଦର, ସ୍ୱାସ୍ଥ୍ୟବାନ୍, ଉଚ୍ଚଶିକ୍ଷିତ ଓ ବୁଦ୍ଧିମାନ୍ । ବିଶ୍ୱବିଦ୍ୟାଳୟର ସେ ଥିଲେ ଜଣେ କୃତୀ ଛାତ୍ର । ବୟସରେ ମୋଠାରୁ ଦଶ ବର୍ଷ ବଡ଼ । ଚାକିରି ନ କରି ବ୍ୟବସାୟ କରି ସେ ଧନୀ ହେବାକୁ ଚେଷ୍ଟା କରିଥିଲେ । ପ୍ରତିଜ୍ଞା କରିଥିଲେ, ଧନୀ ନ ହେଲେ ସେ ବିବାହ କରିବେ ନାହିଁ ।

ଅତସୀ କହିଲା, ଲେଖାରେ ଯଦି ସେ ମୋର ଦେଢ଼ଶୁର ନ ହୋଇ ଦିଅର ହୋଇଥାନ୍ତେ, ମୁଁ ତାଙ୍କ କାନ ଧରି ଥରେ ପଚାରନ୍ତି, କେତେ ଧନୀ ହେଲେ ସେ ବିବାହ କରିବାକୁ ମଙ୍ଗିବେ ? ଲକ୍ଷପତି ନା କୋଟିପତି ବା ?

ଦୁନିଆରେ ଯେଉଁମାନେ ନୁହନ୍ତି, ସେମାନେ ସଂସାର କରିବେ ନାହିଁ ? ତମ କିଶୋର ଭାଇ ଧନୀଘରର ପିଲା । ତୁମ ବୋଉ ତାଙ୍କ ବାପଘରକୁ ଏବଯାଏ ଠେକନ୍ତି । କହନ୍ତି, ଉଣ୍ଡ ଯେତେ ପୋଡ଼ା ସେତେ । ତମ ମାମୁଁଙ୍କର

କଟକରେ ବଡ଼ କୋଠା । ବଡ଼ ଗ୍ୟାରେଜ ଜଣ ଭଲ ଘର ପରିସ୍ଥା କରିଛନ୍ତି । ପାଞ୍ଚ ପୁଅ, ତିନି ଝିଅ । ସମସ୍ତେ ବାହା ହୋଇ ପୁଅଝିଅର ବାପ ମା ହେଲେ । ତଥାପି କିଶୋରବାବୁ ଓଡ଼ିଆ ବାହା ହେବାକୁ ନାହିଁ କରୁଥିଲେ । ସେତେ ସମ୍ବନ୍ଧ ଆସିଲା, କୁଆଡ଼େ ନାହିଁ କରୁଥିଲେ । ତୁମ ବଡ଼ମାମୁଁଙ୍କ ମରଣର ବର୍ଷେ ନ ପୂରୁଣୁ କାଳେ ସେ ତାଙ୍କ ମନକୁ ବାନ୍ଧିଦେଲେ । ଝିଅ ବଙ୍ଗାଳୁଣୀ, ସେ ବି ଏକଲା । ପତଳା ନକ୍‌ନକ୍ ହେଲେ ବି ସୁନ୍ଦରଟିଏ ।

—ଧନ୍ୟ ତୁମେ ପ୍ରଫେସର ଶ୍ରୀମତୀ ଅତସୀ ଦେବୀ ! ଘରକୋଣରେ ଥାଇ ସବୁ ଖବର ରଖିପାର । କିନ୍ତୁ, ଏସବୁ ବାହାରର ଖବର । କିଶୋରଭାଇ ବିବିଧ କାର୍ଯ୍ୟରେ ହାତ ଦେଇଛନ୍ତି । ସାହିତ୍ୟ, ରାଜନୀତି, କୃଷି, ବ୍ୟବସାୟ, ପ୍ରେମ । ସବୁଥିରେ କେତେଦୂର ଆଗେଇଯାଇ ବେଶ୍ ନାମ କରନ୍ତି । କିଅଣ ହୋଇଯାଏ କେଜାଣି, ପ୍ରତ୍ୟେକ କ୍ଷେତ୍ରରୁ ସେ ପୁଣି ପଛେଇ ଆସନ୍ତି ।

ପ୍ରତି କ୍ଷେତ୍ରରେ ତାଙ୍କର ସହଯାତ୍ରୀମାନେ ଧୀରେ ଧୀରେ ଆଗେଇଯାଆନ୍ତି । କିଶୋରବାବୁ ପଛରେ ପଡ଼ନ୍ତି । ଯେଉଁମାନେ ଥିଲେ ହାତପହଞ୍ଚାଣିରେ, କହ୍ନୁତ ଉପରକୁ ସେମାନେ ଉଠିଗଲେଣି । ସେମାନଙ୍କ ଉପରେ ଭାଇ ଅଭିମାନ କରନ୍ତି । ଦିନେ ଯେ ସେ ସେଇ କ୍ଷେତ୍ରରେ ଆଗୁଆ ଥିଲେ, ଏକଥା କହି ଆତ୍ମପ୍ରସାଦ ଲାଭ କରନ୍ତି ।

ଦିନେ ସେ ନାସ୍ତିକ ଥିଲେ । ବୟସର ପରେ ସେ ଆସ୍ତିକ ହୋଇଛନ୍ତି । ଦିନକୁ ଦୁଇ ଘଣ୍ଟା ପୂଜା । ସର୍ବଦା ଜଗତ୍‌ଜନନୀ ମା' ଦୁର୍ଗାଙ୍କର ନାମ ଜପନ୍ତି । ଅନ୍ୟ ସହଯାତ୍ରୀଙ୍କର ବଢ଼ନ୍ତି ଦେଖି ସେ ଆଉ ହନ୍ତସନ୍ତ ହେଉ ନାହାନ୍ତି ।

—ଶାଶୁ ଏସବୁ କଥା ମତେ କେବେ କହିନାହାନ୍ତି । କାହିଁକି ତୁମ ଭାଇଙ୍କର ଏତେ ବଡ଼ ପରିବର୍ତ୍ତନ ହେଲା ?

—ଭୂତପ୍ରେତର ଭୟ ଗୋ ଅତସୀ ! କିଶୋରଭାଇ ସେମାନଙ୍କୁ ଦେଖିବେ ବୋଲି ଅନ୍ଧାର ଦୁର୍ଗମ ସ୍ଥଳରେ ମଶାଣିପଦାମାନଙ୍କରେ ତୁନି ହୋଇ ବସି ( ଠେଙ୍ଗା ଓ ଟର୍ଚ୍ଚ ଆଲୁଅ ଅବଶ୍ୟ ପାଖରେ ଥାଏ ) କେବେ ସେ ଭୂତପ୍ରେତର ଆଭାସ ପାଇନାହାନ୍ତି ( ଏକଥା ସେ ସମସ୍ତଙ୍କୁ କହନ୍ତି ) । ସେ ଏବେ ଅନୁଭବ

କରୁଛନ୍ତି ଯେ ଗୋଟାଏ ଦୁଷ୍ଟ ପ୍ରେତ ପନ୍ଦର ବର୍ଷ ହେଲା ତାଙ୍କ ପାଖରେ ଅଛି । ତାଙ୍କ ଭିତରେ ପଶି ଭୁଲ କାମକୁ ଠିକ୍ ବୋଲି ତାଙ୍କୁ ପ୍ରବର୍ତ୍ତାଇ ଆଗକୁ ଠେଲୁଛି । ଭିତରୁ ବାହାର ଆଗେ ଆଗେ ଯାଇ ସେ ଭୁଲ ବାଟରେ ଚାଲୁଛି । କିଶୋରଭାଇଙ୍କୁ ସେଇ ବାଟରେ ଖଣ୍ଡେଦୂର କ୍ଷିପ୍ରଗତିରେ ଆଗେଇ ନେଉଛି, ସମ୍ମାନ ମିଳୁଛି । ପ୍ରଶଂସା ପାଉଛନ୍ତି । ଅନ୍ୟମାନେ ଈର୍ଷାନ୍ୱିତ ହେଉଛନ୍ତି, ଶତ୍ରୁତା କରୁଛନ୍ତି । ସେଇ ଦୁଷ୍ଟ ପ୍ରେତ ପୁଣି ପଛ ଆଡ଼ୁ ଆସି ମାରୁଛି ଏକ ଧକ୍କା । ବେଶ୍, କିଶୋରଭାଇଙ୍କର ଆଶାର ସୌଧ ଟଳିପଡ଼ୁଛି ।

—ଆଗୋ, ଏ ତ ଭୟଙ୍କର କଥା ! ତୁମ ଭାଇ ସେଇ ପ୍ରେତ ପୁରୁଷକୁ କେବେ ଆଖିରେ ଦେଖିଛନ୍ତି ?

ତାଙ୍କୁ ମୁଁ ଏଇ କଥା ପଚାରିଥିଲି, ସେ ମନା କଲେ । କହିଲେ, ଆଖିରେ ତାଙ୍କୁ ସେ କିମ୍ୱା ଆଉ କୌଣସି ଦେହୀ କେବେ ଦେଖିନାହାନ୍ତି । କିନ୍ତୁ ତାର ଉପସ୍ଥିତି ଓ ତାଙ୍କ କାର୍ଯ୍ୟ ଉପରେ ତାର ପ୍ରଭାବ ବରାବର ଅନୁଭବ କରିଛନ୍ତି ।

କିଶୋର ଭାଇ କହନ୍ତି, ପନ୍ଦର ବର୍ଷ ହେଲା ସେହି ଦୁଷ୍ଟ ପ୍ରେତାତ୍ମା ମୋ ଉପରେ ତାର ଦାଉ ସାଧୁଛି । ଗତ ଜନ୍ମରେ ମୁଁ ତାର କଅଣ ଅନିଷ୍ଟ କରିଥିଲି, ଆମ ପକ୍ଷରେ ଜାଣିବା ଅସମ୍ଭବ । ତାକୁ ଦୂରେଇ ରଖିବାର ଏକମାତ୍ର ଉପାୟ ହେଉଛି ପୂଜା ଓ ପ୍ରାର୍ଥନା ।

ଅତସୀ ଆନନ୍ଦିତ ହୋଇ କହିଲା, ଏବେ ବୁଝିଲ ତ, ମୁଁ କାହିଁକି ପୂଜା କରେ ? ଯେତେ ଦେବଦେବୀଙ୍କର ନାମ ଆମ ଶାସ୍ତ୍ର ପୁରାଣମାନଙ୍କରେ ଅଛି, ପୁଣି ଆହୁରି ଯେତେ ଦେବଦେବୀଙ୍କୁ ଲୋକେ ପୂଜା କରନ୍ତି, ସମସ୍ତଙ୍କୁ ପୂଜା କରିବା ଭଲ । ଭୂତପ୍ରେତ ପାଖ ପଶିବେ ନାହିଁ । ପାଖକୁ ଆସିଲେ ଅନିଷ୍ଟ କରିପାରିବେ ନାହିଁ । ତାଙ୍କ ରାଜ୍ୟରେ ସେମାନେ ବୁଲୁଥିବେ, ଆମ ରାଜ୍ୟରେ ଆମେ ଚଳପ୍ରଚଳ ହେଉଥିବା ।

—ତମ ପୂଜା ପ୍ରାର୍ଥନାରେ ମୁଁ କେବେ ବାଧା ଦେଇଛି କି ଅତସୀ ? ନା । ତମର ବରଂ ପ୍ରକାରେ ଫୁଲ, ଚନ୍ଦନ, ସିନ୍ଦୂର, କଣ୍ଢେଇ, ଧୂପଦୀପ, ଭୋଗରାଗ, ଶାଢ଼ି, ବ୍ରାହ୍ମଣ-ବିଦାକି ସବୁ ଯୋଗାଡ଼ କରେଇଦେଇଛି । ସେଥି

ଦେବଦେବୀଙ୍କୁ ତମର ମନ, ତୁମେ ପୂଜା କରୁଛ । ମୂଷା, ସାପ, ମୟୂର, ମାଙ୍କଡ଼, ପଥର, ମୂର୍ତ୍ତି, ଫଟୋ ଯାହା ତୁମେ ପୂଜା କର, ଯାହାକୁ ଯାହା ବର ମାଗ ମୁଁ ପ୍ରତିବାଦ କରୁନାହିଁ, ସମ୍ମତ ବି କରୁନାହିଁ ।

ଅଡ଼ପୀ କହିଲା, ତୁମେ ଯେଉଁପରି କଥା ଭୁଣ୍ଡରେ ଧର ନା ଗୋ, ସେମାନେ ସବୁବେଳେ ସବୁଠାରେ ଅଛନ୍ତି । ତମ କଥା ଶୁଣି ବାଗିକୁ ହେବେ । ତୁମେ ପିଲା ମୁହଁରେ ଏହା କହୁଛ, ମନରେ ସେମାନଙ୍କୁ ତମେ ଡର ଓ ଭକ୍ତି କର । ଏକଥା ମତେ ଜଣା । ତୁମେ ପାଦୁକ ପାଅ, ଭୋଗ ଖାଅ, ମୁଣ୍ଡରେ ସିନ୍ଦୂର ଲଗାଅ, ତଳେ ମଥା ଲଗାଇ ପ୍ରଣତ ହୁଅ, ଏସବୁ ସେମାନେ ଜାଣନ୍ତି ।

ଅସିତ ନୀରବ ରହିଲା । ଭାବିଲା, କେବଳ ସେ ନୁହେ । ତଳେ ମୁଣ୍ଡ ଲଗାଇ ପ୍ରଣାମ କଲାବେଳେ ମନ ପ୍ରାର୍ଥନା କରୁଥିଲେ । ମନ ମାଗେ, ମୋତେ ସୁଖ ଦିଅ, ଭା ଦିଅ, ମୋର ସୁଖ କର, ଭା କର ।

ଏସବୁ ପ୍ରାର୍ଥନାର ମୂଲ୍ୟ କ'ଣ ? ମଣିଷ ଉଦ୍ୟମ ନ କଲେ କେହି ତାକୁ ସୁଖ ଦେଇପାରିବେ ନାହିଁ । ଏହା ମହା ସତ୍ୟ । ତଥାପି, ମନ ପ୍ରାର୍ଥନା କରେ ଅସମ୍ଭବ ସମ୍ଭବ ହେଉ ବୋଲି ଆଶା କରେ ।

ଆଶାହିଁ କ'ଣ ଜୀବନ ? ଇଷ୍ଟଦେବଙ୍କର ନା ଉଦ୍ୟମର ?

ଅସିତ କହିଲା—

ଭୟ ଓ ଆଶା ହେତୁ ପାଇଲି ବନରୁ ମନ୍ଦିରର ଲକ୍ଷ ଲକ୍ଷ ସ୍ନାୟୁରେ ତପା ନ ଧରୁଛନ୍ତି । ସୃଷ୍ଟି ସେମାନଙ୍କର ଆସନ । ଭୟ ଦୂର ହେବାକୁ ଓ ଆଶା ଚରିତାର୍ଥ ପାଇଁ ମଣିଷ ମନର କାଂସହାୟ ଭାବ ଯୁଗ ଯୁଗ ଧରି ଏଇ ସବୁ ଦେବଦେବୀ ଗଢ଼ିଛୁ । ପୂଜା କରୁଛୁ, ସେମାନଙ୍କର ସଂଖ୍ୟା ବଢ଼ି ବଢ଼ି ଚାଲିଛୁ ଗୋ ଅଡ଼ପୀ ! ତଥାପି, ମଣିଷର ଆଶା ପୂରଣ ହୋଇପାରୁନାହିଁ, ଦୁଃଖ ଦୂର ହୋଇପାରୁନାହିଁ ।

ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ଗୋଟିଏ ଭଗବାନ, ବିଶ୍ୱଚରାଚରର ଏକଇ ଆତ୍ମା । ତାହାଙ୍କ ଭିତରେ ଆମର ଜନମ, ଚଳନ ଓ ବିଲୟ । ତାଙ୍କୁ ଭୁଲି ଅପଦେବତା ସୃଷ୍ଟି କରି ମଣିଷ ତାର ଭୟ ଦୂର କରିବାକୁ, ଆଶା ପୂରଣ କରିବାକୁ ଚେଷ୍ଟା

କରିଛୁ । ସଫଳ ହେଲେ ବି ସେ ତାର ଅଣାଗଢ଼ା ଦେବତା ପାଖରେ ପୂଜା କରିବାକୁ ଚାହୁଁନାହିଁ ।

ଅତସୀ, ଯୁଗ ଯୁଗର ଭକ୍ତି, ଆଶା ଓ ଅଭ୍ୟାସ ମୋ ରକ୍ତରେ ଖେଳୁଛି । ପିଲାଦିନରୁ ସେସବୁ ଦେଖିଛି । ମନରେ ସାଇତି ରଖିଛି । ଯେତେ ପାଠ ପଢ଼ି ପଣ୍ଡିତ ହେଲେ ବି ମୁଣ୍ଡ ଆପେ ଆପେ ନଇଁଯାଉଛି । ମନର ଆଶା ବୋବାଳି ଛାଡୁଛି- ଏହା ଦେ, ଦେ, ତା ଦେ । ଏଥିନିମନ୍ତେ ଦୁନିଆରେ ମନ ପୁଣି ଅଳି କରୁଛି, ଦେ ଦେ, ମୁଁ ଲାଞ୍ଚ ଦେବି । ଆସ ଏ ଭୋଗ ଖାଅ, ପାଣି ପିଅ, ଯେଉଁଠୁ—ଦିଅ, ଦିଅ, ପୁଣି ଦେବ ଯେ, ଏଇ ମାନସିକ କଲି ।

ସତ କହୁଛି ଅତସୀ, ଛୋଟବେଳରେ ଏସବୁ କଥା କେବେ ଭାବିବସିଲେ ଲାଜ ମାଡ଼େ । ଦୁର୍ବଳ ବେଳର ପାଗଳାମି ପାଇଁ ଅନୁତାପ ଆସେ, ଛି, କଣ କଲି ? ଆଶା ପୂରଣ ପାଇଁ ମାଟି, ପଥର, ଗଛ ପାଖରେ ମୁଣ୍ଡ ନୁଆଁଇଲି ! ଭୋଗ-ରାଗ ଦେଇ ପ୍ରାର୍ଥନା କଲି, ଏହା ଦେ, ତା ଦେ ! ଏହାର ଅନିଷ୍ଟ କର, ତାର ସର୍ବନାଶ କର ! ମୁଁ ସୁଖରେ ରହେ, ମୋର କୁଟୁମ୍ବ, ବନ୍ଧୁବାନ୍ଧବ, ପ୍ରିୟଜନ ସୁଖରେ ରହନ୍ତୁ, ଅନ୍ୟମାନଙ୍କର ଯାହା ହେବାର ହେଉଥାଉ ।

ଅତସୀ ଗୋ, ସତ କୁହ, ଏପରି କାମନା ତୁମେ ଦେବଦେବୀଙ୍କ ପାଖରେ କର କି ନାହିଁ ?

ଅତସୀ କହିଲା, ନାହିଁ କଲେ ମିଛ କହିବି । କାହାର ଅନିଷ୍ଟ କର, ଅମଙ୍ଗଳ କର, ସର୍ବନାଶ କର ଏ ପ୍ରକାର ମାଗୁଣି ମୁଁ ମୋ ଠାକୁରମାନଙ୍କ ପାଖରେ କେବେ କରିନାହିଁ । ମନରେ କାମନା ନ ରଖି ପୂଜା ଓ ପ୍ରାର୍ଥନା କରିବାକୁ ମହାତ୍ମାମାନେ ଉପଦେଶ ଦେଇଛନ୍ତି ସତ, କିନ୍ତୁ ମୁଣ୍ଡ ନୋଇଁଲାବେଳେ ଠାକୁରମାନଙ୍କ ପାଖରେ କେତେ କଅଣ ମାଗିହୋଇଯାଏ । ନ ମିଳୁ ପଛେ, ମିଳିବ ବୋଲି ଆଶା ହୁଏ, ସାନ୍ତ୍ୱନା ମିଳେ ।

—ସେଇ ଆଶା ଫଳବତୀ ହେବାର ଲୋଭ, ଯାହାକୁ ତୁମେ ସାନ୍ତ୍ୱନା ବୋଲି କହୁଛ, ନୂଆନୂଆ ଦେବ-ଦେବୀଙ୍କର ସଂଖ୍ୟା ବଢ଼ାଇ ଚାଲିଛି । ମଣିଷର ମନରେ ଯେଉଁଠି ଦେବଦେବୀଙ୍କର ଜନ୍ମ ହୁଏ, ସେଠାରେ ଜନ୍ମନିୟନ୍ତ୍ରଣ ଶୀଘ୍ର ନ କଲେ ସ୍ୱର୍ଗରେ ସେମାନଙ୍କର ସଂଖ୍ୟା ଏତେ ବଢ଼ିଯିବ ଯେ ବର୍ଷରେ ଥରେ ଅଧେ ଭୋଗ ଖାଇବାକୁ ସେମାନଙ୍କୁ ମିଳିବ ନାହିଁ ।

—ସେମାନଙ୍କର ଭୋଗରାଗ ଲୋଡ଼ା ନାହିଁ ଗୋ, ସ୍ୱର୍ଗରେ ଅମୃତ ଅଛି । ଯେତେ ଖାଇଲେ ସେ ସରେ ନାହିଁ ।

—ସ୍ୱର୍ଗର ଅମୃତଠାରୁ ଆମ ମର୍ତ୍ତ୍ୟର ଅମୃତ ଆହୁରି ସରସ, ଆହୁରି ମିଠା । ସେଇ ଅମୃତର ଝରଣା ଅସରନ୍ତି । ଶସ୍ତାରେ ମିଳେ, ଘରେ ଘରେ, ସବୁବେଳେ । ସେଇ ଅମୃତର ସ୍ୱାଦ ଚାଖିବାକୁ ଦେବତାମାନେ ନରଦେହ ବହି ମର୍ତ୍ତ୍ୟମଣ୍ଡଳରେ ଜନ୍ମ ଲଭନ୍ତି । କବିମାନେ ଏହା ଲେଖିଯାଇଛନ୍ତି । ଭୂତପ୍ରେତଙ୍କୁ ମୋର ସେତେ ଡର ନାହିଁ । କିନ୍ତୁ ସେଇ ଦେବତାମାନେ ବେଳେ ବେଳେ ନରଦେହରେ ପଶି ଆମ ଅମୃତକୁ ଚୋରି କରନ୍ତି, ହେଲେ, ଅସରନ୍ତି ଭଣ୍ଡାର ଊଣା ହୁଏ ନାହିଁ ।

—କେଉଁଠି ଥାଏ ସେ ଅମୃତ ?

—ଏଇଠି ।

ଅସିତର ତୃଷିତ ଓଠ ଦଉଡ଼ି ଅତସୀର କ୍ଷୁଧିତ ଓଠରେ ଲାଗିଲା । ଦୁହିଁଙ୍କର ଆଖିବୁଜି ହୋଇଗଲା । ସେ ଆଖି ଖୋଲିଲା ନାହିଁ, ତୁଣ୍ଡରୁ ଭାଷା ଫୁଟିଲା ନାହିଁ । ଦୁହିଁଙ୍କ କୋଳରେ ଦୁହେଁ । ଦେବଦେବୀ, ଭୂତପ୍ରେତ ଅପସରିଗଲେ । ଫୁଲବାଣୀର ଶାଗୁଆ ଘନ ଅନ୍ଧାରର ଅସୀମ କୋଳରେ ସେମାନେ ଆତ୍ମ ବିସ୍ମୃତ ହେଲେ ।

ଘୋଟିଗଲା ଶ୍ରାନ୍ତିହର ଶାନ୍ତିଦାୟିନୀ ନିଦ୍ରା ।

ଅତସୀ ଆଜି ନିଦ୍ରିତ ନୁହେ, ସେ ଜାଗ୍ରତ ।

ଫୁଲବାଣୀର ଶୀତଳ ଅନ୍ଧାର ଭୟଙ୍କର ମେଘଘନ ଅମାବାସ୍ୟା ରାତ୍ରି ଏ ନୁହଁ । ଉଦୟଗିରିର ମେଘ-ତୋଫାନଆ ଛଟପଟ ସ୍ନାନପୂର୍ଣ୍ଣିମା ରାତ୍ରି, ଫୁଲବାଣୀର ବଡ଼ଘର କାହିଁ କେତେ ଦୂରରେ, ଉଦୟଗିରିର ରାସ୍ତାକଡ଼ ଗ୍ରେଟ ବଙ୍ଗଳାଟିଏ ।

ଏବେ ବି ଡାକ୍ତରଙ୍କ ଘରୁ ଆଲୁଅର କ୍ଷୀଣ ରେଖା ଆସୁଛି । ଗ୍ରେଟ ପିଲାଟିର କାନ୍ଦଣା ଶୁଭୁଛି । ଅନ୍ଧାରିଆ ହତା ଆଲୁଅ ଦିଶିଲାଣି । ବର୍ଷା ଓ ତୋଫାନ ସରିଲାଣି । ସ୍ନାନପୂର୍ଣ୍ଣିମାର ଉଜ୍ଜ୍ୱଳ ଚନ୍ଦ୍ରମା ଖଣ୍ଡିଖଣ୍ଡିକା ମେଘମାଳ ତଳେ ଲୁଚକାଳି ଖେଳୁଛି । ବାହାରେ ଆଲୁଅ ଛାଇର ଖେଳ । ଗଛବୁଦା ସବୁ ଜଙ୍ଗଲ ନିଦ୍ରିତ ଭୂତପ୍ରେତ ପରି ଦିଶୁଛନ୍ତି । ବିଭିନ୍ନ ଶବ୍ଦ ସେମାନଙ୍କର ହସ, କାନ୍ଦ, କନ୍ଦଳ, କଥାଭାଷା ପରି ଶୁଭୁଛି । ଦୂର ପାହାଡ଼ର କଥା ଉପରେ ଫିକା ଆଲୁଅର ସ୍ତମ୍ଭ । ପାତଳ ସଫେଦ୍ ମେଘ ତଳେ ଜହ୍ନମାମୁଁ ଛପିଛି । ଚଳନ୍ତି ମେଘ ତଳୁ ଆଲୁଅର ସ୍ତମ୍ଭ ଲମ୍ବି ଆସିଛି ପାହାଡ଼ର ମଥା ଉପରକୁ । ସେ ସ୍ତମ୍ଭ ହଲୁଛି, ଝୁଲୁଛି ।

ବିଶ୍ୱାସ କଲେ ସେଇ ହେବ ବ୍ରହ୍ମରାକ୍ଷସ ।

ଆଉଜା ଝରକା ଅତସୀ ଭଲ କରି ଖୋଲିଦେଲା । ଆରେ କେତେ ରାତି ହେଲାଣି ? ନିଦରେ ମୁଣ୍ଡ ଝାଙ୍କି ଲାଣି । ପଲଙ୍କ ଉପରୁ କ୍ଲାନ୍ତ ନିଦ୍ରିତ ସ୍ୱାମୀଙ୍କର ନିଶ୍ୱାସର ଶବ୍ଦ ଶୁଭୁଛି, ନିଶ୍ଚିନ୍ତ ନିଦ । ବିଛଣାରେ ପଡ଼ିବା ସଙ୍ଗେ ସଙ୍ଗେ ସେ ଛୁଟିକରି ଶୋଇପଡ଼ନ୍ତି । ମନରେ ଭୂତ, ପ୍ରେତ, ଡାଆଣୀ, ଚିରୁଗୁଣୀ, ମଶାଣିଚଣ୍ଡୀ, ହାଡ଼ୁବାଇ, ସଇତାନ, ବ୍ରହ୍ମରାକ୍ଷସମାନଙ୍କର ସ୍ଥାନ ନାହିଁ । ସେମାନଙ୍କର ଆସ୍ଥାନ କେବଳ ତାଙ୍କ କଥାରେ ।

ଅତସୀ ଭାବିଲା, ଝରକା ବନ୍ଦ କରିବ, କି ଖୋଲା ରଖିବ ? ସେଇ କଥା ବିଚାରୁଥୁ ତାର ଚଞ୍ଚଳ ତରଳ ମନ ତାର ଦେହ ଗୁମ୍ଫା ଛାଡ଼ି ବେଗରେ କେତେ ଆଡ଼େ ଛୁଟିଗଲା ।

ମନର ସାଥିରେ ଉଡ଼ିଯାଉଥିଲା ଚେତନା । ଅତୀତକୁ ଦେଖି ଆସିଲା, ଶୁଣି ଆସିଲା, ଅନୁଭବ କରି ଆସିଲା । ଏ ଦେହଟା ସହିତ କି ଅଦୃଶ୍ୟ ଶକ୍ତିଶାଳୀ ଡୋରରେ ବନ୍ଧା ହୋଇଛି ସେଇ ଚଞ୍ଚଳ ଓ ସହଜ ଧାଉଁଲା ସୂକ୍ଷ୍ମତମ ମନଟି । ଅତୀତରେ ଭ୍ରମିଲାବେଳେ ସେଇ ଅତୀତର ହସକାନ୍ଦ, ଉନ୍ମାଦନାଭରା ପରଶ ଓ ସ୍ପନ୍ଦନ ଲାଗିଥିଲା ଜଡ଼ ଦେହରେ । ସେଇ ମନଟା କେବେ ଭବିଷ୍ୟତକୁ ବି ଧାଏଁ । ନ ଘଟିଲା ଘଟଣାକୁ ଆଶା ଆକାଂକ୍ଷାର ତୁଳିରେ ଚିତ୍ର କରେ । ସେତେବେଳେ ମଧ୍ୟ ଚେତନାକୁ ସଙ୍ଗରେ ନେଇଯାଏ । ବର୍ତ୍ତମାନର ଝିଙ୍କା ଖାଇ ଆଖି ପିଛୁଡ଼ା ନ ପଡ଼ୁଣୁ ଏଇ ଦେହର ନିଜ ବସାକୁ ସେ ଫେରିଆସେ ।

ମୁଁ ଅତୀତରେ ହଜିଥିଲି !

ମୁଁ ନିଜ ପୁରକୁ, ଦେହମନ୍ଦିରକୁ ଫେରିଆସିଛି ।

ଅତସୀ !

ତାଙ୍କର ନିଦ ଭାଙ୍ଗିଲାଣି ।

ଅଳୁଅ ଟିପି ଅତସୀ ପଲଙ୍କ ପାଖକୁ ଫେରିଆସିଲା । ମଶାରି ଟେକି ମୁଣ୍ଡ ଗଳାଇ ଉତ୍ତର ଦେଲା, ନିଦ, ଭାଙ୍ଗିଗଲା କି ତୁମର ? ଝରକା ବନ୍ଦ କରିବାକୁ ଗଲି ସେ ଖୋଲିଦେଇ ଆସିଲି । ଝଡ଼ ବରଷା ଥମିଲାଣି, ଆକାଶର ଜହ୍ନ ମେଘମୁକ୍ତ ହେଲାଣି ।

— ତୁମେ ଶୋଇ ନ ?

—ନା ! ଅଜଣା ଜାଗାରେ କେମିତି ଅଡ଼ୁଆ ଅଡ଼ୁଆ ଲାଗିଲା । ତୁମେ ତ ଛୁଟିକରି ଶୋଇପଡ଼ିଲ । ସେଇଠୁ ଗୋଡ଼ ଲମ୍ବାଇ ମତେ ଠେଲିଲ । କହୁଣିରେ

ଠେଲିଲ । ମୁଁ ଘୁଞ୍ଚି ଘୁଞ୍ଚି ଖଟ ଦାଢ଼ଯାଏ ଗଲି, ଟ୍ରେଟ ପଲଙ୍କଟା । ସେଇଠୁ କୁଆଡ଼େ ଯାଅନ୍ତି ?

—ତୁମେ ମୋତେ ଠେଲିଲ ନାହିଁ ?

—ଯୁକ୍ତି କରୁଥାନ୍ତ କି ? ତୁମେ ପୁଣି କ୍ଲାନ୍ତ ହୋଇ ବଣ ପାହାଡ଼ ବୁଲି ଆସିଥିଲ । ତୁମ ନିଦ ଭାଙ୍ଗିଲେ ଦେହର ମଜଗ ଛାଡ଼ିବ ନାହିଁ । ତେଣୁ ଧୀରେ ଧୀରେ ଉଠିଗଲି । ଝରକା ବାଟେ ପଦାକୁ ଚାହିଁଲି । ବର୍ଷା ହେଉଥାଏ । ପବନ ବୋହୁଥାଏ । ଘଞ୍ଚ ଜିଆ ଅନ୍ଧାର । ଡାକ୍ତରବାବୁଙ୍କ ସ୍ତ୍ରୀ ଦ'ପହରେ କହୁଥିଲେ, ଏଠାରେ ଅନେକ ଭୂତପ୍ରେତ ଅଛନ୍ତି, ସେମାନେ ରାତିରେ ବୁଲାଚଲା କରନ୍ତି ।

—ଗୋଟିଏ ହଉଟି ଦେଖିଲ କି ?

—ମୋତେ ଦେଖାପଡ଼ିଲେ ନାହିଁ । କେତେଥର ତୁମେ କହୁଛ ଯେ ତୁମେ ଅନେକ ସ୍ଥଳରେ ଅନେକଥର ଭୂତ ଦେଖିଛ । କହିଲାବେଳକୁ ନିଜ ଦେଖିଲା କଥା ନ କହି ପରଠୁ ଶୁଣିଲା କଥା କହୁଛ ।

—ଦେଖିଲା କଥାଠୁଁ ଶୁଣିଲା କଥା ବର୍ଣ୍ଣନା କରିବାକୁ ଅଧିକ ଆନନ୍ଦ ଲାଗେ । ରାତି ବେଶି ହେଲାଣି, ଅନିଦ୍ରା ରହିଲେ ଦେହ ଖରାପ ହେବ । ଆଉ ଥରେ କହିବି ଯେ ଶୁଣିବ. ମୁଁ ଘୁଞ୍ଚିଗଲିଣି, ଆସ, ଶୋଇପଡ଼ ।

—ନିଦ ଲାଗିଗଲେ ପୁଣି ଗୋଡ଼ରେ ଠେଲିବ ।

—ଅସମ୍ଭବ ନୁହେଁ, ଅତସୀ ମୁଁ, ତାର ସମାଧାନ କରିଦେଉଛି ରହ ।

ଅସିତ ହାତ ବଢ଼ାଇ ତାର ପ୍ରିୟତମା ପତ୍ନୀକୁ ଭିଡ଼ାଇ ଧରିଲା । ମଶାରି ଭିତରକୁ ନେଇ ତାର ବଳିଷ୍ଠ ଛାତି ଉପରେ ଶୁଆଇ ମୁହଁରେ ମୁହଁ ଲଗାଇଲା । ବାହୁ ଦିଓଟିରେ ତାକୁ ଚିପିଡ଼ାଇ ଧରି କହିଲା, ଏଥର ଶୋଇପଡ଼ । ତୁମେ କାହିଁକି ଦିନୁ ଦିନ ଦୁର୍ବଳ ହୋଇ ପଡ଼ୁଛ ଅତସୀ, ଫୁଲ ପରି ତ ଓଜନ ।

ଅତସୀ କଣ୍ଠେଇ ଶୋଇ କହିଲା, ସେଥିକି ଅଛା କରିଥା ମ ! ଟୁଡ଼ା ଫୁଲିଲା ପରି ଦିନୁଦିନ ମୁଁ ଶୁଖିଯାଉଛି ବୋଲି ମଉନାବତୀ ସପନା ଆଉଙ୍କ ପାଟିର ଯାଉଁଳିକବାଟ ଫାଙ୍କରୁ କଥା ଖସିପଡ଼ିଲା । ମୋତେ ନିଦ ଘୋଟି ଆସିଲାଣି । ଆଉ ତୁମେ ଖଜୁରୁଜୁ ହୁଅନା, ଶୋଇପଡ଼, ଭଜବାସ୍ତା ଆସିବଟି !

କଟ୍ଟୁପୁର

ତା ୨୦-୯-୧୯୭୩ ଶୁକ୍ରବାର

କାହ୍ନୁଚରଣ